# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**September-October- 2014**

**୭୧ ଭାଗ　୨ୟ-୩ୟ ସଂଖ୍ୟା　ଭାଦ୍ର-କାର୍ତ୍ତିକ　ସେପ୍ଟେମ୍ବର-ଅକ୍ଟୋବର- ୨୦୧୪**




---




ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

ପ୍ରତି ଖଣ୍ଡ : ଟ. ୫.୦୦

ସେପ୍ଟେମ୍ବର–ଅକ୍ଟୋବର–୨୦୧୪



# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



କବିବର ରାଧାନାଥ ରାୟ

୨୮.୦୯.୧୮୪୮ – ୧୭.୦୪.୧୯୦୮



ଗୋପାଳଚନ୍ଦ୍ର ପ୍ରହରାଜ

୨୭.୦୯.୧୮୬୪ – ୧୬.୦୯.୧୯୪୫

# ଶ୍ରଦ୍ଧାଞ୍ଜଳି



## ମହାତ୍ମା ଗାନ୍ଧୀ

**୦୨.୧୦.୧୮୬୯ – ୩୦.୦୧.୧୯୪୮**

## ମୋ' ସ୍ୱପ୍ନର ଭାରତ

'ମୁଁ ଏପରି ଭାରତବର୍ଷ ନିମନ୍ତେ କାମ କରିବି, ଯେଉଁଠି ଦରିଦ୍ରରୁ ଦରିଦ୍ରତମମାନେ ଅନୁଭବ କରିବେ ଯେ ଏହା ସେମାନଙ୍କର ଦେଶ, ଯାହାର ନିର୍ମାଣରେ ସେମାନଙ୍କର ଫଳପ୍ରଦ ଅବଦାନ ରହିଥିବ, ଏପରି ଭାରତବର୍ଷ ଯେଉଁଠାରେ କି ଜନସାଧାରଣଙ୍କ ମଧ୍ୟରେ ଛୋଟ ବଡ଼ ବୋଲି କିଛି ଶ୍ରେଣୀ ଭେଦ ନଥିବ, ଏପରି ଭାରତବର୍ଷ ଯେଉଁଠାରେ କି ସମସ୍ତ ସମ୍ପ୍ରଦାୟ ପୂର୍ଣ୍ଣ ସଂଗତିରେ ବାସ କରିବେ, ଏପରି ଏକ ଭାରତବର୍ଷ ଯେଉଁଠାରେ ଅଭିଶପ୍ତରୂପୀ ଅସ୍ପୃଶ୍ୟତା କିମ୍ବା ମାଦକ ଓ ନିଶାଦ୍ରବ୍ୟର ସ୍ଥାନ ନଥିବ, ପୁରୁଷଙ୍କ ପରି ମହିଳାମାନେ ସମାନ ଅଧିକାର ଉପଭୋଗ କରିବେ ଆଉ ଅବଶିଷ୍ଟ ପୃଥିବୀ ସହ ଆମେ ଶାନ୍ତିରେ ସହାବସ୍ଥାନ କରିବୁ । ଏହା ହେଉଛି ମୋ' ସ୍ୱପ୍ନର ଭାରତବର୍ଷ ।'

– ଏମ୍.କେ. ଗାନ୍ଧୀ

# ଶ୍ରଦ୍ଧାଞ୍ଜଳି



ସର୍ଦ୍ଦାର ବଲ୍ଲଭଭାଇ ପଟେଲ
୩୧.୧୦.୧୮୭୫ – ୧୫.୧୨.୧୯୫୦



ଜୟପ୍ରକାଶ ନାରାୟଣ
୧୧.୧୦.୧୯୦୨ – ୦୮.୧୦.୧୯୭୯



ଲାଲ ବାହାଦୂର ଶାସ୍ତ୍ରୀ
୦୨.୧୦.୧୯୦୪ – ୧୧.୦୧.୧୯୬୬



ଉତ୍କଳମଣି ଗୋପବନ୍ଧୁ ଦାସ
୦୯.୧୦.୧୮୭୭ – ୧୭.୦୬.୧୯୨୮

# ସମ୍ପାଦକୀୟ



ଯୋଗାଯୋଗ କ୍ଷେତ୍ରରେ ଏକ ବୈପ୍ଳବିକ ପଦକ୍ଷେପ ସ୍ୱରୂପ ଇସ୍ପାତ ନଗରୀ ରାଉରକେଲା ଏବଂ ଛତିଶଗଡ଼ର ଜଗଦଲପୁର ମଧ୍ୟରେ ସଂଯୋଗୀକରଣ ନିମନ୍ତେ ବିଜୁ ଏକ୍ସପ୍ରେସ୍‌ୱେ ଏକ ମାଇଲଖୁଣ୍ଟ । ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଦକ୍ଷିଣ ଓଡ଼ିଶା ଏବଂ ପଶ୍ଚିମ ଓଡ଼ିଶାର ଦ୍ରୁତ ପ୍ରଗତି ନିମନ୍ତେ ଏହା ଏକ ମହତ୍ତର ଉଦ୍ୟମ । ଏହାର ନିର୍ମାଣ କାର୍ଯ୍ୟ ଶେଷ ହେଲେ କେ.ବି.କେ. ଜିଲ୍ଲା ସମେତ ପଶ୍ଚିମ ଓଡ଼ିଶାର ବ୍ୟାପକ ଅଞ୍ଚଳ ପ୍ରତ୍ୟକ୍ଷ ଭାବରେ ଉପକୃତ ହେବା ସହ ସମଗ୍ର ଅଞ୍ଚଳର ସାମାଜିକ ଓ ଅର୍ଥନୈତିକ ଅଭିବୃଦ୍ଧି ସମ୍ଭବ ହୋଇ ପାରିବ । କୃଷକର ଉନ୍ନତି, ଗରିବଙ୍କ ପ୍ରଗତି, ଶିଳ୍ପ ସମୃଦ୍ଧି ଏବଂ ଜୀବନଧାରଣର ମାନ ବିକାଶ ଦିଗରେ ଏହି ଏକ୍ସପ୍ରେସ୍‌ୱେ ହେବ କେ.ବି.କେ. ଓ ପଶ୍ଚିମ ଓଡ଼ିଶାର ଜୀବନରେଖା । ୬୫୬ କି.ମି. ପରିବ୍ୟାପ୍ତ ଏହି ବିଜୁ ଏକ୍ସପ୍ରେସ୍‌ୱେ ପଶ୍ଚିମ ଓଡ଼ିଶା ଓ କେ.ବି.କେ. ଅଞ୍ଚଳର ୪ଟି ଜିଲ୍ଲା କୋରାପୁଟ, ନବରଙ୍ଗପୁର, କଳାହାଣ୍ଡି ଓ ନୂଆପଡା ସହିତ ବରଗଡ଼, ସମ୍ବଲପୁର, ଝାରସୁଗୁଡ଼ା ଓ ସୁନ୍ଦରଗଡ଼ ଜିଲ୍ଲାକୁ ସଂଯୋଗ କରିବ ।

ଇତ୍ୟବସରରେ ସମଗ୍ର ରାଜ୍ୟରେ ସେପ୍ଟେମ୍ବର ୫ ତାରିଖରେ 'ଗୁରୁଦିବସ' ଭକ୍ତିପୂତ ଭାବରେ ପାଳନ କରାଯାଇଛି । ଏହି ଦିବସ ପାଳନ ଅବସରରେ ଆମକୁ ପ୍ରେରଣା, ଉତ୍ସାହ ଏବଂ ସଠିକ୍ ପଥ ପ୍ରଦର୍ଶନ କରୁଥିବା ଶିକ୍ଷକ ସମାଜ ପ୍ରତି ଆମେ ଆମର କୃତଜ୍ଞତା ପ୍ରକାଶ କରିଥାଉ । ଚଳିତ ବର୍ଷ ଭାରତର ଭୂସ୍ୱର୍ଗ କଥିତ ଜାମ୍ମୁ ଓ କାଶ୍ମୀରରେ ପ୍ରଳୟଙ୍କରୀ ବନ୍ୟା ଯୋଗୁଁ ପ୍ରଭୂତ କ୍ଷୟକ୍ଷତି ଘଟିଯାଇଛି । ଏପରି ଏକ ସନ୍ଧିକ୍ଷଣ ସମୟରେ ଆମ ରାଜ୍ୟର ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ସହ ସମଗ୍ର ଓଡ଼ିଶାବାସୀ ପୂର୍ଣ୍ଣପ୍ରାଣରେ ଜାମ୍ମୁ ଓ କାଶ୍ମୀରର ବନ୍ୟା ପ୍ରପୀଡ଼ିତ ଜନତାଙ୍କ ସାଥୀରେ ଅଛନ୍ତି ।

ଗାନ୍ଧୀ ଓ ଶାସ୍ତ୍ରୀ ଜୟନ୍ତୀ ସାରା ଓଡ଼ିଶାରେ ପାଳିତ ହୋଇଯାଇଛି । ଏ ସମ୍ପର୍କିତ ବିଭିନ୍ନ ଆଲୋଚନା ଓ ପଦଯାତ୍ରାରେ ଯୁବକଙ୍କଠାରୁ ଆରମ୍ଭ କରି ବୟସ୍କଙ୍କ ପର୍ଯ୍ୟନ୍ତ ସଭିଏଁ ସାମିଲ ହୋଇଛନ୍ତି । ଚରିତ୍ର ଗଠନ ହେଉଛି ଜୀବନର ପ୍ରମୁଖ ଆବଶ୍ୟକତା – ଏ ବିଷୟରେ ଆମେ ଏହି ମହାମନୀଷୀଙ୍କ ଜୀବନୀରୁ ଶିକ୍ଷାଲାଭ କରିଥାଉ ।

ଏଥି ସହିତ ପଣ୍ଡିତ ଗୋପବନ୍ଧୁ ଦାସ, ଗଣକବି ବୈଷ୍ଣବ ପାଣିଙ୍କ ଜନ୍ମ ବାର୍ଷିକୀ ଏବଂ ସହିଦ୍ ବାଜି ରାଉତ ଓ ଓଡ଼ିଆ କବି ଡ. ମାୟାଧର ମାନସିଂହଙ୍କ ଶ୍ରାଦ୍ଧବାର୍ଷିକୀ ଆମ୍ଭେ ପାଳନ କରିଛୁ । ମଙ୍ଗଳଯାନ ପ୍ରେରଣରେ ଓଡ଼ିଶାର ବୈଜ୍ଞାନିକମାନଙ୍କ ସକ୍ରିୟ ସହଯୋଗ ଆମ ସମସ୍ତଙ୍କୁ ଗର୍ବିତ କରିଛି ।

ଆଶ୍ୱିନ ଆକାଶରେ ଭାସୁଥିବା ଧଳା ମେଘ ଖଣ୍ଡ ଏବଂ ହିଡ଼ ମୁଣ୍ଡରେ ଧ୍ୟାନସ୍ଥ ମୁଦ୍ରାରେ ଠିଆ ହୋଇଥିବା କାଶତଣ୍ଡୀର ହସ ଏବଂ ଗାଁରୁ ସହର ଯାଏଁ ସଜେଇ ହୋଇଥିବା ରଙ୍ଗୀନ ତୋରଣ କହିଦିଏ ଯେ, ଏବେ ପାର୍ବଣର ଋତୁ ଆସିଛି । ଦଶଭୁଜା ମା' ଦୁର୍ଗାଙ୍କର ଧରାବତରଣ କେବଳ ଆନନ୍ଦ ଉଲ୍ଲାସର ଅନୁଭବ ନୁହେଁ, ପରନ୍ତୁ, ଏହା ସାମାଜିକ ପୃଷ୍ଠଭୂମିରେ ବ୍ୟକ୍ତିର ଉତ୍ତରଦାୟିତ୍ୱ, ଅନ୍ତରଙ୍ଗ ସମର୍ପଣ ଏବଂ ପାପ ଉପରେ ପୁଣ୍ୟର ବିଜୟ ପାଇଁ ଅଭିପ୍ରେତ । ନାରୀ ହେଉଛି ଶକ୍ତିର ପ୍ରତୀକ, ସେ ସୃଷ୍ଟିକାରିଣୀ ଓ ସଂହାରିଣୀ । ଯେଉଁଠି ନାରୀଙ୍କର ସମ୍ମାନ, ସେଠାରେ ଦେବତା ବାସ କରିଥାନ୍ତି । ମୋ' ମତରେ ପ୍ରତ୍ୟେକ ନାରୀଙ୍କ ଭିତରେ ମା' ଦୁର୍ଗାଙ୍କର ଶକ୍ତି ନିହିତ । ଆସନ୍ତୁ, ଏହି ଦୁର୍ଗୋତ୍ସବ ଅବସରରେ ଶିକ୍ଷା, ସ୍ୱାସ୍ଥ୍ୟ, ପୁଷ୍ଟିସାଧନ ଏବଂ ନିଯୁକ୍ତି ଭଳି କ୍ଷେତ୍ରରେ ନାରୀମାନଙ୍କୁ ସମ ଅଧିକାର ପ୍ରଦାନ ପୂର୍ବକ ସେମାନଙ୍କ ବିକାଶ ଦିଗରେ ପ୍ରଯତ୍ନଶୀଳ ହେବା ।

ଲେନିନ୍ ମହାନ୍ତି

**ସମ୍ପାଦକ**

# ଶାରଦୀୟ ଦୁର୍ଗୋତ୍ସବ

**ରବୀନ୍ଦ୍ର କୁମାର ବେହୁରିଆ**

ସ୍ମରଣାତୀତ କାଳରୁ ଜଗଜ୍ଜନନୀଙ୍କ ଶରତକାଳୀନ ନୀରାଜନର ଧାରା ଅବ୍ୟାହତ । ସୃଷ୍ଟିର ପ୍ରାରମ୍ଭରୁ ମାନବ ଜାତି ଅଖିଳ ବିଶ୍ୱର ସୃଷ୍ଟି ସ୍ଥିତି ପ୍ରଳୟକାରିଣୀ ମହାଶକ୍ତିଙ୍କୁ ଆରାଧନା କରି ଆସିଛି । ପ୍ରକୃତିକୁ ଶକ୍ତି ଭାବରେ ସେ ଆରାଧନା କରିଛି । ଅଚିନ୍ତ୍ୟ ମହାଶକ୍ତିଙ୍କୁ ସେ ରୂପକଳ୍ପ ପ୍ରଦାନ କରିଛି । ପ୍ରତୀକାତ୍ମକ ମାତୃମୂର୍ତ୍ତି ଭାବରେ ଯାହାର ପ୍ରାଚୀନତମ ନିଦର୍ଶନ ସିନ୍ଧୁ ସଭ୍ୟତାର ଧ୍ୱଂସାବଶେଷରୁ ପ୍ରାପ୍ତ ହୋଇଛି । ଜଗଜ୍ଜନନୀ ଦେବୀ ଦୁର୍ଗା ଆଦ୍ୟାଶକ୍ତି । ଅନନ୍ତ ବିଶ୍ୱ ତାଙ୍କରିଠାରୁ ଉତ୍ପତ୍ତି । ଅଖିଳ ବିଶ୍ୱର ଜୀବଜଗତ ଓ ଜଡଜଗତ ସଭିଙ୍କର ସେ ସକଳ ଶକ୍ତିର ଆଧାର । ବେଦ ଅର୍ଥାତ ଜ୍ଞାନ ଓ ବିଜ୍ଞାନ ଉଭୟର ତତ୍ତ୍ୱ ଓ ତଥ୍ୟର କେନ୍ଦ୍ରବିନ୍ଦୁ ସେହି ଆଦ୍ୟାଶକ୍ତି । ବେଦର ସକଳ ପରମ ରହସ୍ୟ ଏବଂ ବିଜ୍ଞାନର ବିସ୍ମୟକର ଆବିଷ୍କାର କେବଳ ତାଙ୍କରି ଶକ୍ତିରେ ସହଜଲଭ୍ୟ । ସେ ହିଁ ସକଳ ଶକ୍ତିର ଆଧାର । ବେଦ ଓ ବିଜ୍ଞାନ ଉଭୟ ମତରେ ସକଳ ଶକ୍ତି ତାଙ୍କରିଠାରୁ ସମ୍ଭୂତ । ସେ ହିଁ ଯଥାର୍ଥରେ ଅନନ୍ତ ବିଶ୍ୱର ଜନନୀ ।

କେଉଁ ଅନାଦି କାଳରୁ ଏ ଦେଶ ମାଟିରେ ଶକ୍ତି ପୂଜାର ପ୍ରଚଳନ ଘଟିଛି । ଏ ଦେଶରେ ସମସ୍ତ ଧର୍ମଗ୍ରନ୍ଥ: ବେଦ, ଉପନିଷଦ, ପୁରାଣ ଆଦିରେ ଶକ୍ତିର ମହିମା ପ୍ରକଟିତ । ଦେଶର ପ୍ରତି ପ୍ରାନ୍ତ ଗୁଞ୍ଜରିତ ମାତୃ ସ୍ତୁତିରେ–

ଯା ଦେବୀ ସର୍ବ ଭୂତେଷୁ
ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସୈ ନମସ୍ତସୈ
ନମସ୍ତସୈ ନମୋଃ ନମଃ ।

ମା'ଙ୍କ ଦୁର୍ଗା ନାମକରଣ ସଂପର୍କରେ ନିମ୍ନ ଶ୍ଳୋକରୁ ଯାହା ସୂଚନା ମିଳେ ସେ ଦୁର୍ଗ ନାମକ ଏକ ମହାସୁରକୁ ନିହତ କରି ବିଶ୍ୱ ଭାର ଲାଘବ କରିଥିବା ହେତୁ ଦୁର୍ଗା ନାମରେ ତାଙ୍କର ଜଗତ ବିଖ୍ୟାତ ହୋଇଛି ।

ତ ଦୈବ ଚ ବଧିଷ୍ୟାମି,
ଦୁର୍ଗମାଖ୍ୟଂ ମହାସୁରମ୍
ଦୁର୍ଗା ଦେବୀତି ବିଖ୍ୟାତଂ,
ତସ୍ମେ ନାମ ଭବିଷ୍ୟତି ।

ଦୀର୍ଘକାଳ ଲାଗି ରହିଥିବା ଦେବାସୁର ସମରରେ ବିଜୟୀ ହୁଏ ଦାନବରାଜ ମହିଷାସୁର । ସମଗ୍ର ଅମରାବତୀ ହୁଏ ମହିଷା ଆୟତାଧୀନ । ସମସ୍ତ ଦେବଗଣ ସ୍ୱର୍ଗପୁରୀରୁ ବିତାଡିତ ହୋଇ ଦେବ ଦେବ ମହାଦେବ ଏବଂ ତ୍ରାଣକର୍ତ୍ତା ବିଷ୍ଣୁଙ୍କ ସମୀପରେ ଉପଗତ ହୁଅନ୍ତି । ମହିଷାର ଅତ୍ୟାଚାର ବର୍ଣ୍ଣନା ପୂର୍ବକ ପ୍ରତିକାର କାମନା କରନ୍ତି । ମହିଷାସୁର ଅତ୍ୟାଚାର ଓ ଦେବଗଣଙ୍କ ପ୍ରତି ତାହାର ଏବଂ ବିଧି କାର୍ଯ୍ୟକଳାପ ଶ୍ରବଣ କରି ଯୋଗାଧିରାଜ ଶିବ ଓ ଭଗବାନ ବିଷ୍ଣୁ କ୍ରୁଧ ହୋଇ

ଉଠନ୍ତି । ସେହି ସମୟରେ ବ୍ରହ୍ମା ବିଷ୍ଣୁ ଏବଂ ମହେଶ୍ୱରଙ୍କ ପବିତ୍ର ଶରୀରରୁ ଉଗ୍ରତେଜ ନିସୃତ ହୁଏ । ଇନ୍ଦ୍ରାଦି ଦେବତାମାନଙ୍କ ଶରୀରରୁ ମଧ୍ୟ ବିପୁଳ ତେଜ ରଶ୍ମିର ଉଦ୍ରେକ ହୁଏ । ସମସ୍ତ ତେଜ ରଶ୍ମିର ଏକୀଭୂତ ସତ୍ତା ମହିୟସୀ ଦେବୀ ଜ୍ୟୋତିର୍ମୟୀ ମା' ଦୁର୍ଗା । ତେତ୍ରିଶ କୋଟି ଦେବଗଣଙ୍କୁ ବରାଭୟ ଦେବା ନିମିତ୍ତ ଆବିର୍ଭୂତା ହୁଅନ୍ତି ।

ଭଗବତୀ ଦୁର୍ଗାଙ୍କ ଦ୍ୱାରା ମହିଷାସୁର ବିନାଶ ପାଇଁ ଦେବଗଣ ସମସ୍ତ ଅସ୍ତ୍ରଶସ୍ତ୍ର ପ୍ରଦାନ କରିଥିଲେ । ଶିବଙ୍କର ତ୍ରିଶୂଳ, ବିଷ୍ଣୁଙ୍କର ଚକ୍ର, ବ୍ରହ୍ମାଙ୍କର କମଣ୍ଡଳୁ, ସୂର୍ଯ୍ୟଙ୍କର କିରଣର ଜାଳ ଗଡଗ, ବରୁଣଙ୍କ ଶଙ୍ଖ, ଅଗ୍ନିଙ୍କର ପ୍ରଜ୍ୱଳନ ଶକ୍ତି, ବାୟୁଙ୍କର ଧନୁର୍ବାଣ, ଇନ୍ଦ୍ରଙ୍କର ବଜ୍ର, ଯମଙ୍କର କାଳଦଣ୍ଡ ପ୍ରଭୃତିର ଅଧିକାରିଣୀ ମହାଶକ୍ତି ମା' ଦୁର୍ଗାଙ୍କ ଦ୍ୱାରା ମହାପରାକ୍ରମୀ ମହିଷାସୁରର ବିନାଶ ଘଟି ଦେବାଲୋକରେ ଶାନ୍ତି ପ୍ରତିଷ୍ଠିତ ହୁଏ । ଇନ୍ଦ୍ର, ଚନ୍ଦ୍ର, ବରୁଣ, କୁବେର ପ୍ରଭୃତି ତେତ୍ରିଶ କୋଟି ଦେବଗଣ ଏବଂ ମହର୍ଷିଗଣ ଦିବ୍ୟ କୁଙ୍କୁମ, ଗନ୍ଧ, ଧୂପ, ଦୀପ, ନୈବେଦ୍ୟାଦି ସହିତ ବିଧିପୂର୍ବକ ଦେବୀଙ୍କ ଅର୍ଚ୍ଚନା ନିମିତ୍ତ ସ୍ତୁତି କରନ୍ତି ।

ପୁରାଣ ଯୁଗୀୟ ଶକ୍ତି ଉପାସନାରେ ମହିଷମର୍ଦ୍ଦିନୀ ଦୁର୍ଗା ପୂଜାର ବିଶେଷ ପ୍ରସାର ଘଟିଥିଲା । ପ୍ରାଥମିକ ପର୍ଯ୍ୟାୟରେ ଦ୍ୱିଭୁଜା ମହିଷାମର୍ଦ୍ଦିନୀ ଦୁର୍ଗା ମୂର୍ତ୍ତିର ପରିକଳ୍ପନା ହୋଇଥିଲେ ହେଁ ପରବର୍ତ୍ତୀ କାଳରେ ବହୁଭୁଜା ମୂର୍ତ୍ତିମାନ ସୃଷ୍ଟି ହୋଇ ଦୁର୍ଗତିନାଶିନୀ ଦୁର୍ଗା ସର୍ବଶକ୍ତିମୟୀ ଭାବରେ ମାନ୍ୟତା ଲାଭ କଲେ । ସୂଚନାଯୋଗ୍ୟ ଯେ, ତୀର୍ଥ ଭେଦରେ ଦେବୀ ଦୁର୍ଗା ଭିନ୍ନ ଭିନ୍ନ ନାମରେ ପ୍ରସିଦ୍ଧି ଲାଭ କଲେ । ମଥୁରା ଓ ବ୍ରଜ ଭୂମିରେ କାତ୍ୟାୟନୀ, କାଶୀରେ ବିଶାଳାକ୍ଷୀ, ପ୍ରୟୋଗରେ ଲଳିତା, ହସ୍ତିନାରେ ଜୟନ୍ତୀ, ହିମାଳୟରେ ନନ୍ଦା, ଏକାମ୍ରରେ କୀର୍ତ୍ତିମତୀ, ଗୋକର୍ଣ୍ଣରେ ଭଦ୍ରକାଳିକା, ବୈତରଣୀ ତୀର୍ଥରେ ବିରଜା, ଗଙ୍ଗାରେ ମଙ୍ଗଳା, ଯମୁନାରେ ମୃଗାବତୀ, ପୁରୁଷୋତ୍ତମରେ ବିମଳା, ସରସ୍ୱତୀ ତୀର୍ଥରେ ବେଦମାତା, ବଦ୍ରିକା ଧାମରେ ଉର୍ବଶୀ, କୈଳାସରେ ପାର୍ବତୀ ଆଦି ବହୁ ନାମରେ ଜଗଜ୍ଜନନୀ ପୁରାଣ ଯୁଗରେ ଭାରତ ଭୂଖଣ୍ଡରେ ଖ୍ୟାତିଲାଭ କରିଥିଲେ । ସଂକ୍ଷେପରେ କହିଲେ ପୁରାଣ ଯୁଗରେ ଭାରତର କୋଣେ ଅନୁକୋଣେ ଧର୍ମ, ଅର୍ଥ କାମ ଓ ମୋକ୍ଷ ପ୍ରାପ୍ତି କାମନାରେ ଶକ୍ତି ଉପାସନାର ଦ୍ରୁତ ପ୍ରସାର ଘଟି ସମଗ୍ର ଭାରତବାସୀ ଗୋଟିଏ ମା'ର ସନ୍ତାନ ଭାବରେ ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ଜୀବନଯାପନ କରୁଥିଲେ । ପ୍ରାକ୍‌ବୈଦିକ କାଳରୁ ଏଯାବତ୍ ଶକ୍ତି ଉପାସନା ଭାରତୀୟ ଜନମାନସରେ ଏକତ୍ୱବୋଧ ଓ ଆନନ୍ଦ ସୃଷ୍ଟି କରି ଆସିଛି । ଶାକ୍ତ ଭାବଧାରାର ସରଳତା, ନିରାଡମ୍ବରତା ଓ ମାତୃଭାବ ହିଁ ଭାରତୀୟ ସଂସ୍କୃତିର ବିଶେଷତ୍ୱ ।

ପୁରାଣ ପରବର୍ତ୍ତୀ ତନ୍ତ୍ର ଯୁଗରେ ଶରତକାଳୀନ ମହୋତ୍ସବର ଯନ୍ତ୍ର, ତନ୍ତ୍ର, କବଚ, କୀଳକ, ପଟଳ ପ୍ରଭୃତି ସଂଯୋଜିତ କରାଯାଇ ମହୋତ୍ସବର ମହାତ୍ମ୍ୟ ବୃଦ୍ଧି କରାଯାଇଛି । ସର୍ବୋପରି ତନ୍ତ୍ର ଯୁଗରେ ଶାରଦୀୟ ଦୁର୍ଗୋତ୍ସବର ମହାତ୍ମ୍ୟ ବିଶେଷ ବୃଦ୍ଧି ପାଇଛି । ମଧ୍ୟ ଯୁଗରେ ରାଜା, ମହାରାଜା ଓ ଜମିଦାରଙ୍କ ସମେତ ପ୍ରତ୍ୟେକ ପୀଠରେ ଶରତକାଳୀନ ଶାରଦୀୟ ଦୁର୍ଗୋତ୍ସବ ପାଳିତ ହୋଇଛି ଏବଂ ଦୁର୍ଗାଙ୍କୁ ଦୁର୍ଗତିନାଶିନୀ ନାମରେ ଅଭିହିତ କରାଯାଇ ଏହି ବାର୍ଷିକ ମହୋତ୍ସବର ପରିପ୍ରସାର ଘଟିଛି । ସୂଚନାଯୋଗ୍ୟ ଯେ ଊନବିଂଶ ଶତାବ୍ଦୀରୁ ମୃଣ୍ମୟୀ ଦୁର୍ଗା ପୂଜାର ଉନ୍ମେଷ ଘଟି ଶାରଦୀୟ ଦୁର୍ଗୋତ୍ସବର ଏକ ମହନୀୟ ପରମ୍ପରା ସୃଷ୍ଟି ହୋଇଛି ।

ଦେବୀ ଦୁର୍ଗା କେବଳ ସୃଷ୍ଟି ପାଳନ କର୍ତ୍ତ୍ରୀ ନୁହଁନ୍ତି, ପ୍ରକୃତିର ସଂହାରିଣୀ ଶକ୍ତି ରୂପେ ମଧ୍ୟ କେତେକ ଶାସ୍ତ୍ରରେ ତାଙ୍କର ବର୍ଣ୍ଣନା ରହିଛି । ତୈତ୍ତରୀୟ ଅରଣ୍ୟକରେ ଦୁର୍ଗା ଅଗ୍ନିଙ୍କର କନ୍ୟା ରୂପେ ବର୍ଣ୍ଣିତ । ମଣ୍ଡୁକ ଉପନିଷଦରେ ମଧ୍ୟ ଅଗ୍ନିଙ୍କର ସପ୍ତଜିହ୍ୱା ମଧ୍ୟରୁ ଏକ ଜିହ୍ୱା ରୂପେ ଦୁର୍ଗାଙ୍କୁ ଗ୍ରହଣ କରାଯାଇଛି । ଅଗ୍ନି ହେଉଛନ୍ତି ଧ୍ୱଂସର ପ୍ରତୀକ । ତେଣୁ ତାଙ୍କଠାରୁ ଜାତ ହୋଇଥିବା ଦୁର୍ଗାଙ୍କୁ ମଧ୍ୟ ସଂହାରକର୍ତ୍ତା ଭାବେ ବର୍ଣ୍ଣନା କରାଯାଇଛି । ଶସ୍ୟହାନୀ ସୃଷ୍ଟି ପ୍ରକ୍ରିୟାରେ ଏକ ପ୍ରକାର ସଂହାର ଘଟେ । ଶସ୍ୟର ସମୃଦ୍ଧି ପାଇଁ ସଂହାରିଣୀ ଶକ୍ତି ଦୁର୍ଗାଙ୍କୁ ସନ୍ତୁଷ୍ଟ କରାଇବା ଉଦ୍ଦେଶ୍ୟରେ ଆର୍ଯ୍ୟ ସମାଜରେ ଦୁର୍ଗା ପୂଜାର ପ୍ରବର୍ତ୍ତନ ହୋଇଥିବା ଅନୁମେୟ ।

ଶାରଦୀୟ ଦୁର୍ଗାପୂଜାରେ ଓଡ଼ିଶାର ବିଭିନ୍ନ ପୂଜାପୀଠମାନଙ୍କରେ ଆଶ୍ୱିନ ଶୁକ୍ଳ ଷଷ୍ଠୀଠାରୁ ଦଶମୀ ପର୍ଯ୍ୟନ୍ତ ମୃଣ୍ମୟୀ ଦେବୀଙ୍କଠାରେ ବିଲ୍ୱାଧିବାସ, ନବପତ୍ରିକା, ସନ୍ଧି,ଅପରାଜିତା ଓ କୁମାରୀ ପୂଜା ଆଦି ବିଶେଷ ପୂଜାନୁଷ୍ଠାନ କରାଯାଏ । ଆଶ୍ୱିନ ଶୁକ୍ଳ ଷଷ୍ଠୀର ରାତ୍ରିକାଳରେ ଦେବୀଙ୍କ ଅକାଳବୋଧନ ବା ଆମନ୍ତ୍ରାଧିବାସ ବିଲ୍ୱବୃକ୍ଷ ସମୀପରେ ସମ୍ପନ୍ନ ହୁଏ । ବିଲ୍ୱ ବୃକ୍ଷରେ ଦେବୀଙ୍କ ବୋଧନ କାଳରେ ଶ୍ରୀବୃକ୍ଷେ ବୋଧୟାମି ତ୍ୱା ଯାବତ୍ ପୂଜାଂ କରୋମ୍ୟହମ୍– ଏହି ମନ୍ତ୍ରରେ ବିଲ୍ୱାଧିବାସ କାଳରେ ଦେବୀଙ୍କୁ ଆବାହନ କରାଯାଏ । ନବପତ୍ରିକା ପୂଜାରେ ନଅ ପ୍ରକାର ଉଦ୍ଭିଦ ମଧ୍ୟରେ ବିଲ୍ୱଶାଖା ଅନ୍ୟତମ । ଯୁଗଳ ବିଲ୍ୱଫଳ ନବପତ୍ରିକା



ମଧ୍ୟରେ ସଂଯୁକ୍ତ କରି 'ଓଁ ବିଲ୍ୱଧିଷ୍ଠାତ୍ରୀ ଶିବାୟୈନମଃ'– ଏହି ମନ୍ତ୍ରରେ ବିଲ୍ୱ ଶାଖାକୁ ପୂଜା କରାଯାଏ । ଦୁର୍ଗାପୂଜା ସହ ନବପତ୍ରିକାର ସଂଯୋଗ ପରବର୍ତ୍ତୀ କାଳରେ ହୋଇଅଛି ବୋଲି ପଣ୍ଡିତମାନେ ମତ ଦିଅନ୍ତି । କାଳିକା ପୁରାଣରେ ନବପତ୍ରିକା ପୂଜାରେ ପ୍ରଶସ୍ତ ବର୍ଣ୍ଣନା ରହିଛି । ନବପତ୍ରିକାର ଅର୍ଥ କଦଳୀ, ସାରୁ, ହରିଦ୍ରା, ଜୟନ୍ତୀ, ବିଲ୍ୱ, ଡାଳିମ୍ବ, ଅଶୋକ, ପାନ ଓ ଧାନ ଆଦି ନଅଟି ଗଛକୁ ବୁଝାଏ । ସପତ୍ର ଶାଖାଯୁକ୍ତ ଏହି ନଅଗୋଟି ଗଛକୁ ଯୋଡାବେଲ ସହ ଅପରାଜିତା ଲତାରେ ବାନ୍ଧି ଲାଲ ଶାଢୀ ଦ୍ୱାରା ଏକ ବିଧି କଳ୍ପନାରେ ଆବୃତ କରି ପୂଜା କରିବାର ବିଧି ରହିଛି । ନଅଟି ଉଦ୍ଭିଦର ଏକତ୍ର ସହାବସ୍ଥାନ ନବପତ୍ରିକାକୁ ନବଦୁର୍ଗା ଭାବରେ– 'ଓଁ ନବପତ୍ରିକା ବାସିନୌ ନବ ଦୁର୍ଗାୟୈ ନମଃ'– ଏହି ମନ୍ତ୍ରରେ ଆବାହନ ପୂର୍ବକ ପୂଜା କରାଯାଏ । ଦୁର୍ଗାପୂଜା ସହ ନବପତ୍ରିକାର ସଂପର୍କରୁ ପଣ୍ଡିତଗଣ ମତ ଦିଅନ୍ତି ଯେ ନବପତ୍ରିକା ପୂଜା ଦ୍ୱାରା ଶସ୍ୟଦେବୀ ପୃଥିବୀ ମାତାକୁ ପୂଜା କରିବାର ଏଥିରେ ଏକ ପ୍ରଚ୍ଛନ୍ନ ପ୍ରଯନ୍ ନିହିତ ଅଛି ।

ନବପତ୍ରିକା ପୂଜା ପରି ସନ୍ଧିପୂଜା ଦୁର୍ଗାପୂଜାର ଏକ ବିଶେଷ ଅନୁଷ୍ଠାନ । ଅଷ୍ଟମୀ ଓ ନବମୀ ତିଥିର ସଂଯୋଗ କାଳରେ ଅନୁଷ୍ଠିତ ବିଶେଷ ପୂଜା ସନ୍ଧିପୂଜା ନାମରେ ଖ୍ୟାତ । ବିଶ୍ୱାସ ଅଛି ଯେ ଏହି ସମୟରେ ଦେବୀଙ୍କ ସାକ୍ଷାତ ଆବିର୍ଭାବ ହୁଏ । ବୃହଦ୍ଧର୍ମ ପୁରାଣରେ ବର୍ଣ୍ଣିତ ଅଛି ରାବଣ ବଧ ନିମନ୍ତେ ବ୍ରହ୍ମା ସନ୍ଧିପୂଜା କରି ଆଶ୍ୱିନ ଶୁକ୍ଳ ନବମୀରେ ଦେବୀଙ୍କୁ ଆବାହନ କରିଥିଲେ । ଏହି କାରଣରୁ ସନ୍ଧିପୂଜାର ସ୍ୱାତନ୍ତ୍ର୍ୟତା ରହିଅଛି ।

କୁମାରୀ ପୂଜା ଦୁର୍ଗା ପୂଜାର ଏକ ବୈଶିଷ୍ଟ୍ୟପୂର୍ଣ୍ଣ ଦିଗ । ସପ୍ତମୀ, ଅଷ୍ଟମୀ ଓ ନବମୀ ପୂଜା ଶେଷରେ କୁମାରୀ କନ୍ୟାଙ୍କୁ ନବବସ୍ତ୍ର ପରିଧାନ କରାଇ ଦେବୀ ଜ୍ଞାନରେ ପୂଜା କରିବାର ରୀତି ପ୍ରଚଳିତ ଅଛି । ବୃହଦ୍ଧର୍ମ ପୁରାଣରେ କୁହାଯାଇଛି ଯେ, ଦେବତାମାନଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ଦୁର୍ଗା ଦେବଗଣଙ୍କ ସମ୍ମୁଖରେ କନ୍ୟା ରୂପରେ ଆବିର୍ଭୂତ ହୋଇଥିଲେ । ଦେବୀ ପୁରାଣରେ ନିର୍ଦ୍ଦେଶ ଅଛି, ଦେବୀଙ୍କ ପୂଜାଶେଷରେ କୁମାରୀମାନଙ୍କୁ ଯଥୋକ୍ତ ପୂଜା କରି ସୁମିଷ୍ଟ ଭୋଜନ ଦ୍ୱାରା ଆପ୍ୟାୟିତ କରାଇବା ଉଚିତ । ଦୁର୍ଗାପୂଜା ସହ କୁମାରୀ ପୂଜାର ସଂପର୍କ ତାନ୍ତ୍ରିକ ସାଧନାର ନିଛକ ପ୍ରତିଫଳନ ଅଟେ । ପ୍ରଥମେ ପଶ୍ଚିମବଙ୍ଗରେ କୁମାରୀ ପୂଜାର ସୂତ୍ର ଘଟି ପରବର୍ତ୍ତୀ କାଳରେ ଅନ୍ୟତ୍ର ଏହାର ପ୍ରସାର ଘଟିଛି ବୋଲି ମନେହୁଏ ।

ତନ୍ତ୍ର ମତବାଦର ଛାୟା ରୂପେ କୁମାରୀ ପୂଜା ପରି ଅପରାଜିତା ପୂଜା ଦୁର୍ଗାପୂଜାର ଅନ୍ୟ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଦିଗ ଅଟେ । ଦୁର୍ଗାପୂଜାରେ ଦଶମୀ ଦିନ ଘଟ ବିସର୍ଜନ ପରେ ଅପରାଜିତା ପୂଜାବିଧି ପ୍ରଚଳିତ । ଚତୁର୍ଭୁଜା ଅପରାଜିତା ବୈଷ୍ଣବୀ ଶକ୍ତି ଲକ୍ଷ୍ମୀ ଓ ଶିବଶକ୍ତି ଶିବାନୀଙ୍କ ମିଶ୍ରିତ ଶକ୍ତି ରୂପେ କଳ୍ପିତା । ଦୁର୍ଗାଙ୍କ ନାମାନ୍ତର ମଧ୍ୟ ଅପରାଜିତା । କୌଟଲ୍ୟଙ୍କ ଅର୍ଥଶାସ୍ତ୍ରରେ ଦୁର୍ଗେ ନିବେଶିତା ଦେବୀ ଅପରାଜିତା ନାମରେ ପୂଜା ହେବା ବିଷୟ ବର୍ଣ୍ଣିତ ହୋଇଅଛି । ସମ୍ଭବତଃ ନାମ ସଦୃଶ୍ୟ ହେତୁ ଏହି ଦଶମୀରେ ଅପରାଜିତା ପୁଷ୍ପ ସମର୍ପଣ ପୂର୍ବକ ଅପରାଜିତା ସ୍ତୋତ୍ର ପାଠ କରାଯିବାର ବିଧି ଅଛି ।

ଦୁର୍ଗୋତ୍ସବ ଦଶହରା ପର୍ବ ରୂପେ ସର୍ବଭାରତୀୟ ସ୍ତରରେ ପ୍ରସିଦ୍ଧି ଲାଭ କରିଅଛି । ଆଶ୍ୱିନ ଶୁକ୍ଳ ଶ୍ରବଣାଯୁକ୍ତ ଦଶମୀ ବିଜୟା ଦଶମୀ ନାମରେ ଖ୍ୟାତ ଅଟେ । ଏ ସଂପର୍କୀୟ ଶାସ୍ତ୍ରୀୟ ପ୍ରମାଣ । ପ୍ରଣିଧାନଯୋଗ୍ୟ–

ଆଶ୍ୱିନ ଦଶମୀଯୁକ୍ତା ଶ୍ରବଣେନ ସମନ୍ୱିତା
ବିଜୟୀ ଦଶମୀ ପ୍ରୋକ୍ତା ସାଚୈବାତ୍ୟନତ ଦୁର୍ଲଭା ।'

ଏହି ପବିତ୍ର ଦଶହରା ଦିବସରେ ରାମଚନ୍ଦ୍ର ମାତୃଶକ୍ତି ବନଦୁର୍ଗାଙ୍କୁ ସ୍ତୁତି କରି ରାବଣର ନିଧନ ଉଦ୍ଦେଶ୍ୟରେ ଲଙ୍କା ଅଭିମୁଖେ ବିଜୟ ଯାତ୍ରା କରିଥିବାରୁ ଏହି ତିଥିକୁ ବିଜୟା ଦଶମୀ କୁହାଯାଏ । ପୁଣି ଏହି ଦିବସର ଅବ୍ୟବହିତ ପୂର୍ବରୁ ସିଂହବାହିନୀ ଆଦ୍ୟାଶକ୍ତି ଦୁର୍ଗା ଦୁର୍ଦ୍ଦମନୀୟ ମହିଷାସୁରକୁ ବଧ କରି ଦେବତାମାନଙ୍କର ମଙ୍ଗଳ ବିଧାନ କରିଥିଲେ । ଏହି ପର୍ବର ମହତ୍ୱ ବିଷୟରେ ଦେବୀ ପୁରାଣରେ କୁହାଯାଇଛି ଯେ ଏହା ଏକ ମହାନ ପବିତ୍ର ବ୍ରତ ଏବଂ ଏହି ବ୍ରତ ପାଳନ କଲେ ସିଦ୍ଧିଲାଭ ହୁଏ ଓ ଶତ୍ରୁମାନେ ପରାଜିତ ହୁଅନ୍ତି । କୁରୁକ୍ଷେତ୍ର ଯୁଦ୍ଧ ଆରମ୍ଭର ପ୍ରାକ୍ କାଳରେ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ବନଦୁର୍ଗାଙ୍କ ଆରାଧନା ପାଇଁ ଉପଦେଶ ଦେଇଥିଲେ । ଇତିହାସ ପ୍ରସିଦ୍ଧ ଛତ୍ରପତି ଶିବାଜୀ ମଧ୍ୟ ମୋଗଲମାନଙ୍କ ସହ ଯୁଦ୍ଧ କରିବା ସମୟରେ ଦୁର୍ଗାଙ୍କର ଉପାସନା କରିଥିଲେ । ଏହି ଦିନ ଜଗତର ଦୁଃଖ ହରଣ ହୋଇଥିବାରୁ ଏହା ଦୁଃଖହା ଦଶମୀ ନାମରେ ଖ୍ୟାତିଲାଭ କରିଅଛି ବୋଲି ଆଦିକବି ଶୁଦ୍ରମୁନି ସାରଳା ଦାସ ଚଣ୍ଡୀପୁରାଣରେ ଲେଖିଛନ୍ତି ।

ଦୁଃଖହା ଦଶମୀ ଦିନ ମହାଦଶାରୁ ଉଦ୍ଧାର ପାଇ ଦେବତାମାନେ ମହାଶକ୍ତି ଦୁର୍ଗତିନାଶିନୀ ଦୁର୍ଗାଙ୍କୁ ସ୍ତୁତି କରିଥିବାରୁ ଏହି ତିଥିରେ ଦୁର୍ଗାଙ୍କର ଆରାଧନା କରାଯାଏ । ପୁଣି ଦେବୀ ମାହାତ୍ମ୍ୟରୁ ଜଣାଯାଏ ଚଣ୍ଡୀ ଶୁଣି ରାଜ୍ୟଭ୍ରଷ୍ଟା ରାଜା ସୁରଥଙ୍କ





ମୋହ ତୁଟିଯିବା ପରେ ସେ ଦୁର୍ଗାପୂଜାରେ ମହାସ୍ନାନ ବଳି ଓ ହୋମର ବ୍ୟବସ୍ଥା ଥିବାରୁ ଏହାକୁ ମହାପୂଜା ମଧ୍ୟ କୁହାଯାଏ।

'ସର୍ବ ମଙ୍ଗଳ୍ୟ ମାଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ
ଶରଣ୍ୟେ ତ୍ର୍ୟମ୍ବକେ ଗୌରୀ ନାରାୟଣୀ ନମୋସ୍ତୁତେ।

ସଂପ୍ରତି ଶାରଦୀୟ ଦୁର୍ଗୋତ୍ସବ ଜାତି, ଧର୍ମ, ବର୍ଣ୍ଣ ଓ ସଂପ୍ରଦାୟ ନିର୍ବିଶେଷରେ ଏକ ଗଣ ମହୋତ୍ସବ ରୂପେ ପ୍ରତିଭାତ । କୋଟି ପ୍ରାଣ ଫୁଲକୁ ଗୋଟିଏ ସୂତ୍ରରେ ଗୁନ୍ଥିବାକୁ ଏହା ହିଁ ଏକମାତ୍ର ପୂଜା, ଦୁର୍ଗାପୂଜା, ସାର୍ବଜନୀନ ଦୁର୍ଗାପୂଜା। ସେଇ ପରମ କଲ୍ୟାଣମୟୀ ମା' ଦୁର୍ଗାଙ୍କ ପୂଜା କେବଳ ଧର୍ମ ଓ ଆଚାରର ମହତ୍ୱ ପ୍ରକଟିତ କରୁଛି, ତାହା ନୁହେଁ ବରଂ ସଙ୍ଗେ ସଙ୍ଗେ କାୟିକ ମାନସିକ ଉଲ୍ଲାସରେ ସଂଯୋଗର ଦ୍ୱାର ଉନ୍ମୋଚନ କରି ଚାଲିଛି। ଆଜିର ପୁଣ୍ୟ ମହୋତ୍ସବରେ ଦେବୀ ଦୁର୍ଗା ଆପଣାର ଦଶଭୁଜାରେ ମିଥ୍ୟା, କ୍ରୋଧ, ଅଭିମାନ, ଅହଂତ୍ୱ ନାସ୍ତିକ, ଭାବ, ଆତ୍ମଗ୍ଲାନି, ଅସୂୟା, ଈର୍ଷା, ଦ୍ୱେଷ ଓ ପରୋକ୍ଷବାକ ପ୍ରଭୃତି ଦଶବାଧା ବିନିର୍ମୁକ୍ତ କରି ବିଶ୍ୱର ମଙ୍ଗଳ କରନ୍ତୁ। କରୁଣାମୟୀ ମା' ସମସ୍ତ ଦୁର୍ଗତିରୁ ଏ ଜାତିକୁ, ଏ ଦେଶକୁ ରକ୍ଷା କରନ୍ତୁ, ଏତିକି ତାଙ୍କ ଶ୍ରୀଚରଣରେ ନିବେଦନ।

**ସହାୟକ ଗ୍ରନ୍ଥସୂଚୀ:**


୧. ମିଶ୍ର, ଅନ୍ତର୍ଯ୍ୟାମୀ– ଭାରତର ଧର୍ମ ଓ ସଂସ୍କୃତି

୨. ଉତ୍କଳ ପାଠକ ସଂସଦ– ଓଡ଼ିଶାର ପର୍ବପର୍ବାଣି, ଓଷା, ବ୍ରତ, ଯାନିଯାତ୍ରା

୩. ପତି, ଜ୍ଞାନରଞ୍ଜନ– ଶକ୍ତି ପରମ୍ପରାରେ ଶାରଦୀୟ ଦୁର୍ଗୋତ୍ସବ। ଦିଗଶ୍ରୀ। ଯାଜପୁର, ୨୦୦୬

୪. ସ୍ୱାଇଁ , ଚନ୍ଦ୍ରମଣି– ଅଦ୍ୱିତୀୟା, ଅକ୍ଟୋବର–ଡିସେମ୍ବର, ୨୦୦୬

୫. ମହାନ୍ତି, ରଶ୍ମି ରଞ୍ଜନ– ସୁଶାସନ, ୨୦୦୫

୬. ସାହୁ, କୃପାସାଗର– ସଂପାଦକୀୟ, ପ୍ରତିବେଶୀ, କୋଲକାତା, ୧୯୯୭

୭. ସାହୁ, ପଙ୍କଜ – ଚିହ୍ନାମୁହଁ । ଭଦ୍ରକ, ୨୦୦୪



ଅବସରପ୍ରାପ୍ତ ଅଧ୍ୟାପକ
ଚାନ୍ଦବାଲି କଲେଜ, ଚାନ୍ଦବାଲି, ଭଦ୍ରକ
ପିନ: ୭୫୬୧୩୩




# ଜଗଦମ୍ବା

**ଅଧ୍ୟାପିକା ସୌଦାମିନୀ ବେହେରା**

ମା' ଆସେ ଧରା ହସେ ଚମ୍ପାଫୁଲ ବାସେ
କାଶତଣ୍ଡୀ ନଇ ଧାରେ କିରିକିରି ହସେ

ଆଦିଶକ୍ତି ଜଗଦମ୍ବା ମହିଷାମର୍ଦ୍ଦିନୀ
ଛିନ୍ନମସ୍ତା ରୁଦ୍ରକାଳୀ ଝଙ୍କଡବାସିନୀ
ଯୁଗେ ଯୁଗେ ଅବତରି ପାପୀ ପାପ ନାଶେ ।

ତାରାତାରିଣୀ ମଙ୍ଗଳା ଚଣ୍ଡୀ ସମଲେଇ
ହିଙ୍ଗୁଳା ଚର୍ଚ୍ଚିକା ଉଗ୍ରତାରା ବିରଜାଇ
ଚଣ୍ଡ ଚାମୁଣ୍ଡାକୁ ଧରି ମହାକାଳୀ ବସେ ।

ଯା' ଦୟାରେ ସଂସାରରେ ସବୁ ବୁଝାମଣା
ତା' କରୁଣା ହେଲେ ଊଣା ହୁଏ ବାଟବଣା
ଧରାକୁ ମା' ଭିନ୍ନ ଭିନ୍ନ ରୂପ ନେଇ ଆସେ ।


ଶ୍ରୀ ସୋମନାଥ ବାଲୁଙ୍କେଶ୍ୱର ଦେବ
ମହିଳା ମହାବିଦ୍ୟାଳୟ
କଣ୍ଟିଆ, ଜଟଣୀ, ଖୋର୍ଦ୍ଧା

# ଶକ୍ତିପୀଠ ଓଡିଶା

ବୈକୁଣ୍ଠନାଥ ମହାପାତ୍ର

ଓଡିଶା ତନ୍ତ୍ର ପୀଠରେ ପରିପୂର୍ଣ୍ଣ । ଓଡିଶାର ବିଭିନ୍ନ ସ୍ଥାନରେ ତନ୍ତ୍ର ଦେବତା ଭିନ୍ନ ଭିନ୍ନ ରୂପରେ ଅବସ୍ଥାନ କରିଛନ୍ତି । କେଉଁଠି ପାହାଡ଼ର ଏକ ଅଂଶକୁ ତନ୍ତ୍ର ଦେବତା ବୋଲି ଜ୍ଞାନ କଲାବେଳେ, କେଉଁଠି ପଥର ଖଣ୍ଡକୁ, କେଉଁଠି ବା ଗଛକୁ ଠାକୁରାଣୀ ରୂପେ ପୂଜା କରାଯାଉଛି । କେଉଁଠି ମନ୍ଦିରରେ, ଗଛ ମୂଳରେ, ନଦୀ–ହ୍ରଦ–ସମୁଦ୍ର କୂଳରେ ଦେବୀ ପ୍ରସ୍ତରରେ ଗଠିତ ହୋଇ ଉପାସିତା ହେଉଛନ୍ତି । ସେହି ଦେବୀ କେଉଁଠି ସୌମ୍ୟା, କେଉଁଠି ଭୟଙ୍କର ଭାବେ ଅଧିଷ୍ଠିତା । ସବୁ ମୂର୍ତ୍ତି ବିଶ୍ୱର କଲ୍ୟାଣ ପାଇଁ ଅବସ୍ଥାନ କରିଛନ୍ତି । ଗ୍ରାମ, ନଗରର ଦୁଃଖ, ଶୋକ ଦୂର କରିବାକୁ ସେ କେଉଁଠି ଦ୍ୱିଭୁଜା ତ କେଉଁଠି ଚତୁର୍ଭୁଜା, କେଉଁଠି ଷଡ଼–ଅଷ୍ଟ–ଦଶ ଭୁଜାଦିରେ ବିଭିନ୍ନ ଆୟୁଧମାନ ଧରି ଅବସ୍ଥାପିତା । ଗୋଟିଏ ଗୋଟିଏ ପ୍ରସିଦ୍ଧ ତନ୍ତ୍ର କ୍ଷେତ୍ରରେ ଚତୁର୍ଦ୍ଦିଗରେ ଆଠଟି ଲେଖାଏଁ ଦେବୀ ରହିଥିବା ଦେଖାଯାଏ । ଏହିଭଳି ବାରଟି ତନ୍ତ୍ର ପୀଠର ତାଲିକା ଶାରଳା ଦାସଙ୍କ ମହାଭାରତ ମଧ୍ୟପର୍ବ ପୁରାଣ ପ୍ରକାଶନୀ ଗ୍ରନ୍ଥରେ ଦେଖିବାକୁ ମିଳେ । ଏହି ବାରଟି ତନ୍ତ୍ର ପୀଠ ବ୍ୟତୀତ ବହୁ ପୀଠ ଯେ ଓଡିଶାରେ ଅଛି ଏଥିରେ ସନ୍ଦେହ ନାହିଁ । ଗଞ୍ଜାମ, କୋରାପୁଟ, ଫୁଲବାଣୀ, ମୟୂରଭଞ୍ଜ, ବାଲେଶ୍ୱର, କେନ୍ଦୁଝର, କଳାହାଣ୍ଡି, ବଲାଙ୍ଗୀର ଆଦି ଜିଲ୍ଲାମାନଙ୍କରେ ବହୁ ଶକ୍ତିପୀଠ ଦେଖିବାକୁ ମିଳେ, ଯାହା ଉପରେ ଲେଖିବା ପାଇଁ ଗଲେ ସ୍ୱତନ୍ତ୍ର ଏକ ଗ୍ରନ୍ଥ ହେବ । ସେହିସବୁ ଶକ୍ତିପୀଠକୁ ଲକ୍ଷ୍ୟ କଲେ ଯେ କେହି କହିବ କେବଳ ଭାରତ କାହିଁକି ସାରା ପୃଥିବୀ ମଧ୍ୟରେ ଓଡିଶା ଦେବୀଙ୍କର ଆଦି ବାସସ୍ଥାନ । ମାତ୍ର ଦୁଃଖର କଥା ଏ ପର୍ଯ୍ୟନ୍ତ ବିଶ୍ୱ ଦରବାରରେ ସେହିସବୁ ପୀଠକୁ ବିଧିବଦ୍ଧ ଭାବେ ଦର୍ଶାଯାଇ ନାହିଁ କିମ୍ବା ପଡୋଶୀ ରାଜ୍ୟର ଯେଉଁ କେତେଜଣ ଗବେଷକ ଏହାକୁ ଲକ୍ଷ୍ୟ କରିଛନ୍ତି, ସେମାନେ ମଧ୍ୟ ସମସ୍ତଙ୍କ ସମ୍ମୁଖରେ ତାହା ବାଢିବାକୁ କୁଣ୍ଠିତ ହୋଇଛନ୍ତି । ପୁରାଣ ପ୍ରକାଶନୀ ମଧ୍ୟପର୍ବରେ ଉଲ୍ଲେଖ ଅଛି–

ଝଙ୍କଡେ ରହିଲୁ ମାତ ଶାରଳା ବୋଲାଇ ।
କାକଟପୁରେ ବୋଲାଉ ମଙ୍ଗଳା ଯେ ତୁହି ।।
ଲହ ଲହ ଜିହ୍ୱା ଯେ ସୁନ୍ଦରେ ମୁଖ ମୁଣ୍ଡି ।
କୋଣାରକେ ରହିଲୁ ଅଭୟା ରାମଚଣ୍ଡୀ ।।
ପୁରୁଷୋତ୍ତମେ ରହିଲୁ ବିମଳା ବୋଲାଇ ।
ବାଙ୍କୀରେ ରହିଲୁ ମା' ଗୋ ନାମ ଚର୍ଚ୍ଚିକାଇ ।।
ସମ୍ବଲପୁରେ ରହିଲୁ ନାମ ସମଲାଇ ।
ଯାଜପୁରେ ରହିଲୁ ତୋ ନାମ ବିରଜାଇ ।।
ପଶ୍ଚିମେ ରହିଲୁ ମା' ଗୋ ନାମ ହିଙ୍ଗୁଳାଇ ।
ଭୁବନେଶ୍ୱରେ ରହିଲୁ ଗଉରୀ ବୋଲାଇ।।
ବାଣପୁରେ ରହିଲୁ ତୋ ନାମ ଭଗବତୀ ।
ସକଳ ଅମରେ ମା' ଗୋ କରନ୍ତି ଯେ ସ୍ତୁତି ।।
ଉତ୍ତର ଦିଗେ ରହିଲୁ ଚଣ୍ଡୀ ନାମ ବହି ।
ଏମନ୍ତ ଦ୍ୱାଦଶ ନାମ ବ୍ରହ୍ମା ଗଲେ କହି ।।

ଏହି ତାଲିକାଟି ଏତେ ସଂକ୍ଷିପ୍ତ ଯେ ଏହା ମୋଟାମୋଟି ମଧ୍ୟ କୁହାଯାଇ ପାରିବ ନାହିଁ । ଶହ ଶହ ସଂଖ୍ୟାରେ ଶକ୍ତିପୀଠ ସ୍ଥାନରେ ମାତ୍ର ବାରଟି ନେତି ବାଚକ ଶବ୍ଦ ଭଳି । ଯେତିକି ପ୍ରସିଦ୍ଧ ସ୍ଥାନରେ ମୂର୍ତ୍ତି ଗଠିତ ହୋଇ ଉପାସିତ ହେଉଛନ୍ତି ତାହାଙ୍କ ସଂଖ୍ୟା ବାରରେ କେତୋଟି ଶୂନ ବସିବ ତାହା କହି ହେବ ନାହିଁ । କାହିଁକି ନା ଏପର୍ଯ୍ୟନ୍ତ ଓଡ଼ିଶାର ପ୍ରତ୍ନତାତ୍ତ୍ୱିକ ବିଭାଗ ତାହା ପ୍ରାୟ ନିରୂପଣ କରି ନାହାନ୍ତି । ତେଣୁ ବ୍ୟକ୍ତିଗତ ଭାବେ ତାହା କହିବା କଷ୍ଟ ।

ଉତ୍ତରରେ ବାଲେଶ୍ୱର ଜିଲ୍ଲା ଓ ମୟୂରଭଞ୍ଜ ଜିଲ୍ଲା ଓଡ଼ିଶାର ଶେଷସୀମା ବାଲେଶ୍ୱର ଜିଲ୍ଲାର ପ୍ରସିଦ୍ଧ ଶକ୍ତିପୀଠ ଭଦ୍ରକର

ଭଦ୍ରକାଳୀ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ପୂର୍ବରୁ ଉପାସିତ । ଭଦ୍ରକାଳୀ ନାମରୁ ଜଣାଯାଏ ସେକାଳରୁ କବଳିତ କରି କାଳୀ କାଳ ହେଉଛନ୍ତି ଶିବ । ସେ ଶିବଙ୍କୁ ସମ୍ପୂର୍ଣ୍ଣ ଆୟତ୍ତରେ ରଖିବା ହେତୁ କାଳୀ ହିନ୍ଦୁତନ୍ତ୍ରର ଦଶମହାବିଦ୍ୟାର ପ୍ରଥମ ମହାବିଦ୍ୟାର ପ୍ରଥମ ମହାବିଦ୍ୟା କାଳୀ ନାମରେ ନାମିତ । ସେଠାରେ ସେ ଖଡ୍‌ଗ ନୃମୁଣ୍ଡ ଧାରିଣୀ ଓ ମାଳିନୀ । ସେ ଦଣ୍ଡାୟମାନ ହୋଇଛନ୍ତି ଶିବଙ୍କ ଉପରେ । ଶିବ ତାଙ୍କ ପାଦତଳେ ମୃତପ୍ରାୟ । ମାତ୍ର ଏହିଭଳି ରୂପ ଖୋଦିତ ହେଉଥିବା ମୂର୍ତ୍ତି ଭଦ୍ରକାଳୀ ହୁଅନ୍ତି । ଭଦ୍ରକାଳୀ ରୂପେ ବର୍ତ୍ତମାନ ଏକ ମାତୃକା ଉପାସିତା । ମାତୃକା ଉପାସନା ପ୍ରାଗ୍‌ବୈଦିକ ଯୁଗରୁ ଚଳି ଆସିଛି । ବୈଦିକ ସାହିତ୍ୟରେ ବହୁ ଦେବୀମାନଙ୍କ ମନ୍ତ୍ର, ଯୁକ୍ତ ଦୃଷ୍ଟ ହେଲେ ମଧ୍ୟ ତାଙ୍କ କୋଳରେ ସନ୍ତାନ ଥିବା କଥା ଉଲ୍ଲେଖ ନାହିଁ । ବୈଦିକ ଯୁଗ ପରେ ବୌଦ୍ଧ ଯୁଗରେ ବୁଦ୍ଧ କେତେକଙ୍କୁ ସନ୍ତାନ ବତ୍ସଳା କରାଇଥିଲେ । ସେମାନେ କେବଳ ସେ ସନ୍ତାନ ବତ୍ସଳା ଥିଲେ ତାହାନୁହେଁ, ଲୋକଙ୍କର ମଙ୍ଗଳ ନିମିତ୍ତ ସେମାନେ ବହୁ କାର୍ଯ୍ୟ କରୁଥିଲେ । ଲଳିତଗିରି ବୌଦ୍ଧ ବିହାରରେ ଥିବା ହାରିତୀଙ୍କ କୋଳରେ ସନ୍ତାନ ଥିବା ଦେଖାଯାଏ । ସେହିଭଳି ଅଶ୍ୱଘୋଷ ପକ୍ଷିଣୀ ମାତୃକାଙ୍କ କଥା ଉଲ୍ଲେଖ କରିଛନ୍ତି । କିନ୍ତୁ ପୂର୍ବେ ଭଦ୍ରକାଳୀ ପୂର୍ଣ୍ଣଦେବୀ ନାମରେ ନାମିତ ଥିଲେ । ଭଦ୍ରକାଳୀ ମନ୍ଦିରର ଶିଳାଲେଖ ଯାହାକି ଓଡ଼ିଶା ସଂଗ୍ରହାଳୟରେ ସଂଗୃହୀତ, ସେଥିରୁ ଜଣାଯାଏ ବାପାଙ୍କ ପତ୍ନୀ ରଘେଲୀ ରାଜାଙ୍କ ଅନୁମତିକ୍ରମେ କିଛି ସ୍ୱର୍ଣ୍ଣବସ୍ତ୍ର ପର୍ଣ୍ଣଦେବୀଙ୍କୁ ଦାନ କରିଥିଲେ । ପର୍ଣ୍ଣଦେବୀ ଯେ ବୌଦ୍ଧଙ୍କ ପର୍ଣ୍ଣଶବରୀ ଏହା ପୁନଃ ମନକୁ ଛୁଇଁଥାଏ ।

ଗବେଷକମାନେ ନିରୂପଣ କରନ୍ତି ପର୍ଣ୍ଣଶବରୀ ପରବର୍ତ୍ତୀ କାଳରେ ଦୁର୍ଗା ରୂପେ ଉପାସିତ ହେଲେ । ପର୍ଣ୍ଣଶବରୀ ଯେ ଶାବର ଦେବତା ଏହା ତାଙ୍କ ନାମରୁ ଜଣାଯାଉଛି । କୌଣସି ବୈଦିକ ଦେବତା ପରବର୍ତ୍ତୀ କାଳରେ ହିନ୍ଦୁମାନଙ୍କର ତନ୍ତ୍ର ଦେବୀ ରୂପେ ଉପାସିତ ହେବା ଦେଖାଯାଏ ନାହିଁ । ବେଦର ସରସ୍ୱତୀ ଓ ଲକ୍ଷ୍ମୀ ଆଦି ଦେବୀଙ୍କର ନାମ ଥିଲେ ମଧ୍ୟ ବର୍ତ୍ତମାନ ଲକ୍ଷ୍ମୀ ସରସ୍ୱତୀ ବୈଦିକ ଲକ୍ଷ୍ମୀ ସରସ୍ୱତୀଙ୍କଠାରୁ ଭିନ୍ନ । ବର୍ତ୍ତମାନର ଦେବତାମାନେ ଆଦିବାସୀ, ଦ୍ରାବିଡ ସମ୍ପ୍ରଦାୟରୁ ଆସିଛନ୍ତି, ଏହା ଅନୁଧ୍ୟାନରୁ ଜଣାପଡେ । ମହାଯାନ ବୌଦ୍ଧଙ୍କ ମତରେ ଅକ୍ଷୋଭ୍ୟ ଏବଂ ଅମୋଘସିଦ୍ଧି ନାମକ ଧ୍ୟାନୀ ବୁଦ୍ଧ ଦ୍ୱୟଙ୍କଠାରୁ ପର୍ଣ୍ଣଶବରୀ ଉଦ୍‌ଭୁତ ଆଦିବାସୀ ସଭ୍ୟତାର ଚିହ୍ନ ରୂପେ ତାଙ୍କ ଧ୍ୟାନରେ ରହିଛି ପର୍ଣ୍ଣପିଚ୍ଛିକା ବସନାଂ, ପର୍ଣ୍ଣପିଚ୍ଛିକା ଧନୁର୍ଧାରିଣୀଂ, ସପତ୍ରମାଳା ବ୍ୟାଘ୍ରନଚର୍ମ ନବସନାଂ ପ୍ରଭୃତି । ଦିଗବସନା ଶବରୀଦେବୀ ହେଉଛନ୍ତି ନଗ୍ନଶବରୀ । ବରାହ ପୁରାଣର ୨୮.୩୪ରେ ସେ ମଧ୍ୟ କିରାତନୀ ନାମରେ ନାମିତ । ଦୁର୍ଗାପୂଜା ସମୟରେ ନବପତ୍ରିକା ପ୍ରଚଳନ ପର୍ଣ୍ଣଶବରୀର ଚିହ୍ନ ସ୍ୱରୂପ । ଓଡ଼ିଶାରେ ପତର ଶଉରୁଣୀ କିମ୍ବଦନ୍ତୀ ପର୍ଣ୍ଣଶବରୀର ଅନ୍ୟ ରୂପ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଯାଜପୁରର ବିରଜା ଖ୍ରୀଷ୍ଟପୂର୍ବରୁ ସେଠାରେ ଆରାଧିତା । ବ୍ୟାସ ତାଙ୍କ ମହାଭାରତର ବନପର୍ବରେ 'ବିରଜାକ୍ଷେତ୍ର ମାସାଦ୍ୟ' ବୋଲି ଉଲ୍ଲେଖ କରିଛନ୍ତି । କିନ୍ତୁ ବର୍ତ୍ତମାନ ଆରାଧିତା ହେଉଥିବା ବିରଜା ମୂର୍ତ୍ତି ଖ୍ରୀଷ୍ଟୀୟ ପ୍ରଥମ ଦ୍ୱିତୀୟ ଶତାବ୍ଦୀର ବୋଲି ମନେ ହୋଇଥାଏ । ମୁମରାର ଶିବ ମନ୍ଦିର ଗାତ୍ରରେ ଦୁର୍ଗାମୂର୍ତ୍ତି ଖୋଦିତ ହୋଇଥିଲା । ତାହା ବର୍ତ୍ତମାନ ଏହ୍ଲାହାବାଦ ସଂଗ୍ରହାଳୟରେ ସଂଗୃହୀତ । ଏହି ଦୁର୍ଗା ଚତୁର୍ଭୁଜା । ତାଙ୍କ ଦକ୍ଷ ଊର୍ଦ୍ଧ୍ୱକରରେ ଖଡ୍‌ଗ ଏବଂ ବାମ ଊର୍ଦ୍ଧ୍ୱକରରେ ଢାଲ ରହିଛି । ଅବଶିଷ୍ଟ ଦୁଇଭୁଜରେ ସଂପୂର୍ଣ୍ଣ ମହିଷ ରୂପୀ ବଧ କରୁଛନ୍ତି । ମାତ୍ର ବିରଜା ଦ୍ୱିଭୁଜା । ଦେବୀ ବାମହସ୍ତରେ ସଂପୂର୍ଣ୍ଣ ମହିଷ ରୂପୀ ମହିଷାସୁରର ଲାଙ୍ଗୁଳକୁ ଟାଣିଧରି ତା' ବକ୍ଷରେ ଶୂଳଭେଦ କରିଛନ୍ତି । ଏହିଭଳି ଏକ ଛୋଟ ପ୍ରସ୍ତର ମୂର୍ତ୍ତି ସମ୍ବଲପୁରର ବିଶ୍ୱବିଦ୍ୟାଳୟର ସଂଗ୍ରହାଳୟରେ ସଇଁତଳାରୁ ସଂଗ୍ରହ କରି ରଖାଯାଇଛି । ଠିକ୍ ଭୁମରାର ଶିବମନ୍ଦିର ଗାତ୍ରରେ ଥିବା ଦୁର୍ଗା ମୂର୍ତ୍ତି ଭଳି ଏକ ଦୁର୍ଗା ମଧ୍ୟ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ସଂଗୃହିତ । ଯାଜପୁର ପ୍ରଥମେ ବୌଦ୍ଧ କ୍ଷେତ୍ର ଥିଲା । ଏହାର ନିଦର୍ଶନ ରୂପେ ବହୁ ବୌଦ୍ଧମୂର୍ତ୍ତି ଦେଖିବାକୁ ମିଳେ । ପ୍ରଖ୍ୟାତ ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଚାମୁଣ୍ଡାଙ୍କୁ ବୌଦ୍ଧ ଦେବୀ ବୋଲି ନିର୍ଣ୍ଣିତ କରିଛନ୍ତି । ଯାଜପୁରର ବିଭିନ୍ନ ସ୍ଥାନରେ ଯେତେ ଚାମୁଣ୍ଡା ମୂର୍ତ୍ତି ଉପାସିତ, ଅନ୍ୟ କୌଣସି ତନ୍ତ୍ର କ୍ଷେତ୍ରରେ ଏତେ ଚାମୁଣ୍ଡା ଥିବା ଜଣାଯାଇ ନାହିଁ । ଚାମୁଣ୍ଡାଙ୍କ ବ୍ୟତୀତ ପରବର୍ତ୍ତୀ କାଳରେ ଗଠିତ ହୋଇ ଉପାସିତ ହେଉଥିବା କେତେକ ଦୁର୍ଗାମୂର୍ତ୍ତି ଦେଖିବାକୁ ମିଳେ । ଏହି ଦୁର୍ଗାଙ୍କ ମୂର୍ତ୍ତିରେ ଯେଉଁ ମହିଷାସୁରର ଚିତ୍ର ଖୋଦିତ ହୋଇଛି ଦେବୀ ତାର ମସ୍ତକ ଛିନ୍ନ କଲାପରେ ମହିଷା ଶରୀରରୁ ଏକ ମାନବ ରୂପୀ ଅସୁର ଦେଖାଯାଏ । ଏହିଭଳି ମୂର୍ତ୍ତି ଓଡ଼ିଶାର ବହୁ ଶକ୍ତି ପୀଠରେ କେଉଁଠି ପୀଠଦେବୀ ବା କେଉଁଠି ପାର୍ଶ୍ୱଦେବୀ ରୂପେ ଉପାସିତ ।

ସପ୍ତମ ଅଷ୍ଟମ ଶତାବ୍ଦୀରେ ରତ୍ନଗିରି ଯୋଗତନ୍ତ୍ରର ମହବିଦ୍ୟାଳୟ ରୂପେ ଖ୍ୟାତି ଅର୍ଜନ କରିଥିଲା । ରତ୍ନଗିରି ଓ ଆଖପାଖ ଗ୍ରାମରେ ବହୁତ ତନ୍ତ୍ରଦେବୀ ଥିବା ଦେଖାଯାଏ । ରତ୍ନଗିରି ଉପରେ ଗୋଟିଏ ମହାକାଳ ମୂର୍ତ୍ତି ଗ୍ରାମବାସୀଙ୍କ ଦ୍ୱାରା ପୂଜା ପାଉଛନ୍ତି । ମହାକାଳ ଦ୍ୱିହସ୍ତ ବିଶିଷ୍ଟ ଓ ସେ ତାଙ୍କ ବାମ ହସ୍ତରେ

ନର କରୋଟି ଏବଂ ଦକ୍ଷିଣ ହସ୍ତରେ କଟାରୀ ଧାରଣ କରିଛନ୍ତି । କୁରୁକୁଲାଦି ବହୁ ତନ୍ତ୍ର ଦେବତା ଭାରତ ସରକାରଙ୍କ ଦ୍ୱାରା ସେଠାରେ ସଂରକ୍ଷିତ । ରତ୍ନଗିରିର ସୁଖ୍ୟାତି ଖୁବ୍ ସମ୍ଭବତଃ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଥିଲା । ତେଣୁ ପଞ୍ଚଦଶ ଶତାବ୍ଦୀର କବି ଶାରଳା ଦାସ ତାଙ୍କ ରଚିତ ଚଣ୍ଡୀପୁରାଣ ଗ୍ରନ୍ଥରେ ଦେବୀଦୁର୍ଗା ରତ୍ନଗିରି ଉପରେ ଅବସ୍ଥାନ କଲେ ବୋଲି ଉଲ୍ଲେଖ କରିଛନ୍ତି ।

ହରିଦାସ ପୁର ରେଲ୍‌ୱେ ଷ୍ଟେସନ ନିକଟରେ ଚଣ୍ଡିଖୋଲ ଅବସ୍ଥିତ । ଏଠାରେ ଯେ ପୂର୍ବେ ଚଣ୍ଡୀ ପୂଜା ପାଉଥିଲେ, ତାହା ଚଣ୍ଡୀଖୋଲ ନାମରୁ ଜଣାପଡ଼େ । ବର୍ତ୍ତମାନ ସେଠାରେ ଭଗ୍ନମୂର୍ତ୍ତିର କେତେକ ଅଂଶ ଜଣେ ସନ୍ୟାସୀଙ୍କ ଦ୍ୱାରା ସଂଗୃହୀତ ହୋଇ ପୂଜା ପାଉଛନ୍ତି । ଏହି ଚଣ୍ଡୀଖୋଲ ନିକଟରେ ମହାବିନାୟକ ଶୈଳ ଅବସ୍ଥିତ । ମହାବିନାୟକ ଗଣେଶଙ୍କ ଆରାଧନା ନିମିତ୍ତ ବିଖ୍ୟାତ । ପଞ୍ଚଦେବତାଙ୍କ ଉପାସନା ନିମିତ୍ତ ମହାବିନାୟକ ଗଣେଶଙ୍କର, ପୁରୀ ବିଷ୍ଣୁଙ୍କର, ଭୁବନେଶ୍ୱର ଶିବଙ୍କର, ଯାଜପୁର ଶକ୍ତିଙ୍କ ଏବଂ କୋଣାର୍କ ସୂର୍ଯ୍ୟଙ୍କ ଉପାସନା ପାଇଁ ପ୍ରକୃତ କ୍ଷେତ୍ର ରୂପେ ବିଦିତ ।

କଟକ ଜିଲ୍ଲା ଚିଡ୍ରୋପ୍ଲା ନିକଟସ୍ଥ ଅସୁରେଶ୍ୱରରେ ଏକ ଚାମୁଣ୍ଡା ମୂର୍ତ୍ତି ହରଚଣ୍ଡୀ ନାମରେ ପୂଜିତା । ଏହି ଦେବୀ ଅଷ୍ଟଭୁଜା । ତାଙ୍କ ହସ୍ତରେ ନରକରୋଟିର ପାନପତ୍ର ଓ ନରମୁଣ୍ଡ ରହିଛି । ଏହି ଚାମୁଣ୍ଡ ଦେଖିବା ପାଇଁ ମୟୂରପୁଚ୍ଛର ଅଧିଷ୍ଠାତ୍ରୀ ଦେବୀ କୀଚକେଶ୍ୱରଙ୍କ ଭଳି । ବାଙ୍କୀର ଚର୍ଚ୍ଚିକା ଚାମୁଣ୍ଡା । ଭୁବନେଶ୍ୱର ବୈତାଳ ମନ୍ଦିରର ଅଧିଷ୍ଠାତ୍ରୀ ମଧ୍ୟ ଚାମୁଣ୍ଡା ।

ଓଡିଶା ଅଧିକାଂଶ ଶକ୍ତିପୀଠ ସପ୍ତମ ଅଷ୍ଟମ ଶତାବ୍ଦୀରେ ଗଠିତ । ସେହି ସମୟର ଶକ୍ତିପୀଠଗୁଡ଼ିକୁ ଲକ୍ଷ୍ୟ କଲେ ସ୍ୱତଃ ମନେ ହୋଇଥାଏ ଓଡିଶାରେ ତନ୍ତ୍ରର ସ୍ୱର୍ଣ୍ଣଯୁଗ କହିଲେ ସପ୍ତମ ଅଷ୍ଟମ ଶତାବ୍ଦୀରୁ ବୁଝାଏ । ଝଙ୍କଡର ଶାରଳା ଅଷ୍ଟମ ଶତାବ୍ଦୀର ମହିଷାମର୍ଦ୍ଦିନୀ ରୂପ । ସେହିଭଳି ବହୁ ଦୁର୍ଗା ଭୁବନେଶ୍ୱରରେ ଆରାଧିତା ଶାରଳା ସଂପୂର୍ଣ୍ଣ ମହିଷା ସ୍ୱରୁପ ମହିଷମର୍ଦ୍ଦିନୀ ନୁହନ୍ତି । ଶାରଳାଙ୍କ ମହିଷାସୁର ମହିଷମୁଣ୍ଡ ବିଶିଷ୍ଟ ମାନବ ଦେହୀ । ତେଣୁ ଶାରଳା ଦାସ ଚଣ୍ଡୀ ପୁରାଣରେ ଉଲ୍ଲେଖ କରିଛନ୍ତି–

ମଇଁଷିର ମୁଣ୍ଡଗୋଟା ଶରୀର ଦନୁଜ ।

ଓଡିଶାର ଦୁର୍ଗାମୂର୍ତ୍ତିମାନଙ୍କରେ ତିନି ପ୍ରକାର ମହିଷାସୁର ଦେଖିବାକୁ ମିଳେ । ୧– ସଂପୂର୍ଣ୍ଣ ମହିଷ ଭଳି ଯଥା ବିରଜାଙ୍କ ମୂର୍ତ୍ତିରେ ଯେଉଁ ପ୍ରକାର ମହିଷାସୁର ଚିତ୍ରିତ ହୋଇଛି, ସେହିଭଳି ମୂର୍ତ୍ତି କଳାହାଣ୍ଡିର ସଇଁତଲାରୁ ଅଣାଯାଇ ସମ୍ବଲପୁର ବିଶ୍ୱବିଦ୍ୟାଳୟ ସଂଗ୍ରହାଳୟରେ ରଖାଯାଇଛି । ଖୁବ ସମ୍ଭବତଃ ପ୍ରଥମେ ମହିଷାସୁରକୁ ଶଇଳ ସ୍ୱରୂପ ଭଳି କଳ୍ପନା କରାଯାଉଥିଲା । କିନ୍ତୁ ପରେ ମହଷିର ମୁଣ୍ଡଟି ମଇଁଷି ସ୍ୱରୂପ ଭଳି କଳ୍ପନା କରାଯାଇଥିଲା । କିନ୍ତୁ ପରେ ମହଷିର ମୁଣ୍ଡଟି ରଖାଯାଇ ଦେହଟିକୁ ମଣିଷ ଭଳି କରାଗଲା । ସାଧକମାନେ ଧାରଣା କରିଥିଲେ ଅଜ୍ଞାନ ପଶୁତ୍ୱରୁ ମାନବକୁ ଜ୍ଞାନମୟୀ ଦେବୀ ମୁକ୍ତ କରିଥିଲେ । ତେଣୁ କେତେକ ସ୍ଥାନରେ ମହିଷକୁ ବଧ କଲା ପରେ ମହିଷର ମୃତ୍ୟୁ ସଙ୍ଗେ ସଙ୍ଗେ ଏକ କ୍ଷୁଦ୍ର ମାନବ ମହିଷ ଉପରେ ଚିତ୍ରିତ ହୋଇଛି ଏବଂ ସେହି ମାନବର ଶିର ଉପରେ ଦେବୀଙ୍କର ହାତ ଆଶୀର୍ବାଦ ସୂଚକ ଭାବେ ଚିତ୍ରିତ ହୋଇଛି । ଏହାପରେ ମହିଷାସୁରର କେବଳ ମୁଣ୍ଡ ଛଡା ଦେହକୁ ମାନବ ଦେହୀ କରାଯାଉଛି । ଦେବୀ ପଶୁ ବୁଦ୍ଧିରୁ ମାନବକୁ ଉଦ୍ଧାର କରିବାର ଚିହ୍ନ ସରୂପ ମୁଣ୍ଡଟିକୁ ମହିଷର ମୁଣ୍ଡ ଅଙ୍କିତ କରାଯାଇଛି ବୋଲି ଧାରଣା କରାଯାଇପାରେ । ଏହି ତିନି ପ୍ରକାର ମହିଷାସୁର ମର୍ଦ୍ଦିନୀର ଦୁର୍ଗାମୂର୍ତ୍ତି ଓଡିଶାର ପୀଠଦେବୀ ଓ ପାର୍ଶ୍ୱଦେବୀ ରୂପେ ରହିଥିବା ଦେଖାଯାଏ ।

ଝଙ୍କଡର ଶାରଳା ଅଷ୍ଟାଭୁଜା ମହିଷାସୁର ମର୍ଦ୍ଦିନୀ ଦୁର୍ଗା । ସେ ତାଙ୍କ ଦକ୍ଷକର ଚତୁଷ୍ଟୟରେ ଖଡଗ୍, ଢାଲ, ଅକ୍ଷ, ଶୁକ, ତୋମର, ବାଣ ଧରିଥିଲା ବେଳେ ବାମଭୁଜ ଚତୁଷ୍ଟାୟରେ ଘଣ୍ଟି ଓ ମହିଷାସୁରର ମୁଖ ରହିଛି । ଠିକ୍ ଏହିଭଳି ଦେବୀ ଭୁବନେଶ୍ୱରର ଦ୍ୱାରାସିନୀ, ଦକ୍ଷିଣଚଣ୍ଡୀ, ବୈତାଳ ମନ୍ଦିର ଗାତ୍ରରେ ଥିବା ଦୁର୍ଗା । ବ୍ରହ୍ମଗିରି ନୂଆନଈ କୁଳସ୍ଥ ପଲଙ୍କ ଗ୍ରାମରେ ଯେଉଁ ବାଲି ହରଚଣ୍ଡୀ ପୂଜା ପାଉଛନ୍ତି ତାଙ୍କର ସ୍ୱରୂପ ମଧ୍ୟ ଏହିଭଳି । ଝଙ୍କଡର ବିଲ ଶାରଳା, ବାଣପୁରର ଭଗବତୀ, କୋଣାର୍କର ରାମଚଣ୍ଡୀ, ଥେରୁବାଳୀର ଦୁର୍ଗା, ଯାଜପୁରର ବହୁ ଦୁର୍ଗାଙ୍କର ମହିଷାସୁର କର୍ତ୍ତିତ ମହିଷ ମଧ୍ୟରୁ ଉଦ୍‌ଭବ ରାକ୍ଷାସ ଭଳି ।

ଓଡିଶାରେ ଚାମୁଣ୍ଡା ଓ ଦୁର୍ଗାଙ୍କ ବ୍ୟତୀତ ଅନ୍ୟ ସ୍ୱରୂପର ବହୁ ଦେବୀ ଉପାସିତ । ଐତିହାସିକମାନେ ନିରୂପଣ କରନ୍ତି କୁରୁକୁଲା ପରବର୍ତ୍ତୀ ପର୍ଯ୍ୟାୟରେ କାଳୀ ରୂପେ ଆରାଧିତା ହେଲେ । ରତ୍ନଗିରିରେ ଦୁଇଭୁଜରେ ତ୍ରିଶୂଳ ଡମ୍ବରୁ ଧାରଣ କରି ଶବ ଉପରେ ଦଣ୍ଡାୟମାନ । ଦେବୀଙ୍କୁ ଦେଖିଲେ ସ୍ୱତଃ କାଳୀଙ୍କ ସ୍ୱରୂପ ମନେ ପଡିଯାଏ । ତନ୍ତ୍ର ସାଧନା ଶବ ଶିବାକୁ ମୂଳ କରି ପ୍ରତିଷ୍ଠା ଲାଭ କରିଛି । ଚାମୁଣ୍ଡା ଯେଉଁଭଳି ଶବାସନା ଏବଂ ତାଙ୍କ କରସ୍ଥିତ ଛିନ୍ନଶିରରୁ ଶିବା ରକ୍ତ ପାନ କରୁଛି ସେହିଭଳି । ପୁରୀର ଶ୍ୟାମାକାଳୀ ଶବ ଉପରେ ଦଣ୍ଡାୟମାନ ନହୋଇ ଶିବଙ୍କ





ଉପରେ ଦଣ୍ଡାୟମାନ ହୋଇଛନ୍ତି । କଟକ ଜିଲ୍ଲାର ତାରପୁରଠାରେ ଗୋଟିଏ ବୌଦ୍ଧତାରା ବଡମ୍ବାର ମହାନଦୀ କୂଳରେ ପୂଜା ପାଉଛନ୍ତି। ମାତ୍ର କଳାହାଣ୍ଡି ଭବାନୀପାଟଣା ଅଧିଷ୍ଠାତ୍ରୀ ଦେବୀ ଚତୁର୍ଭୁଜା କାଳିକା ।

ଶ୍ରୀଜଗନ୍ନାଥ ମନ୍ଦିର ବେଢା ମଧ୍ୟରେ ଗଜଲକ୍ଷ୍ମୀଙ୍କ ମନ୍ଦିର ଅଛି । ପ୍ରଥମେ ଲକ୍ଷ୍ମୀଙ୍କ ଚିତ୍ର ବୌଦ୍ଧ ବିହାରମାନଙ୍କରେ ଖୋଦିତ ଦେଖାଯାଏ । ତତ୍‌ପରେ ମନ୍ଦିରମାନଙ୍କରେ ମଧ୍ୟ ଗଜଲକ୍ଷ୍ମୀଙ୍କ ଚିତ୍ର ଖୋଦିତ ହେଲା । ରତ୍ନଗିରି ବୌଦ୍ଧ ବିହାର ତୋରଣରେ ଲକ୍ଷ୍ମୀଙ୍କର ଏକ ଚିତ୍ର ଖୋଦିତ ହୋଇଛି । ଲକ୍ଷ୍ମୀ ପ୍ରାଗ୍‌ବୈଦିକ ଦେବତା ହେଲେ ମଧ୍ୟ ବୌଦ୍ଧ ଯୁଗରେ ତାଙ୍କୁ ଲୋକପ୍ରିୟ କରାଇବାର ଚେଷ୍ଟା କରାଯାଇଥିବା ଜଣାଯାଏ । ଦଶ ମହାବିଦ୍ୟାରେ ଗଜଲକ୍ଷ୍ମୀ ଶେଷ ମହାବିଦ୍ୟା ରୂପେ ବର୍ଣ୍ଣିତ ଭୁବନେଶ୍ୱର ଗୌରୀ, କଟକ ଚଣ୍ଡୀ, ବିମଳାଦି ଦେବୀଙ୍କ ସ୍ୱରୂପରେ ସାମାନ୍ୟ ପରିଲକ୍ଷିତ ହେଲେ ମଧ୍ୟ ସେମାନେ ଏକ ଭଳି ମନେ ହୁଅନ୍ତି ।

ଓଡିଶାରେ ଅଷ୍ଟମ ନବମ ଶତାବ୍ଦୀଠାରୁ ମାତୃକା ଓ କୁମାରୀ ପୂଜା ପ୍ରଚଳିତ ଥିଲା । ଓଡିଶାର ସପ୍ତମାତୃକା ପୀଠ ରୂପେ ପୁରୀ, ଯାଜପୁର, ବେଲଖଣ୍ଡି, ଟିଟିଲାଗଡ, ଖିଚିଂ, ଧର୍ମଶାଳା, କୁଣ୍ଡେଶ୍ୱର, ଭୁବନେଶ୍ୱର, ସେରଗଡ ଆଦି ପ୍ରଧାନ । ଏଠାରେ ସପ୍ତମାତୃକା ଭାବେ ବ୍ରହ୍ମୀ, ମାହେଶ୍ୱରୀ, ଇନ୍ଦ୍ରାଣୀ, ବୈଷ୍ଣବୀ, କୌମାରୀ, ବାରହା, ଚାମୁଣ୍ଡା ଅବସ୍ଥାନ କରିଛନ୍ତି । ସ୍ୱତନ୍ତ୍ର ଭାବେ ବାରହୀ ଅଷ୍ଟମ ଶତାବ୍ଦୀ ଠାରୁ ଚଉରା ପୀଠରେ ପୂଜା ପାଉଛନ୍ତି । ପ୍ରତ୍ୟେକ ବାରାହୀ ଦକ୍ଷିଣ କରରେ ମତ୍ସ୍ୟ ଏବଂ ନରକ କୁଟିର ପାନପତ୍ର ଦେଖିବାକୁ ମିଳେ । ଭୁବନେଶ୍ୱର ନିକଟସ୍ଥ ଉତ୍ତରା ଛକରେ ଓ ଝଙ୍କଡ ନିକଟସ୍ଥ କୋଷ୍ଟିମଲ୍ଲିକା ପୁର ଆଦିରେ କୁମାରୀ ମୂର୍ତ୍ତି ପୂଜା ପାଉଥିବା ଦେଖାଯାଏ । ବିଷହରଣ ନିମିତ୍ତ ଦେବୀ ମନସା ବଡ ପ୍ରସିଦ୍ଧା । ପୁରୀ ଜିଲ୍ଲାର ଗୋପରେ, କଟକ ଜିଲ୍ଲା ଝଙ୍କଡର ବିଲଶାରଳାଙ୍କ ମନ୍ଦିରରେ ଏବଂ ବାଲେଶ୍ୱର ଜିଲ୍ଲାର ବୈତରଣୀ କୂଳରେ ଆଖୁଆପଦାଠାରେ ମନସାଙ୍କ ମୂର୍ତ୍ତି ଆରାଧିତା । ମନସା ଅମୃତଭାଣ୍ଡ ଓ ପଦ୍ମ ଧାରଣ କରି ଉପବେଶନ କରିଥାନ୍ତି । ତାଙ୍କ ମୁଣ୍ଡ ଉପରେ ସର୍ପ ତା'ର ସପ୍ତଫଣା ଟେକି ରହିଥାଏ । ଜୟଦେବପୀଠ କେନ୍ଦୁଲିରେ ଏହିଭଳି ଏକ ମନସା ଆରାଧିତା ।

ଚିଲିକା କୂଳସ୍ଥ ଭୁଷଣ୍ଡପୁରଠାରେ ଦଶମହାବିଦ୍ୟାର ଦ୍ୱିତୀୟ ମହାବିଦ୍ୟା ତାରା ପୂଜା ପାଇଛନ୍ତି । ତାରାଙ୍କ ମୂର୍ତ୍ତିଟି ବହୁ ପୁରାତନ ନୁହନ୍ତି । ଦଶମହାବିଦ୍ୟାର ତାରାଙ୍କ ଧ୍ୟାନାନୁଯାୟୀ ଦେବୀ ତାରା ନିର୍ମିତା । ସେ ଚତୁର୍ଭୁଜା, ଖର୍ବା, ବ୍ୟାଘ୍ରାମ୍ବରା । ଏହିଭଳି ତାରା ମୂର୍ତ୍ତି ଓଡିଶାର ଅନ୍ୟ କୌଣସି ସ୍ଥାନରେ ଦେଖିବାକୁ ମିଳନ୍ତି ନାହିଁ । ପ୍ରଥମେ ବୌଦ୍ଧମାନେ ବୁଦ୍ଧଙ୍କ ମାତା ଓ ଶକ୍ତିଭାବେ ତାରାଙ୍କୁ ଆରାଧନା କଲେ । ଓଡିଶାର ବହୁ ସ୍ଥାନରେ ବୌଦ୍ଧ ତାରାଙ୍କ ମୂର୍ତ୍ତି ଉପାସିତା । ରତ୍ନଗିରି, ଉଦୟଗିରି, ଲଳିତଗିରି ବହୁ ତାରାଙ୍କ ମୂର୍ତ୍ତି ରହିଛି । ତାରା ଲଳିତାସନରେ ବସିଥାନ୍ତି ଏବଂ ତାଙ୍କର ଗୋଟିଏ ହସ୍ତରେ ପଦ୍ମ ଓ ଅନ୍ୟ ହସ୍ତରେ ବରମୁଦ୍ରା ଶୋଭା ପାଇଥାଏ । ପ୍ରାଗ୍‌ବୈଦିକ ସଂସ୍କୃତି ପରେ ପ୍ରଥମେ ବୌଦ୍ଧମାନେ ପଦ୍ମକୁ ଅତି ପବିତ୍ର ଭାବେ ଗ୍ରହଣ କଲେ । କାରଣ ସ୍ୱରୂପ ଅନୁଧ୍ୟାନ କଲେ ଜଣାଯାଏ ବୁଦ୍ଧଙ୍କ ଜନନୀ ମାୟାଦେବୀ ଏକଦା ସ୍ୱପ୍ନ ଦେଖିଲେ ଏକ ଶ୍ୱେତହସ୍ତୀ ତା' ଶୁଣ୍ଢରେ ଏକ ଶ୍ୱେତପଦ୍ମ ଧାରଣ କରି ତାଙ୍କ କୁକ୍ଷି ଭିତରକୁ ପଶି ଯାଉଛି । ଏହି ସ୍ୱପ୍ନର ଅର୍ଥ କରିବାକୁ ଯାଇ ପଣ୍ଡିତମାନେ କହିଥିଲେ ତାଙ୍କର ଗୋଟିଏ ପୁତ୍ର ସନ୍ତାନ ହେବ ଏବଂ ସେହି ପୁତ୍ର ସମଗ୍ର ବିଶ୍ୱକୁ ଆଲୋକିତ କରିବ । ତେଣୁ ପଦ୍ମ ଏବଂ ହସ୍ତୀ ବୌଦ୍ଧ ଧର୍ମର ବିଶେଷ ସଙ୍କେତ ରୂପେ ଗୃହୀତ ।

ଗଞ୍ଜାମ ଜିଲ୍ଲାର ଦେବୀଝର ନିକଟରେ ନାରାୟଣୀ ଅବସ୍ଥିତ । ନାରାୟଣୀ ଦଶଭୁଜା ମହିଷାମର୍ଦ୍ଦିନୀ ଦୁର୍ଗା । ପାହାଡ ଉପରେ ଦେବୀଙ୍କର ଏକ କ୍ଷୁଦ୍ର ମନ୍ଦିର ଅଛି ଏବଂ ସେହି ମନ୍ଦିରରେ ଦେବୀ ଖଲିକୋଟ ରାଜାଙ୍କ ଇଷ୍ଟଦେବୀ ରୂପେ ଆରାଧିତା । ସ୍ଥାନଟି ଦେଖିଲେ ସ୍ୱତଃ ଚଣ୍ଡୀଖୋଲ କଥା ମନେପଡେ । ସେହିଭଳି ଦୁର୍ଗା କୋରାପୁଟ ଜିଲ୍ଲାର ଜଗମୁଣ୍ଡାଠାରେ ଆରାଧିତା । ସୋନପୁରରେ ବହୁ ଦେବୀଙ୍କ ମନ୍ଦିର ରହିଛି । ଦେବୀମୂର୍ତ୍ତିଗୁଡିକ ଦେଖିଲେ ମନେ ହୁଏ ନବମ ଦଶମ ଶତାବ୍ଦୀଠାରୁ ସେଠାରେ ଶକ୍ତିପୀଠ ଗଢି ଉଠିଥିଲା । ମାତ୍ର ଇତିହାସ ଅନୁଧ୍ୟାନ କଲେ ଜଣାପଡେ ଅଷ୍ଟମ ଶତାବ୍ଦୀର ପ୍ରଥମ ଭାଗରୁ ସୋନପୁର ତନ୍ତ୍ରପୀଠ ରୂପେ ପ୍ରସିଦ୍ଧି ଲାଭ କରିଛି । ଏହି କେତେ ବର୍ଷ ହେଲା ରାମାୟଣ ଲଙ୍କା ଭାବେ ସୋନପୁରକୁ ଚିହ୍ନଟ କରାଯାଉଛି । ଐତିହାସିକମାନେ ବହୁ ଉପାଦାନ ସଂଗ୍ରହ କରି ତାକୁ ଲଙ୍କା ବୋଲି ପ୍ରତିପାଦିତ କରୁଛନ୍ତି । କିନ୍ତୁ ଏହା ସତ୍ୟ ଯେ ସିଦ୍ଧ ଇନ୍ଦ୍ରଭୁତିଙ୍କ ଭଗିନୀ ଲକ୍ଷ୍ମୀଙ୍କର ସୋନପୁରର ରାଣୀ ଥିଲେ । ଇନ୍ଦ୍ରଭୁତି ଓ ତାଙ୍କ ଗୁରୁ ଅନଙ୍ଗ ବଜ୍ର ଯେତେବେଳେ ବଜ୍ରଯାନର ଅଭ୍ୟୁଦୟ ଘଟାଇଲେ, ସେତେବେଳେ ସେହି ବଜ୍ରଯାନକୁ ଲକ୍ଷ୍ମୀଙ୍କର ସହଜ ଯାନରେ ପରିଣତ କଲେ ।

କେନ୍ଦୁଝରର ପୁରାତନ ବୌଦ୍ଧ ପୀଠ । ସେଠାରେ ପଦ୍ମପ୍ରଭଙ୍କର ଆବିର୍ଭାବ ଘଟିଥିଲା । ସେହି ସମୟରେ କେନ୍ଦୁଝରକୁ ଜାହେର କହୁଥିଲେ । ଜାହେର ପରେ ଝର ନାମରେ ନାମିତ ହେଲା ଓ ତା' ପୂର୍ବରେ କେନ୍ଦୁ ବସାଯାଇ କେନ୍ଦୁଝର କରାଗଲା । କେନ୍ଦୁଝରରେ ବହୁ ବୌଦ୍ଧ ମୂର୍ତ୍ତିର ସନ୍ଧାନ ମିଳିଛି । ତାରାଙ୍କର ଉପାସନା ଏଠାରେ ପ୍ରଚଳିତ ।

ବୌଦ୍ଧମାନଙ୍କ ଭଳି ଜୈନମାନଙ୍କର ମଧ ଶକ୍ତି ବିଶ୍ୱାସ ଥିବା ଜଣାଯାଏ । ଜୈନ ଚବିଶ ତୀର୍ଥଙ୍କର ଚବିଶ ଶାସନ ଦେବୀ ଖଣ୍ଡଗିରି ଗୁହାରେ ଖୋଦିତ ହୋଇଛନ୍ତି । କୋରାପୁଟର ଜୟପୁରଠାରେ ଏବଂ ବହୁ ସ୍ଥାନରେ ଜୈନ ଶାସନ ଦେବୀଙ୍କୁ ହିନ୍ଦୁମାନେ ନିଜସ୍ୱ କରି ନେଇ ପୂଜାର୍ଚ୍ଚନା କରିଥାନ୍ତି । ଏହି ଶାସନ ଦେବୀମାନେ ହେଉଛନ୍ତି– ଚକ୍ରେଶ୍ୱରୀ, ଅଜିତାବାଳା ବା ରୋହିଣୀ, ପ୍ରଜ୍ଞାପ୍ତି, ବ୍ରଜ ସୃଂକଳା, ପୁରୁଷଦତ୍ତା, ମନୋଭଗ, କାଳୀ, ଜ୍ୱାଳାମାଳିନୀ, ମହାକାଳୀ, ମାନବୀ, ଗୌରୀ, ଗାନ୍ଧାରୀ, ଭୈରୋତୀ, ଅନନ୍ତାମତୀ, ମାନସୀ, ମହାମାନସୀ, ବିଜୟା, ଅଜନ୍ତା, ଅପରାଜିତା, ବହୁରୂପିଣୀ, ଚାମୁଣ୍ଡି, କୁଷ୍ମାଣ୍ଡିନୀ, ପଦ୍ମବତୀ, ସିଦ୍ଧାୟିକା । ଓଡିଶାର ଶକ୍ତିପୀଠ ଓ ଶକ୍ତିମାନଙ୍କ ବିଷୟରେ ଲେଖିବାକୁ ଗଲେ ଏକ ବୃହଦ୍ ଗ୍ରନ୍ଥ ହେବ । ଓଡିଶାର ଦୁଇଟି ସ୍ଥାନରେ ଚଉଷଠି ଯୋଗିନୀଙ୍କ ମନ୍ଦିର ଦେଖିବାକୁ ମିଳେ । ବୌଦ୍ଧ ତାନ୍ତ୍ରିକମାନେ ଅଷ୍ଟଦଳପଦ୍ମର କଳ୍ପନା କରି ପ୍ରତ୍ୟେକ ଦଳ ବା ପାଖୁଡାରେ ଆଠ ଆଠଟି ଯୋଗିନୀ ଥିବା ଉଲ୍ଲେଖ କରିଛନ୍ତି । ଯୋଗିନୀ ମନ୍ଦିର ଶିବ ମନ୍ଦିର ବା ଯୋନୀ ମନ୍ଦିର ଭଳି ହୋଇଛି । ମନ୍ଦିର ମଧ୍ୟସ୍ଥ ଗୋଲାକାରରେ ଷାଠିଏଟି ଓ ମଧ୍ୟସଚାର ଚାରୋଟି ଯୋଗିନୀ ରହିଛନ୍ତି । ମାତ୍ର ହୀରାପୁର ଯୋଗିନୀ ପୀଠରୁ ଗୋଟିଏ ଯୋଗିନୀ ଅନ୍ତର୍ହିତ । ସେହିଭଳି ରାଣୀପୁର ଝରିଆଲରୁ ବହୁ ଯୋଗିନୀ ନଥିବା ଦେଖାଯାଏ ।

ଓଡିଶା ଏକ ବିରାଟ ଶକ୍ତିପୀଠ । ଓଡିଶାର ପ୍ରତ୍ୟେକ ଅଞ୍ଚଳରେ ଶକ୍ତି ବିଭିନ୍ନ ନାମରେ ଭିନ୍ନ ଭିନ୍ନ ରୂପରେ ଆରାଧିତା । ସମସ୍ତେ ଏକ ଏବଂ ଅଦ୍ୱିତୀୟା ହେଲେ ମଧ କାର୍ଯ୍ୟ ପାଇଁ ଭିନ୍ନ ରୂପ ନାମରେ ଅବସ୍ଥାନ କରିଛନ୍ତି ।

ନୟାଗଡ ଚିତ୍ରକାର ସାହି
ପୋ.ଅ.– ନୟାଗଡ ବଜାର–୨
ଜିଲା– ନୟାଗଡ

# ମାଆ

ଦିଲ୍ଲୀପ କୁମାର ବେହୁରା

ଜଗତ ଜନନୀ ମାଆଲୋ ଭକତେ
ହେଉଥିବୁ ସଦା ସାହା
ତୋ ବିନୁ ଜଗତେ କିଏ ଅବା ଏଠି
ଭରିବ ଜୀବନେ ରାହା ।

ତୁ ଅଟୁ ମଙ୍ଗଳା ବିମଳା ଶାରଳା
ବିରଜାଇ ଉଗ୍ରତାରା
ତାରାତାରିଣୀ ମା' ବାଟ ଭୂଆସୁଣୀ
ଚର୍ଚ୍ଚିକା ହିଙ୍ଗୁଳା ପରା
ରଖିଥିବୁ ଦୃଷ୍ଟି ନାଶୁଥିବୁ ଖଳ
ବଢାଇଣ ତୋର କାୟା ।



ଯୁଗେ ଯୁଗେ ମାଆ ପାପୀ ନାଶିବାକୁ
କେତେ ଯେ ରୂପ ତୁ ନେଉ
ମହିଷାମର୍ଦ୍ଦିନୀ ଦୁର୍ଗା ଚଣ୍ଡୀ କାଳୀ
ଚାମଣ୍ଡାଙ୍କ ସାଥେ ରହୁ
ଜଗତ ଭଗତ ଉଦ୍ଧାର ନିମନ୍ତେ
ରହିଥିବୁ ମା' ହୋଇ ଛାୟା ।

ଘର ନଂ. ୯/୧, ଏଫ୍ ଟାଇପ୍
ୟୁନିଟ୍–୯ ଫ୍ଲାଟ୍
ଭୁବନେଶ୍ୱର –୨୨





# ଉନ୍ନତିର ଆଉ ଏକ ମାଇଲଖୁଣ୍ଟ : ବିଜୁ ଏକ୍ସପ୍ରେସ୍‌ୱେ

ତାପସ କୁମାର ସାହା

ସାମାଜିକ ଓ ଅର୍ଥନୈତିକ ଉନ୍ନତି ନିମନ୍ତେ ଭିତ୍ତିଭୂମି ଗଠନ ସହିତ ଉନ୍ନତ ମାନର ଯୋଗାଯୋଗ ଓ ପରିବହନ ବ୍ୟବସ୍ଥା ଏକାନ୍ତ ଆବଶ୍ୟକ । ଯେଉଁ ରାଜ୍ୟ ବା ରାଷ୍ଟ୍ରର ରାସ୍ତାଘାଟ ଓ ଯୋଗାଯୋଗ ବ୍ୟବସ୍ଥା ଯେତେ ଉନ୍ନତ, ସେହି ରାଷ୍ଟ୍ର ସେତେ ବିକଶିତ ବୋଲି ବିବେଚନା କରାଯାଏ । ବେଗ ହିଁ ଉନ୍ନତିର ଲକ୍ଷଣ । ଗତିଶୀଳତା ନଥିଲେ ସମାଜର ଅଗ୍ରଗତି ଅସମ୍ଭବ । ସ୍ୱାଧୀନତା ପୂର୍ବରୁ ଏବଂ ସ୍ୱାଧୀନତା ପରବର୍ତ୍ତୀ ସମୟରେ କେତୋଟି ଜାତୀୟ ରାଜପଥ ଓ ରେଳପଥ ବ୍ୟତିରେକେ ଓଡ଼ିଶାରେ ଯୋଗାଯୋଗ ବ୍ୟବସ୍ଥା ସେତେ ଉନ୍ନତ ନଥିଲା । ଏପରିକି ଓଡ଼ିଶାର ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଓଡ଼ିଶା ମଧ୍ୟରେ ଉନ୍ନତ ସଂଯୋଗର ଅଭାବ ଥିଲା । ଗ୍ରାମାଞ୍ଚଳ ଓ ସହରାଞ୍ଚଳ ମଧ୍ୟରେ ଯୋଗାଯୋଗ ଓ ଗମନାଗମନର ଅଭାବରୁ ଗ୍ରାମାଞ୍ଚଳର ଲୋକମାନେ ସହରାଞ୍ଚଳରେ ମିଳୁଥିବା ସୁବିଧା ସୁଯୋଗ, ସ୍ୱାସ୍ଥ୍ୟସେବା ଓ ଉଚ୍ଚଶିକ୍ଷା ଆଦିରୁ ବଞ୍ଚିତ ହେଉଥିଲେ । ସମ୍ପ୍ରତି ଓଡ଼ିଶା ରାଜ୍ୟ ଦ୍ରୁତ ଉନ୍ନତି ପଥରେ ଅଗ୍ରସର ହେଉଥିବା ବେଳେ ଭିତ୍ତିଭୂମିର ବିକାଶ ଏବଂ ଉତ୍ତମ ଯୋଗାଯୋଗ ବ୍ୟବସ୍ଥା ଉପରେ ସରକାରଙ୍କ ଦ୍ୱାରା ଗୁରୁତ୍ୱାରୋପ କରାଯାଉଛି । ଭିତ୍ତିଭୂମିର ବିକାଶ ହେଲେ ଓଡ଼ିଶାର ସାମାଜିକ ଓ ଅର୍ଥନୀତିର ବିକାଶ ହୋଇପାରିବା ଲକ୍ଷ୍ୟ ନେଇ ଓଡ଼ିଶା ସରକାର ବିଭିନ୍ନ ପଦକ୍ଷେପ ଗ୍ରହଣ କରିଛନ୍ତି । ଏହି ପରିପ୍ରେକ୍ଷୀରେ କେନ୍ଦ୍ର ସରକାରଙ୍କ ଯୋଜନା ବ୍ୟତିରେକେ ରାଜ୍ୟ ସରକାରଙ୍କ ଦ୍ୱାରା ନିଜସ୍ୱ ପାଣ୍ଠିରୁ 'ବିଜୁ ସେତୁ ଯୋଜନା' 'ମୁଖ୍ୟମନ୍ତ୍ରୀଙ୍କ ସଡକ ଯୋଜନା' ଆଦି କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ଗ୍ରାମ୍ୟ ସଂଯୋଗୀକରଣ ଯୋଜନାରେ ଯେଉଁସବୁ ଗ୍ରାମଗୁଡିକ ଅନ୍ତର୍ଭୁକ୍ତ ହୋଇନାହିଁ, ସେହିସବୁ ଗ୍ରାମଗୁଡିକରେ ରାସ୍ତାର ବିକାଶ ଓ ନିର୍ମାଣ ଦିଗରେ ମୁଖ୍ୟମନ୍ତ୍ରୀଙ୍କ ସଡକ ଯୋଜନା କାର୍ଯ୍ୟକାରୀ କରାଯାଇ ଗ୍ରାମାଞ୍ଚଳରେ ଗମନାଗମନର ସୁବିଧା ଯୋଗାଇ ଦିଆଯାଉଛି ।

ଗୁଣାତ୍ମକ ରାସ୍ତା ସଂଯୋଗୀକରଣ ରାଜ୍ୟ ସରକାରଙ୍କ ଏକ ଯୁଗାନ୍ତକାରୀ ପଦକ୍ଷେପ । ସମ୍ପ୍ରତି ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ଦକ୍ଷିଣ ଓଡ଼ିଶା ଏବଂ ପଶ୍ଚିମ ଓଡ଼ିଶାର ଦ୍ରୁତ ଉନ୍ନତି ନିମନ୍ତେ ବିଜୁ ଏକ୍ସପ୍ରେସ ୱେ ଯୋଜନାର ଶୁଭାରମ୍ଭ ଏକ ମାଇଲ ଖୁଣ୍ଟ । ଏହା ଛତିଶଗଡର ଜଗଦଲପୁର ଏବଂ ରାଉରକେଲା ମଧ୍ୟରେ ଏକ ଅର୍ଥନୈତିକ କରିଡର ସଦୃଶ୍ୟ କାର୍ଯ୍ୟ କରିବ । ସୂଚନାଯୋଗ୍ୟ ଯେ, ସତୁରୀ ଦଶକର ପ୍ରାରମ୍ଭରେ ସ୍ୱର୍ଗତଃ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଦୈତାରୀ ପାରାଦୀପ ଏକ୍ସପ୍ରେସ ହାଇୱେ ନିର୍ମାଣ ଏକ ସମୟୋଚିତ ଏବଂ ବଳିଷ୍ଠ ପଦକ୍ଷେପଭାବେ ପ୍ରମାଣିତ ହୋଇଛି । ଦ୍ରୁତ ଅର୍ଥନୈତିକ ଉନ୍ନତି ଓ ପ୍ରଗତି ନିମନ୍ତେ ଉନ୍ନତ ମାନର ସଡକ ନିର୍ମାଣର ଆବଶ୍ୟକତା ରହିଛି, ଏକ୍ସପ୍ରେସ ହାଇୱେ ନିର୍ମାଣ ଏହାର ଏକ ଜ୍ୱଳନ୍ତ ଉଦାହରଣ । ଦୈତାରୀ ପାରାଦୀପ ତ୍ୱରିତ ରାଜପଥ ନିର୍ମାଣ ଦ୍ୱାରା ଅବିଭକ୍ତ କଟକ, ଢେଙ୍କାନାଳ, କେନ୍ଦୁଝର ଜିଲ୍ଲାର ମାଟିତଳେ ଲୁଚି ରହିଥିବା ପ୍ରଚୁର ଖଣିଜ ସମ୍ପଦ ଉତ୍ତୋଳନ ସମେତ ପାରାଦୀପ ବନ୍ଦର ବିକାଶ ସହିତ ଓ ରପ୍ତାନୀ ଦ୍ୱାରା ବିପୁଳ ପରିମାଣର ବୈଦେଶିକ ମୁଦ୍ରା ଅର୍ଜନ ହୋଇ ପାରୁଛି । ଏହି ରାଜପଥ ନିର୍ମାଣ ଦ୍ୱାରା ସେହି ଅଂଚଳର ଦ୍ରୁତ ଉନ୍ନତି ସମେତ ବିଭିନ୍ନ ଖଣିଜଭିତ୍ତିକ ଶିଳ୍ପ ଓ କଳକାରଖାନା ଏବଂ ବୃହତ ଇସ୍ପାତ ପ୍ରକଳ୍ପ ପ୍ରତିଷ୍ଠା ହେବା ସମ୍ଭବ ହୋଇ ପାରିଛି । ହଜାର ହଜାର ଲୋକଙ୍କର କର୍ମସଂସ୍ଥାନ ଯୋଗାଣ ସହିତ ସେହି ଅଞ୍ଚଳରେ ଗମନାଗମନର ସୁବିଧା ସମେତ କୃଷି ଉପରେ ନିର୍ଭର କରୁଥିବା ଲୋକମାନଙ୍କର କୃଷିଜାତ ଦ୍ରବ୍ୟ ଝୋଟ, ବିରି, ମୁଗ, ଚିନାବାଦାମ ଓ ଧାନ ଆଦି ବିକ୍ରି ନିମନ୍ତେ ଅଭୂତପୂର୍ବ ସୁଯୋଗ ଆଣି ଦେଇଛି ।

ସେହିପରି ୨୦୦୬–୦୭ ମସିହାରେ ବର୍ତ୍ତମାନର ରାଜ୍ୟ ସରକାରଙ୍କ ଦ୍ୱାରା ବିଜୟୱାଡା ରାଞ୍ଚି କରିଡର ରାସ୍ତା ନିର୍ମାଣ





ଯୋଜନା ମୟୂରଭଞ୍ଜ, କେନ୍ଦୁଝର, ଅନୁଗୋଳ, ଢେଙ୍କାନାଳ, ଗଞ୍ଜାମ, ଗଜପତି, ରାୟଗଡା ଓ କୋରାପୁଟ ଜିଲ୍ଲାର ଭୌଗଳିକ ସ୍ଥିତିର ବ୍ୟାପକ ପରିବର୍ତ୍ତନ ଆଣିବାରେ ସହାୟକ ହୋଇ ପାରିଛି । ନକ୍ସଲ ଅଧ୍ୟୁଷିତ ଅଞ୍ଚଳରେ ମାଓ ଦମନରେ ସହାୟକ ହେବ ଏବଂ ବନ୍ଦର ଓ ବୃହତ ଶିଳ୍ପାଞ୍ଚଳ ସହିତ ଏହି ରାସ୍ତା ସଂଯୋଗରେ ସହାୟକ ହୋଇ ଉତ୍ପାଦିତ କୃଷିଜାତ ଦ୍ରବ୍ୟ ଓ ଅନ୍ୟାନ୍ୟ ଦ୍ରବ୍ୟର ବିକ୍ରିବଟାରେ ପ୍ରମୁଖ ସହାୟକ ହୋଇ ପାରିଛି ।

ଏହି ପରିପ୍ରେକ୍ଷୀରେ ରାଜ୍ୟ ସରକାରଙ୍କ ଦ୍ୱାରା ଦକ୍ଷିଣ ଓଡ଼ିଶା ଏବଂ ପଶ୍ଚିମ ଓଡ଼ିଶାର ଦ୍ରୁତ ଉନ୍ନତି ନିମନ୍ତେ ବିଜୁ ଏକ୍ସପ୍ରେସ୍‌ୱେ ଯୋଜନାର ଶୁଭାରମ୍ଭ ଏକ ବୃହତ୍ ଓ ବଳିଷ୍ଠ ପଦକ୍ଷେପ । କୋରାପୁଟ ଜିଲ୍ଲାର ସୀମାରେ ଅବସ୍ଥିତ ଚାନ୍ଦିଲି ଗାଁଠାରୁ ସୁନ୍ଦରଗଡ ଜିଲ୍ଲାର ରାଉରକେଲା ପର୍ଯ୍ୟନ୍ତ କେବିକେ ଏବଂ ପଶ୍ଚିମ ଓଡ଼ିଶାର ୮ଟି ଜିଲ୍ଲାର ଦୁର୍ଗମ, ପଛୁଆ ତଥା ବାମପନ୍ଥୀ ଉଗ୍ରବାଦ ଉପଦ୍ରୁତ ଅଞ୍ଚଳ ଦେଇ ୩୨୦୦ କୋଟି ଟଙ୍କା ବ୍ୟୟରେ ନିର୍ମିତ ହେବ ଅତ୍ୟାଧୁନିକ ମାନର ୪ଲେନ୍ ବିଶିଷ୍ଟ ୬୫୬ କିମି ଦୈର୍ଘ୍ୟର ନୂତନ 'ବିଜୁ ଏକ୍ସପ୍ରେସ୍ ୱେ' ।

କୃଷକର ଉନ୍ନତି, ଗରିବଙ୍କ ପ୍ରଗତି, ଶିଳ୍ପ ସମୃଦ୍ଧି ଏବଂ ଜୀବନ ଧାରଣର ମାନ ବିକାଶ ଦିଗରେ ଏହି ଏକ୍ସପ୍ରେସୱେ ହେବ କେବିକେ ଏବଂ ପଶ୍ଚିମ ଓଡ଼ିଶାର ଜୀବନରେଖା । ୬୫୬ କିମି ବିଜୁ ଏକ୍ସପ୍ରେସ ୱେ ପଶ୍ଚିମ ଓଡ଼ିଶା ଓ କେବିକେ ଅଞ୍ଚଳର ୮ଟି ଜିଲ୍ଲାକୁ ସଂଯୋଗ କରିବ । ଏହା କେବିକେ ଅଞ୍ଚଳର ଚାରୋଟି ଜିଲ୍ଲା କୋରାପୁଟ, ନବରଙ୍ଗପୁର, କଳାହାଣ୍ଡି ଓ ନୂଆପଡା ସହିତ ପଶ୍ଚିମ ଓଡ଼ିଶାର ଚାରୋଟି ଜିଲ୍ଲା ବରଗଡ, ସମ୍ବଲପୁର, ଝାରସୁଗୁଡା ଏବଂ ସୁନ୍ଦରଗଡ ଜିଲ୍ଲାକୁ ସଂଯୋଗ କରିବ । ଏହା ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାର ଅନେକ ସୀମାନ୍ତବର୍ତ୍ତୀ ସହର ଯଥା ଚାନ୍ଦିଲି, ବୋରିଗୁମ୍ମା, ନବରଙ୍ଗପୁର, ପାପଡାହାଣ୍ଡି, ଅମ୍ପାପାଣି, ଧର୍ମଗଡ, ସିନାପାଲି, ଭେଲା, ନୂଆପଡା, ପାଇକମାଳ, ପଦ୍ମପୁର, ସୋହେଲା, ବରଗଡ, ସମ୍ବଲପୁର, ଝାରସୁଗୁଡା ସୁନ୍ଦରଗଡ ଓ ରାଉରକେଲାକୁ ସଂଯୁକ୍ତ କରିବା ସହ ରାଜ୍ୟର ପ୍ରମୁଖ ପଛୁଆ ଅଞ୍ଚଳ ଦେଇ ଯିବ ।

ବିଜୁ ଏକ୍ସପ୍ରେସୱେ ତ୍ୱରିତ ରାଜପଥକୁ ଦୁଇଟି ପର୍ଯ୍ୟାୟରେ ନିର୍ମାଣ କରାଯିବ । ପ୍ରକଳ୍ପ ନିମନ୍ତେ ମୋଟ ୩୨୦୦ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ୨୫୪ କିମି ରାସ୍ତାକୁ ଚାରିଲେନ୍ ବିଶିଷ୍ଟ ରାସ୍ତାରେ ପରିବର୍ତ୍ତନ କରାଯିବା ସହିତ ୪୦୨କିମି ରାସ୍ତାକୁ ଦୁଇ ଲେନ୍‌ର ଉନ୍ନତ ମାନର ରାସ୍ତା ନିର୍ମାଣ କରାଯିବ । ପ୍ରଥମ ପର୍ଯ୍ୟାୟ ନିର୍ମାଣ କାର୍ଯ୍ୟରେ ୧୪୭୧ କୋଟି ଟଙ୍କା ବ୍ୟୟ କରାଯିବା ବେଳେ ଦ୍ୱିତୀୟ ପର୍ଯ୍ୟାୟ ନିର୍ମାଣ ସମୟରେ ୧୭୨୯ କୋଟି ଟଙ୍କା ଖର୍ଚ୍ଚ କରାଯିବ । ୨୦୧୭ ମସିହା ମେ ମାସ ସୁଦ୍ଧା ପ୍ରଥମ ପର୍ଯ୍ୟାୟ ନିର୍ମାଣ ଶେଷ କରିବା ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ଏବଂ ଦ୍ୱିତୀୟ ପର୍ଯ୍ୟାୟ କାର୍ଯ୍ୟ ୨୦୧୯ ମସିହା ମେ ମାସ ସୁଦ୍ଧା ସମ୍ପନ୍ନ କରାଯିବ । ଛତିଶଗଡ ରାଜ୍ୟର ଜଗଦଳପୁରଠାରୁ ରାଉରକେଲା ପର୍ଯ୍ୟନ୍ତ ଏକ ଅର୍ଥନୈତିକ କରିଡର ସୃଷ୍ଟି କରିବା ଲକ୍ଷ୍ୟରେ ନିର୍ମିତ ହେବାକୁ ଥିବା ଏହି ତ୍ୱରିତ ରାଜପଥ ବିଜୁ ଏକ୍ସପ୍ରେସୱେ କେବିକେ ଜିଲ୍ଲା ସମେତ ପଶ୍ଚିମ ଓଡ଼ିଶାର ଜିଲ୍ଲାଗୁଡିକରେ ଉନ୍ନତ ମାନର ରାସ୍ତାର ଅଭାବକୁ ପୂରଣ କରିପାରିବା ସହିତ ସୀମାନ୍ତବର୍ତ୍ତୀ ଅଞ୍ଚଳରେ ଉତ୍ତମ ଯୋଗାଯୋଗ ଓ ସଂଯୋଗୀକରଣର ମାଧ୍ୟମ ହୋଇ ପାରିବ । ଏହାଦ୍ୱାରା ଜଗଦଳପୁରଠାରୁ ରାଉରକେଲା ଯିବା ପାଇଁ ୧୪ଘଣ୍ଟା ପରିବର୍ତ୍ତେ ମାତ୍ର ୬ଘଣ୍ଟା ସମୟ ଲାଗିବ ।

ଏହି ଅର୍ଥନୈତିକ କରିଡରରେ କୋରାପୁଟ ଜିଲ୍ଲାର ଚାନ୍ଦିଲି ଓ ବୋରିଗୁମ୍ମା, ନବରଙ୍ଗପୁର ଜିଲ୍ଲାର ନବରଙ୍ଗପୁର ଓ ପାପଡାହାଣ୍ଡି, କଳାହାଣ୍ଡି ଜିଲ୍ଲାର ଅମ୍ପାପାଣି ଓ ଧର୍ମଗଡ, ନୂଆପଡା ଜିଲ୍ଲାର ସିନାପାଲି ଓ ଭେଲ୍ଲା ଏବଂ ନୂଆପଡା, ବରଗଡ ଜିଲ୍ଲାର ପାଇକମାଳ, ପଦ୍ମପୁର ଓ ବରଗଡ, ସମ୍ବଲପୁର ଜିଲ୍ଲାର ସମ୍ବଲପୁର, ଝାରସୁଗୁଡା ଜିଲ୍ଲାର ଝାରସୁଗୁଡା ଏବଂ ସୁନ୍ଦରଗଡ ଜିଲ୍ଲାର ସୁନ୍ଦରଗଡ ଓ ରାଉରକେଲା ସହରକୁ ଅନ୍ତର୍ଭୁକ୍ତ କରାଯାଇଛି । ସର୍ବମୋଟ ୬୫୬ କିମି ରାସ୍ତା ମଧ୍ୟରୁ କୋରାପୁଟ ଜିଲ୍ଲାରେ ୫୧ କିମି, ନବରଙ୍ଗପୁର ଜିଲ୍ଲାରେ ୪୮କିମି, କଳାହାଣ୍ଡି ଜିଲ୍ଲାରେ ୧୦୦କିମି, ନୂଆପଡା ଜିଲ୍ଲାରେ ୧୨୦ କିମି, ବରଗଡ ଜିଲ୍ଲାରେ ୧୪୧ କିମି, ସମ୍ବଲପୁର ଜିଲ୍ଲାରେ ୫୪କିମି, ଝାରସୁଗୁଡା ଜିଲ୍ଲାରେ ୨୬ କିମି ଏବଂ ସୁନ୍ଦରଗଡ ଜିଲ୍ଲାରେ ୧୧୬ କିମି ରାସ୍ତା ନିର୍ମାଣ ଏବଂ ଉନ୍ନତିକରଣ କରାଯିବ ।

ଏଥିମଧ୍ୟରୁ ରାଉରକେଲାଠାରୁ ସମ୍ବଲପୁର ୧୬୦ କିମି ଦୀର୍ଘ ରାସ୍ତାର ୪ଟିକିଆ ରାସ୍ତାରେ ପରିଣତ କରିବା କାର୍ଯ୍ୟ ଇତିମଧ୍ୟରେ ରାଜ୍ୟ ସରକାରଙ୍କ ଦ୍ୱାରା ସରକାରୀ ଓ ବେସରକାରୀ ସହଭାଗିତାରେ ଆରମ୍ଭ କରାଯାଇଛି । ସମ୍ବଲପୁରଠାରୁ ସୋହେଲା ଭାୟା ବରଗଡ ୭୪କିମି ୪ଟିକିଆ ରାସ୍ତାର ନିର୍ମାଣ କାର୍ଯ୍ୟ ଭାରତ ସରକାରଙ୍କ ସଡକ ପରିବହନ ଓ ରାଜପଥ ମନ୍ତ୍ରାଳୟ ଦ୍ୱାରା ନିର୍ମାଣ କରାଯିବ । ଏଥିସହିତ ସୋହେଲାଠାରୁ ନୂଆପଡା ଭାୟା ପଦ୍ମପୁର ୧୧୯ କିମି ଦୈର୍ଘ୍ୟ ଦୁଇଟିକିଆ ରାସ୍ତା ରାଜ୍ୟ ସରକାରଙ୍କ





ରାଜ୍ୟ ରାଜପଥ ଉନ୍ନତିକରଣ କାର୍ଯ୍ୟକ୍ରମ ମାଧ୍ୟମରେ କରାଯିବ । ଏହି ରାସ୍ତାର ଚାରିଟିକିଆ ନିର୍ମାଣ କାର୍ଯ୍ୟ ଦ୍ୱିତୀୟ ପର୍ଯ୍ୟାୟରେ ଜମି ଅଧିଗ୍ରହଣ ପରେ କରାଯିବାର ଯୋଜନା ରହିଛି ।

ନୂଆପଡାଠାରୁ ଭେଲ୍ଲା ୨୫କିମି ୨ଟିକିଆ ରାସ୍ତା କେନ୍ଦ୍ର ସରକାରଙ୍କ ଦ୍ୱାରା ନିର୍ମାଣ କରାଯିବ । ୩୬କିମି ଦୈର୍ଘ୍ୟ ଏହି ରାସ୍ତାର ୧୧କିମି ରାସ୍ତା ଇତିମଧ୍ୟରେ ଦୁଇଟିକିଆ କରାଯାଇ ସାରିଛି । ସେହିପରି ଭେଲ୍ଲାଠାରୁ ଅମ୍ବାପାଣି ଭାୟା ଧର୍ମଗଡ ଏବଂ ସିନାପାଲି ୧୩୯ କିମି ୨ଟିକିଆ ରାସ୍ତା ରାଜ୍ୟ ସରକାରଙ୍କ ଦ୍ୱାରା ନିର୍ମାଣ କରାଯିବ । ଏହାଛଡା ଅମ୍ବାପାଣିଠାରୁ ଚାନ୍ଦିଲି ଭାୟା ବୋରିଗୁମ୍ମା ୪୨କିମି ରାସ୍ତା ଭାରତ ସରକାରଙ୍କ ଦ୍ୱାରା ନିର୍ମାଣ କରାଯିବ । ୧୦୮ କିମି ଦୈର୍ଘ୍ୟ ବିଶିଷ୍ଟ ଏହି ରାସ୍ତାର ୬୬କିମି ଦୁଇଟିକିଆ ନିର୍ମାଣ କାର୍ଯ୍ୟ ଇତିମଧ୍ୟରେ ଶେଷ କରାଯାଇଛି । ସୂଚନାଯୋଗ୍ୟ ଯେ ଉପରୋକ୍ତ ସମସ୍ତ ଦୁଇଟିକିଆ ରାସ୍ତାକୁ ୪ଲେନ୍ ବିଶିଷ୍ଟ ରାସ୍ତାରେ ପରିଣତ କରିବା କାର୍ଯ୍ୟ ଦ୍ୱିତୀୟ ପର୍ଯ୍ୟାୟରେ ଆବଶ୍ୟକୀୟ ଜମି ଅଧିଗ୍ରହଣ ପରେ କରାଯିବ ବୋଲି ଲକ୍ଷ୍ୟ ରଖାଯାଇଛି । ଏହି ମର୍ମରେ ପ୍ରଥମ ପର୍ଯ୍ୟାୟରେ ୨୫୪ କିମି ଚାରିଟିକିଆ ରାସ୍ତା ଏବଂ ୪୦୨ କିମି ଦୁଇଟିକିଆ ରାସ୍ତା ନିର୍ମାଣ କରାଯିବ । ଏଥିରେ ସମ୍ବଲପୁରଠାରୁ ରାଉରକେଲା ପର୍ଯ୍ୟନ୍ତ ଚାରିଲେନ୍ ରାସ୍ତା ନିର୍ମାଣ ନିମନ୍ତେ ୨୫୬ କୋଟି ଟଙ୍କା ଖର୍ଚ୍ଚ କରାଯିବା ବେଳେ ୨ଟିକିଆ ୨୫୮ କିମି ରାସ୍ତା ନିମନ୍ତେ ୮୩୮ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଛି । ଏଥିସହିତ ୨୫୮ କିମି ରାସ୍ତାକୁ ୪ଟିକିଆ ରାସ୍ତାରେ ପରିବର୍ତ୍ତନ ପାଇଁ ଜମି ଅଧିଗ୍ରହଣ ନିମନ୍ତେ ୩୭୭ କୋଟି ଟଙ୍କା ବ୍ୟୟ କରାଯିବ । ଏହିପରି ପ୍ରଥମ ପର୍ଯ୍ୟାୟ କାର୍ଯ୍ୟ ନିମନ୍ତେ ମୋଟ ୧୪୭୧ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଥିବା ବେଳେ ଦ୍ୱିତୀୟ ପର୍ଯ୍ୟାୟରେ ୨୫୮ କିମି ୪ଟିକିଆ ରାସ୍ତା ନିର୍ମାଣ ନିମନ୍ତେ ୧୭୨୯ କୋଟି ଟଙ୍କା ବ୍ୟୟ କରାଯିବ ।

ବିଜୁ ଏକ୍ସପ୍ରେସ ୱେ ଯେପରି ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ଶେଷ କରାଯାଇପାରିବ, ସେଥି ନିମନ୍ତେ ମାନ୍ୟବର ମୁଖ୍ୟମନ୍ତ୍ରୀ ଗୁରୁତ୍ୱାରୋପ କରିଛନ୍ତି । ପ୍ରଥମ ପର୍ଯ୍ୟାୟରେ ସମ୍ବଲପୁରଠାରୁ ରାଉରକେଲା ପର୍ଯ୍ୟନ୍ତ ୪ଟିକିଆ ରାସ୍ତା ନିର୍ମାଣ ୨୦୧୭ ମସିହା ମେ ମାସ ସୁଦ୍ଧା ଶେଷ କରାଯିବା ପାଇଁ ସମୟସୀମା ଧାର୍ଯ୍ୟ କରାଯାଇଛି । ସେହିପରି ୨ଟିକିଆ ୨୫୮ କିମି ଦୈର୍ଘ୍ୟ ରାସ୍ତାର ନିର୍ମାଣ ଏବଂ ଏହି ରାସ୍ତାକୁ ୪ଟିକିଆ ରାସ୍ତାରେ ପରିଣତ କରିବା ନିମନ୍ତେ ଆବଶ୍ୟକ ଜମି ଅଧିଗ୍ରହଣ କାର୍ଯ୍ୟ ୨୦୧୭ ମସିହା ମେ ମାସରେ ଶେଷ କରାଯିବ । ଏହିପରି ବିଜୁ ଏକ୍ସପ୍ରେସ୍ ୱେର ପ୍ରଥମ ପର୍ଯ୍ୟାୟ କାର୍ଯ୍ୟ ୨୦୧୭ ମେ ସୁଦ୍ଧା ଶେଷ କରାଯିବ ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ୨୫୮ କିମି ଚାରିଟିକିଆ ରାସ୍ତାର ନିର୍ମାଣ କାର୍ଯ୍ୟ ୨୦୧୯ ମସିହା ମେ ମାସ ସୁଦ୍ଧା ସମ୍ପୂର୍ଣ୍ଣ କରିବା ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

ବିଜୁ ଏକ୍ସପ୍ରେସୱେର ନିର୍ମାଣ ଶେଷ ହେଲେ କେବିକେ ଜିଲ୍ଲା ସମେତ ପଶ୍ଚିମ ଓଡ଼ିଶାର ବ୍ୟାପକ ଅଞ୍ଚଳ ପ୍ରତ୍ୟକ୍ଷ ଭାବରେ ଉପକୃତ ହେବା ସହିତ ସମଗ୍ର ଅଞ୍ଚଳର ସାମାଜିକ ଓ ଅର୍ଥନୈତିକ ଉନ୍ନତି ସମ୍ଭବ ହୋଇ ପାରିବ । ଓଡ଼ିଶା ଏକ କୃଷି ପ୍ରଧାନ ରାଜ୍ୟ ଏବଂ ଉପରୋକ୍ତ କେବିକେ ଏବଂ ପଶ୍ଚିମାଞ୍ଚଳର ୮୦ ପ୍ରତିଶତରୁ ଅଧିକ ଲୋକ ଗ୍ରାମାଞ୍ଚଳରେ ବାସ କରିବା ସହିତ କୃଷିକୁ ମୁଖ୍ୟ ଜୀବିକା ଭାବେ ଗ୍ରହଣ କରିଥିବାରୁ ଉନ୍ନତ ମାନର ସଡକ ପରିବହନ ବ୍ୟବସ୍ଥା ଯୋଗୁଁ କୃଷିଜାତ ଦ୍ରବ୍ୟ ଅତି ସହଜରେ ସହରରେ ବିକ୍ରି କରିପାରିବେ । ଏହାଦ୍ୱାରା କୃଷକମାନେ ସେମାନଙ୍କ ଉତ୍ପାଦିତ ଦ୍ରବ୍ୟର ଉଚିତ୍ ମୂଲ୍ୟ ପାଇବା ସହିତ ଲାଭାନ୍ୱିତ ହୋଇପାରିବେ । ସୂଚନାଯୋଗ୍ୟ ଯେ ରାଜ୍ୟ ସରକାରଙ୍କ ଦ୍ୱାରା କେବିକେ ଜିଲ୍ଲାରେ ଜଳସେଚନ ଓ କୃଷିର ଉନ୍ନତି ନିମନ୍ତେ ବିଶେଷ ଧ୍ୟାନ ଦିଆଯାଇ ଥିବାରୁ ତ୍ୱରିତ ରାଜପଥ ନିର୍ମାଣ ଦ୍ୱାରା ଏହି ଅଞ୍ଚଳର କୃଷି ଓ ଅର୍ଥନୈତିକ ବିକାଶଧାରା ତ୍ୱରାନ୍ୱିତ ହୋଇ ପାରିବ ।

ଏତଦ୍‌ବ୍ୟତୀତ ଏହି ଅଞ୍ଚଳରେ କୃଷି ସହିତ ଶିଳ୍ପର ବିକାଶ ନିମନ୍ତେ ବ୍ୟାପକ ସୁବିଧା ସୁଯୋଗ ଥିବାବେଳେ ରାଉରକେଲା, ଝାରସୁଗୁଡା ଆଦି ଉନ୍ନତ ଶିଳ୍ପାଞ୍ଚଳରେ ଅଧିକରୁ ଅଧିକ ଶିଳ୍ପ ଓ କଳକାରଖାନା ଗଢି ଉଠିବାର ସମ୍ଭାବନା ସୃଷ୍ଟି ହୋଇଛି । ଜଗଦଲପୁର–ରାଉରକେଲା ମଧ୍ୟରେ ଏହି ଅର୍ଥନୈତିକ କରିଡର ପଡୋଶୀ ରାଜ୍ୟ ମଧ୍ୟରେ ବାଣିଜ୍ୟ କାରବାର ବୃଦ୍ଧି କରିବା ସହିତ ଏହି ଅଞ୍ଚଳର ଅଧିବାସୀମାନଙ୍କ ନିମନ୍ତେ ଉନ୍ନତ ମାନର ଶିକ୍ଷା ଓ ସ୍ୱାସ୍ଥ୍ୟସେବା ହାତ ପାଆନ୍ତାରେ ମିଳିପାରିବ ବୋଲି ଆଶା କରାଯାଏ । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ଲୋକମାନେ ଅତି ସହଜରେ ଓ ସୁବିଧାରେ ଓଡିଶାର ଯେକୌଣସି ସ୍ଥାନକୁ ଗମନ କରିବାର ସୁବିଧା ପାଇ ପାରିବେ ଓ ଆଞ୍ଚଳିକ ତାରତମ୍ୟ ଦୂର କରିବାରେ ଏହା ସହାୟକ ହୋଇ ପାରିବ । ଏହା ଦକ୍ଷିଣ ଓ ପଶ୍ଚିମ ଓଡ଼ିଶାକୁ ଉପକୂଳବର୍ତ୍ତୀ ଓଡ଼ିଶା ସହିତ ଯୋଗାଯୋଗ ବ୍ୟବସ୍ଥାରେ ଏକ ବୈପ୍ଲବିକ ପରିବର୍ତ୍ତନ ଆଣିଦେବ । ଉତ୍ତମ ମାନର ସଡକ ଓ ରେଳପଥର ଅଭାବ ଯୋଗୁଁ ପ୍ରଚୁର ଜଙ୍ଗଲ ଓ ଖଣିଜ ସମ୍ପଦର ସୁବିନିଯୋଗ ନହୋଇ ପଡି ରହିଛି । ବିଜୁ




ଏକ୍ସପ୍ରେସ୍ ୱେ ଯୋଜନା କାର୍ଯ୍ୟକାରୀ ହେଲେ ଏ ଅଞ୍ଚଳରେ ଖଣିଜ ସମ୍ପଦ ଓ ଜଙ୍ଗଲ ସମ୍ପଦ ବିକାଶ ସହିତ ଆଭ୍ୟନ୍ତରୀଣ ଓଡ଼ିଶାର ଯୋଗାଯୋଗ ଓ ଶିଳ୍ପ ବିକାଶ ତ୍ୱରାନ୍ୱିତ ହୋଇ ପାରିବ । ଦକ୍ଷିଣ ଓ ପଶ୍ଚିମ ଓଡ଼ିଶାର ଦୁର୍ଗମ ଓ ପଛୁଆ ଅଞ୍ଚଳ ତଥା ବାମପନ୍ଥୀ ଉଗ୍ରବାଦ ପ୍ରଭାବିତ ଅଞ୍ଚଳ ବିଜୁ ଏକ୍ସପ୍ରେସୱେ ଦ୍ୱାରା ସଂଯୁକ୍ତ ହେଲେ ଉଗ୍ରବାଦର ପ୍ରଭାବକୁ ସହଜରେ ପ୍ରତିହତ କରାଯାଇ ପାରିବ ଓ ଦ୍ରୁତ ଅର୍ଥନୈତିକ ଓ ସାମାଜିକ ବିକାଶ ସାଧିତ ହୋଇ ପାରିବ । ଗମନାଗମନର ସୁବିଧା ଓ ଗ୍ରାମାଞ୍ଚଳ ସହିତ ସହରାଞ୍ଚଳର ସଂଯୋଗୀକରଣ ଦ୍ୱାରା ମାନବ ସମ୍ବଳର ସୁବିନିଯୋଗ ଏବଂ ଉତ୍ପାଦିକା ଶକ୍ତି ଆଶାତୀତ ଭାବେ ବୃଦ୍ଧି ପାଇବ ବୋଲି ଆଶା କରାଯାଏ । ରୋଜଗାର ଅଭାବରୁ ଅନ୍ୟ ରାଜ୍ୟକୁ ଦାଦନ ଖଟିବା ଯିବା ବଦଳରେ ବେକାର ଯୁବକଯୁବତୀମାନେ ନିଜ ଜିଲ୍ଲା ତଥା ରାଜ୍ୟରେ କର୍ମସଂସ୍ଥାନର ଯୋଗାଡ କରି ପାରିବେ । ୨୦୧୯ ମସିହା ସୁଦ୍ଧା ବିଜୁ ଏକ୍ସପ୍ରେସ୍ ୱେର ନିର୍ମାଣ କାର୍ଯ୍ୟ ଶେଷ ହେଲେ ଏହି ଅଞ୍ଚଳରେ ଅର୍ଥନୀତି ଓ ସାମାଜିକ ପୁନରୁତ୍ଥାନ ହୋଇ ପାରିବ ଏବଂ ଅନଗ୍ରସର ଅଞ୍ଚଳରେ ବ୍ୟାପକ ପରିବର୍ତ୍ତନ ଆସିବ । ପଶ୍ଚିମ ଓ ଦକ୍ଷିଣ ଓଡ଼ିଶା ମଧ୍ୟରେ ଯୋଗାଯୋଗ ସହଜ କରିବା ଲକ୍ଷ୍ୟରେ ଆରମ୍ଭ କରାଯାଇଥିବା ବିଜୁ ଏକ୍ସପ୍ରେସୱେ ଜନସାଧାରଣଙ୍କ ଜୀବନଯାପନର ମାନକୁ ସହଜ ଓ ସୁନ୍ଦର କରିପାରିବ ଏବଂ ବିଜୁ ତ୍ୱରିତ ରାଜପଥ ଦେଇ ଓଡ଼ିଶାର ବିକାଶର ରଥ ଆଗେଇ ଯିବ ବୋଲି ଆଶା ।

ସୂଚନା ଅଧିକାରୀ
ସୂଚନା ଓ ଲୋକସମ୍ପର୍କ ବିଭାଗ, ଭୁବନେଶ୍ୱର

# ବରଦାଂ ଭକ୍ତ ବତ୍ସଳାଂ

**ପରୀକ୍ଷିତ ମିଶ୍ର**

ଆଶ୍ରା ମାଗେ ମନ ହୃଦୟରେ ଧ୍ୟାନ
ଏକାଗ୍ରତା ମାତା ଶ୍ରୀଚରଣେ
ଜୀବନ ଅବଧି ସୁଦୀର୍ଘ ବା ସ୍ୱଳ୍ପ
ତୋର ବିନା ଅବା କିଏ ଜାଣେ ?
ଜଗତ ଜନନୀ ଶକ୍ତି ସ୍ୱରୂପିଣୀ
ଦୁର୍ଗତି ନାଶିନୀ ଶୈଳପୁତ୍ରୀ
କାଳୀ ମହାଗୌରୀ ଉମା ମହାମାୟା
ଧୂମାବତୀ ମାତା କାଳରାତ୍ରୀ ।
ବୈଷ୍ଣବୀ ବାସବୀ ଛାୟା ପୁଷ୍ଟି ତୁଷ୍ଟି
କୌମାରୀ ଭବାନୀ ଦୟାମୟୀ
ମାଳତୀ କୌବେରୀ ତ୍ରୈଲୋକ୍ୟ ମୋହିନୀ
ଦୟା କ୍ଷମା ବୁଦ୍ଧି ବିଦ୍ୟାଦାୟୀ ।
ସୃଷ୍ଟି ସ୍ଥିତି ଲୟ ତୋ ଆଙ୍ଗୁଠି ଖେଳ
ଦୁଃଖ ଶୋକ ପୀଡ଼ା ତୋ ରଚନା

ସୁଖ ତ ଅଳିକ ଆକାଶ କଇଁଆ
ଯେହ୍ନେ ଦୁର୍ଲଭ ଦିବ୍ୟ ଚେତନା ।
ଦୁର୍ଗତି ନାଶିନୀ ଦୈତ୍ୟ ବିନାଶିନୀ
ଜ୍ୟୋତିର୍ମୂର୍ତ୍ତି ମହୋତ୍ପଳା ଜୟ
ସୁମନା ଧୀଶ୍ୱରୀ ଶୋଭନା ଶତାକ୍ଷୀ
ନବଦୁର୍ଗା ବନଦୁର୍ଗା ଜୟ ।
ଦେବତା ମାନବ ତୁମ୍ଭ ପାଦପୂଜା
କରଇ ପ୍ରାର୍ଥୀ ତବ ଆଶିଷ
ମାତା ଲୀଳାବତୀ ଦେବୀ ବିଶ୍ୱେଶ୍ୱରୀ
ନିରୁତା ଭକ୍ତ ଚରଣ ଦାସ ।
ଅଶାନ୍ତ ଧରିତ୍ରୀ ଅସହାୟ ନର
ରୋଗ କ୍ଷୁଧା ଭୟ ନିରନ୍ତର ।
ପ୍ରାର୍ଥନା ଏତିକି ରଖିଥିବୁ କୃପା
ତ୍ୟାଗମୟୀ କରୁଣା ସାଗର ।

ରାଜେନ୍ଦ୍ରନଗର, କଟକ-୧୦




ଚଳନ୍ତିକା

# କାଶ୍ମୀର, ଭାରତ–ପାକିସ୍ଥାନ ବିବାଦକୁ ମେଣ୍ଟାଇ ପାରିବ ନାହିଁ

**ମହାମେଘବାହନ ଐର ଖାରବେଳ ସ୍ୱାଇଁ**

ଅଗଷ୍ଟ ୨୦୧୪ରେ କାଶ୍ମୀରର ବାସ୍ତବ ନିୟନ୍ତ୍ରଣ ରେଖା (ଏଲ୍.ଓ.ସି) ସେପଟରୁ ପାକିସ୍ଥାନୀ ସୈନ୍ୟମାନଙ୍କର ଗୁଳିଗୋଳା ବର୍ଷଣ ତଥା ଏପଟରୁ ଭାରତୀୟ ସୈନ୍ୟମାନଙ୍କର ପ୍ରତିବାଦ, ଏକ ବିସ୍ଫୋରକ ପରିସ୍ଥିତିର ସୃଷ୍ଟି କରିଥିଲା । ନିୟନ୍ତ୍ରଣ ରେଖାର ପାଖରେ ଥିବା ଗ୍ରାମବାସୀମାନେ ସେମାନଙ୍କ ପରିବାର ତଥା ଗୃହପାଳିତ ପଶୁ ଓ ଯଥାସମ୍ଭବ ଜିନିଷପତ୍ର ନେଇ ସୁରକ୍ଷିତ ସ୍ଥାନମାନଙ୍କୁ ପଳାୟନ କରିଥିଲେ । ତଥାପି ପାକିସ୍ଥାନୀ ସୈନ୍ୟମାନଙ୍କର ପ୍ରଚଣ୍ଡ ଗୁଳି ମାଡ଼ରେ ଅନେକ ଗୃହ ଓ ସମ୍ପତ୍ତି ନଷ୍ଟ ହୋଇଥିଲା । ସେହିପରି ଭାରତୀୟ ସୈନ୍ୟମାନଙ୍କର ଗୁଳି ମାଡ଼ରେ ପାକିସ୍ଥାନୀ ଗାଁମାନଙ୍କର ପ୍ରଭୂତ କ୍ଷତି ହୋଇଥିବ ନିଶ୍ଚୟ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଏ ଧରଣର ଲଢ଼େଇ ଭାରତ ଆରମ୍ଭ କରି ପାରିବ ନାହିଁ । କାରଣ ପ୍ରଥମ କଥା ହେଲା, ଏହା ଏକ ଗଣତନ୍ତ୍ର ରାଷ୍ଟ୍ର । ପାକିସ୍ଥାନ ପରି ଏ ଦେଶର ଶାସନ ନୀତି ଉପରେ ସେନାବାହିନୀର କୌଣସି ପ୍ରଭାବ ନାହିଁ ବରଂ ନିର୍ବାଚିତ ସରକାରର ନିର୍ଦ୍ଦେଶରେ ସେନାବାହିନୀ ପରିଚାଳିତ । ଏ ଦେଶରେ ଏକ ସଂସଦ ଥିବାରୁ ଓ ସେଠାରେ ବିରୋଧୀ ଦଳମାନେ ସରକାରଙ୍କଠାରୁ ଯୁଦ୍ଧର କାରଣ ସମ୍ପର୍କରେ ଜାଣିବାକୁ ଚାହିବେ ହିଁ ଚାହିବେ । ଯଦି ସେମାନଙ୍କର ସନ୍ଦେହ ହୁଏ ଯେ, ସରକାର ବିନା କାରଣରେ ଦେଶ ଉପରେ ଯୁଦ୍ଧ ଲଦି ଦେଉଛନ୍ତି, ତେବେ ସେମାନେ ନିଜ ଦେଶର ସରକାରଙ୍କୁ ହିଁ ବିରୋଧ କରିବେ । ଏଣୁ ଏଠାରେ କୌଣସି ସରକାର ତାଙ୍କ ନିଜର ଜିଦ୍ ପାଇଁ ଦେଶ ଉପରେ ଯୁଦ୍ଧ ଲଦି ଦେଇ ପାରିବେ ନାହିଁ । କୌଣସି ଗଣତନ୍ତ୍ରରେ ଏପରି ହୁଏ ନାହିଁ । ତେଣୁ ବିଶ୍ୱ ଇତିହାସରେ ଦୁଇଟି ଗଣତାନ୍ତ୍ରିକ ରାଷ୍ଟ୍ର ମଧ୍ୟରେ ଯୁଦ୍ଧ ହେବାର ଦୃଷ୍ଟାନ୍ତ ବିରଳ ।

କେବଳ ଦୁଇଟି ଯାକ ଦେଶରେ ଏକଛତ୍ରବାଦୀ ଅବା ସାମରିକ ଶାସନ ଥିଲେ ଅବା ଅନ୍ତତଃ ଗୋଟିଏ ଦେଶରେ ଏ ଧରଣର ଶାସନ ଥିଲେ ଯୁଦ୍ଧ ଲାଗିପାରେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ଜର୍ମାନୀ ଆରମ୍ଭ କରିଥିଲା, କାରଣ ସେଠାକାର ଏକନାୟକ ଥିଲେ ଆଡୋଲ୍ଫ୍ ହିଟଲର୍ । ହିଟଲରକୁ ଇଟାଲୀ ସମର୍ଥନ କରି ଯୁଦ୍ଧରେ ପଶିଲା କାରଣ ସେଠାରେ ଏକନାୟକ ଥିଲେ ବେନିଟୋ ମୁସୋଲିନି । ଜାପାନରେ ସମ୍ରାଟ ହିରୋହିଟୋଙ୍କର ସରକାର ସେତେବେଳେ ଚାଲିଥିବାରୁ ସେହି ଦେଶ ଜର୍ମାନୀ ସାଙ୍ଗରେ ମଧ୍ୟ ଯୁଦ୍ଧ କରିଥିଲା । ବ୍ରିଟେନ ଓ ଆମେରିକା ଇତ୍ୟାଦି ଦେଶମାନଙ୍କରେ ଗଣତାନ୍ତ୍ରିକ ଶାସନ ଚାଲିଥିବାରୁ ସେ ଦେଶମାନେ କେବଳ ଆତ୍ମରକ୍ଷା ପାଇଁ ଯୁଦ୍ଧ କରିଥିଲେ । ସେମାନେ ଯୁଦ୍ଧ ଆରମ୍ଭ କରି ନଥିଲେ ।

ଭାରତ–ପାକିସ୍ଥାନ ମଧ୍ୟରେ ସ୍ୱାଧୀନତା ପାଖରୁ ଏଯାଏଁ ଚାରି ଥର ଯୁଦ୍ଧ ହୋଇ ସାରିଲାଣି । ସ୍ୱାଧୀନତାର ଠିକ୍ ପରେ ପରେ କାଶ୍ମୀର ଦଖଲ କରିବାକୁ ପାକିସ୍ଥାନର ଅସଙ୍ଗଠିତ ସଶସ୍ତ୍ର ବାହିନୀ ସେଠାରେ ପ୍ରବେଶ କରି କିଛି ଅଞ୍ଚଳ ଦଖଲ କରି ନେଇଥିଲେ । ଜାତିସଂଘର ଯୁଦ୍ଧବିରତି ଘୋଷଣା ପରେ ଯୁଦ୍ଧ ବନ୍ଦ ହୋଇଥିଲା । ସେତେବେଳେ ପାକିସ୍ଥାନରେ ସେମିତି କୌଣସି ବେସାମରିକ ଶାସନର ନିୟନ୍ତ୍ରଣ ନଥିଲା । ଏହି ବେସରକାରୀ ସଶସ୍ତ୍ର ବାହିନୀକୁ ଅସ୍ତ୍ରଶସ୍ତ୍ର ଓ ସହଯୋଗ ଦେଇଥିଲା ପାକିସ୍ଥାନୀ ସେନା । ୧୯୬୫ର ଯୁଦ୍ଧବେଳେ ପାକିସ୍ଥାନର ରାଷ୍ଟ୍ରପତି ଥିଲେ ଜେନେରାଲ୍ ଆୟୁବ ଖାଁ, ଯିଏ ସାମରିକ ବିଦ୍ରୋହ ଜରିଆରେ କ୍ଷମତା ଦଖଲ କରିଥିଲେ । ୧୯୭୧ର ବାଂଲାଦେଶ ଯୁଦ୍ଧ ବେଳେ ପାକିସ୍ଥାନର ସାମରିକ ଶାସକ ଓ ରାଷ୍ଟ୍ରପତି ଥିଲେ ଜେନେରାଲ୍ ୟାହାୟା ଖାଁ । ୧୯୯୯ର କାରଗିଲ୍ ଯୁଦ୍ଧ ବେଳେ ଯଦିଓ ବର୍ତ୍ତମାନର ପ୍ରଧାନମନ୍ତ୍ରୀ ନୱାଜ୍ ସରିଫ୍ ସେତେବେଳେ ମଧ୍ୟ ପ୍ରଧାନମନ୍ତ୍ରୀ ଥିଲେ, ତାଙ୍କ ଦେଶର ସୈନ୍ୟମାନେ ଭାରତ ମଧ୍ୟକୁ

ପ୍ରବେଶ କରିଛନ୍ତି ବୋଲି ତାଙ୍କୁ ଜଣା ନଥିଲା । ତଦାନୀନ୍ତନ ଭାରତର ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ ଯେତେବେଳେ ନୱାଜ୍ ସରିଫଙ୍କୁ ଫୋନ୍ ଯୋଗେ ଏ ବିଷୟରେ ପଚାରିଲେ, ସେତେବେଳେ ତାଙ୍କୁ ଏକଥା ଆଦୌ ଜଣା ନଥିବା ଜଣାପଡ଼ିଲା । କାରଗିଲ୍ ଯୁଦ୍ଧ ଆରମ୍ଭ କରିଥିଲେ ପାକିସ୍ଥାନର ତଦାନୀନ୍ତନ ସେନାମୁଖ୍ୟ ଜେନେରାଲ୍ ପରଭେଜ୍ ମୁସାରଫ୍, ଯିଏ କି ଏହି ଯୁଦ୍ଧ ପରେ ସାମରିକ ବିଦ୍ରୋହ ଜରିଆରେ ନୱାଜ୍ ସରିଫଙ୍କୁ କ୍ଷମତାଚ୍ୟୁତ କରି ଦେଶର ଶାସନ ଭାର ଅକ୍ତିଆର କରି ନେଇଥିଲେ । ତାହା ପୂର୍ବରୁ ଯେତେବେଳେ ନିର୍ବାଚିତ ପ୍ରଧାନମନ୍ତ୍ରୀ ଜୁଲ୍‌ଫିକର୍ ଅଲି ଭୁଟ୍ଟୋଙ୍କୁ ଫାସିଦଣ୍ଡ ଦେଇ ତଦାନୀନ୍ତନ ସେନାମୁଖ୍ୟ ଜେନେରାଲ୍ ଜିଆ ଉଲ୍ ହକ୍ କ୍ଷମତା ଦଖଲ କରିଥିଲେ, ସେତେବେଳେ ସ୍ପଷ୍ଟ ଘୋଷଣା କରିଥିଲେ ଯେ, ଭାରତ ଦେହରେ ଦଶ ଲକ୍ଷ କ୍ଷତ ସୃଷ୍ଟି କରି ରକ୍ତ ଝରାଇ ଝରାଇ ସେ ଭାରତକୁ ମାରିଦେବେ । ପାକିସ୍ଥାନରେ ଯେତେବେଳେ ନିର୍ବାଚନ ହୋଇ ନିର୍ବାଚିତ ପ୍ରତିନିଧିମାନେ କ୍ଷମତାରେ ରହିଛନ୍ତି, ସେମାନେ ଭାରତ ବିରୁଦ୍ଧରେ ଯେତେ କଡ଼ା କଥା କହିଲେ ମଧ୍ୟ ବାସ୍ତବ ଯୁଦ୍ଧ ଆରମ୍ଭ କରି ନାହାନ୍ତି ।

ଗତ ଅଗଷ୍ଟ ମାସରେ ପାକିସ୍ଥାନ କାଶ୍ମୀର ମଧ୍ୟକୁ ଗୋଳା ବର୍ଷଣ କରିବା ଅତି ଆଶ୍ଚର୍ଯ୍ୟର ବିଷୟ । ବାଜପେୟୀଙ୍କ ସରକାର ବେଳରୁ ଦୁଇ ଦେଶ ମଧ୍ୟରେ ଯୁଦ୍ଧ ବିରତି ଘୋଷଣା ହୋଇ ସୀମାନ୍ତ ଅନେକ ପରିମାଣରେ ଶାନ୍ତ ପଡ଼ିଥିଲେ ମଧ୍ୟ ହଠାତ୍ ପୁଣି ବହୁଳ ଭାବରେ ଗୁଳିଗୋଳା ଚାଲିବା ଆଶ୍ଚର୍ଯ୍ୟକର ନିଶ୍ଚୟ । ଆଶ୍ଚର୍ଯ୍ୟ ହେବାର କାରଣ ହେଲା, ପାକିସ୍ଥାନରେ ଠିକ୍ ଏହି ସମୟରେ ଘୋର ଅଶାନ୍ତ ରହିଥିଲା । ପାକିସ୍ଥାନର ଏକ ପ୍ରମୁଖ ବିରୋଧୀ ଦଳ ତଥା ପାକିସ୍ଥାନ କ୍ରିକେଟ୍ ଦଳର ପୂର୍ବତନ ଅଧିନାୟକ ଇମ୍ରାନ୍ ଖାଁଙ୍କର ତେହେରିକ୍-ଇ-ଇନସାଫ୍ ଦଳ ଓ ଜଣେ ଧର୍ମଗୁରୁ ତାହିରୁଲ୍ କାଦ୍ରିଙ୍କର ପାକିସ୍ଥାନ ଆୱାମି ତେହେରିକ୍ ଦଳର ହଜାର ହଜାର ସମର୍ଥକମାନେ ସଂସଦ ଭବନ ଘେରାଉ କରି ପ୍ରଧାନମନ୍ତ୍ରୀ ନୱାଜ୍ ସରିଫଙ୍କ ଇସ୍ତଫା ଦାବି କରୁଥିଲେ । ନିଜ ଦେଶରେ ଏପରି ଗୁରୁତର ରାଜନୈତିକ ଅସ୍ଥିରତା ଲାଗି ରହିଥିଲା ବେଳେ ସେ ଦେଶ ପୁଣି ଆଉ ଗୋଟିଏ ଦେଶ ସହ ଏକ ପ୍ରକାର ଯୁଦ୍ଧ ଆରମ୍ଭ କରିବ, ଏହା ନିଶ୍ଚିତ ଭାବରେ ଆଶ୍ଚର୍ଯ୍ୟଦାୟକ କଥା ।

ଏହା ସ୍ପଷ୍ଟ ଇଙ୍ଗିତ କରୁଛି ଯେ, ଏ ଧରଣର ଯୁଦ୍ଧ ସେଠାକାର ସରକାର ଆରମ୍ଭ କରୁ ନାହାନ୍ତି । ଆରମ୍ଭ କରୁଛି ସେଠାକାର ସେନାବାହିନୀ । ଏହି ସେନାବାହିନୀ ମୂଳରୁ ହିଁ ମୌଳିକ ଦୃଷ୍ଟିରୁ ଭାରତ ବିରୋଧୀ ହୋଇ ରହି ଆସିଛି । ମୁଖ୍ୟତଃ ସେହି କାରଣରୁ ନରେନ୍ଦ୍ର ମୋଦିଙ୍କ ଶପଥ ଗ୍ରହଣ ଉତ୍ସବ ବେଳେ ନୱାଜ୍ ସରିଫ୍ ସେଠାରେ ଉପସ୍ଥିତ ରହିବା କଥାକୁ ସେଠାକାର ସେନାବାହିନୀ ଚାହୁଁ ନଥିଲା । ଏହାର କାରଣ, ଭାରତର ପ୍ରଧାନମନ୍ତ୍ରୀଙ୍କ ଶପଥ ଗ୍ରହଣ ଉତ୍ସବରେ ପାକିସ୍ଥାନର ପ୍ରଧାନମନ୍ତ୍ରୀ ଯୋଗ ଦେବାର ଅର୍ଥ ହେଉଛି ଦକ୍ଷିଣ ଏସିଆରେ ଭାରତର ପ୍ରାଧାନ୍ୟକୁ ପାକିସ୍ଥାନ ସ୍ୱୀକାର କରିବା । ପୁଣି ଭାରତ ପାକିସ୍ଥାନ ସଚିବ ସ୍ତରୀୟ କଥାବାର୍ତ୍ତା ଗତ ୨୫ ଅଗଷ୍ଟ ୨୦୧୪ରେ ଇସଲାମାବାଦଠାରେ ଅନୁଷ୍ଠିତ ହେବାର ଥିଲେ ମଧ୍ୟ ଆଲୋଚନା ଆରମ୍ଭ ହେବା ପୂର୍ବରୁ ଦିଲ୍ଲୀରେ ଥିବା ପାକିସ୍ଥାନର ରାଷ୍ଟ୍ରଦୂତ(ହାଇକମିଶନର୍) କାଶ୍ମୀରର ବିଚ୍ଛିନ୍ନତାବାଦୀ ହୁରିୟାତ୍ କନଫରେନ୍ସର ନେତାମାନଙ୍କୁ ଭେଟିବାରୁ ଏହି ଆଲୋଚନା ବନ୍ଦ ହୋଇଗଲା । ଠିକ୍ ଅସଲ ବେଳରେ ପାକିସ୍ଥାନ ହାଇକମିଶନର୍ କାଶ୍ମୀର ବିଚ୍ଛିନ୍ନତାବାଦୀଙ୍କୁ ଭେଟି ଗଡ଼ି ଉଠିଥିବା ବନ୍ଧୁତ୍ୱପୂର୍ଣ୍ଣ ବାତାବରଣକୁ ଦୂଷିତ କରିବା ଘଟଣା ପଛରେ ସେନାବାହିନୀର ହାତ ଥିବ, ଏଥିରେ ସନ୍ଦେହ ନାହିଁ ।

ପାକିସ୍ଥାନର ସେନାବାହିନୀ ଏତେ ଭାରତ ବିଦ୍ୱେଷୀ କାହିଁକି ? ଏ ସମ୍ପର୍କରେ ସମସ୍ତେ ଊଣା ଅଧିକେ ଜାଣି ଥିଲେ ମଧ୍ୟ ଅଳ୍ପ କେଇ ସପ୍ତାହ ପୂର୍ବରୁ ଆମେରିକାର ଜଣେ ଗବେଷିକା କ୍ରିଷ୍ଟାଇନ୍ ଫେୟାର ତାଙ୍କ ଲିଖିତ 'ଫାଇଟିଙ୍ଗ୍ ଟୁ ଦି ଏଣ୍ଡ:ଦି ପାକିସ୍ଥାନ ଆର୍ମିଜ୍ ୱେ ଟୁ ଓାର୍' ପୁସ୍ତକରେ ଯେଉଁ ମନ୍ତବ୍ୟମାନ ଦେଇଛନ୍ତି, ତାହା ପ୍ରଣିଧାନଯୋଗ୍ୟ । ପାକିସ୍ଥାନୀ ସେନା, ଆଇ.ଏସ୍.ଆଇ, ସାମ୍ବାଦିକ, ଗବେଷକମାନଙ୍କ ସହ କଥାବାର୍ତ୍ତା କରି ସେ ତାଙ୍କ ନିଷ୍କର୍ଷରେ ପହଞ୍ଚିଛନ୍ତି । ତାଙ୍କ ମତ ଅନୁସାରେ, ମୂଳରୁ ପାକିସ୍ଥାନର ସେନା 'ଦ୍ୱିଜାତୀୟ ତତ୍ତ୍ୱ' ଉପରେ ବିଶ୍ୱାସ କରେ । ଅର୍ଥାତ୍ ହିନ୍ଦୁ ଓ ମୁସଲମାନମାନେ ହେଲେ ଦୁଇଟି ଅଲଗା ଅଲଗା ଜାତି । ସ୍ୱାଧୀନତା ପୂର୍ବରୁ ଏକ ସ୍ୱତନ୍ତ୍ର ପାକିସ୍ଥାନ ଗଠନ ପାଇଁ ମହମ୍ମଦ ଅଲି ଜିନ୍ନାଙ୍କ ନେତୃତ୍ୱରେ ଯେଉଁ 'ମୁସଲିମ୍ ଲିଗ୍' ସଂଗଠନ ଆନ୍ଦୋଳନ କରୁଥିଲା, ତା'ର ଯୁକ୍ତି ଥିଲା, ମୁସଲମାନମାନେ ହେଉଛନ୍ତି ଭାରତବର୍ଷର ଅସଲ ରାଜା । କାରଣ, ସେମାନେ ଏ ଦେଶକୁ ୬୦୦ ବର୍ଷ ଧରି ଶାସନ କରି ଆସିଛନ୍ତି । ଦ୍ୱାଦଶ ଶତାବ୍ଦୀରେ ଦିଲ୍ଲୀର ସୁଲତାନ ସାମ୍ରାଜ୍ୟଠାରୁ ଆରମ୍ଭ କରି ଅଷ୍ଟାଦଶ ଶତାବ୍ଦୀରେ ବ୍ରିଟିଶମାନେ ଏ ଦେଶକୁ ଅକ୍ତିଆର କରିବା ପର୍ଯ୍ୟନ୍ତ ଏ ଦେଶରେ ମୁସଲମାନ ଶାସନ ଥିଲା । ବ୍ରିଟିଶମାନେ ମୁସଲମାନମାନଙ୍କ ପାଖରୁ ଶାସନ ଭାର ଛଡ଼େଇ ନେଇଥିଲେ ।

ତେଣୁ ଯେତେବେଳେ ବ୍ରିଟିଶମାନେ ଏ ଦେଶ ଛାଡ଼ି ଯିବେ, ସେତେବେଳେ ଯାହାଠାରୁ ସେମାନେ ଶାସନ ଭାର ଛଡ଼େଇ ନେଇଥିଲେ ତାହାକୁ ହିଁ ଶାସନ ଭାର ପୁଣି ଫେରାଇ ଦେଇ ଚାଲିଯିବା ଉଚିତ୍। ବ୍ରିଟିଶମାନେ ମୁସଲମାନମାନଙ୍କ ହାତରୁ କ୍ଷମତା ଗ୍ରହଣ କରି ଥିବାରୁ ସେହି ମୁସଲମାନମାନଙ୍କ ହାତକୁ କ୍ଷମତା ଦେଇ ଦିଅନ୍ତୁ, ଏକଥା ସେମାନେ ଚାହୁଁଥିଲେ। ହିନ୍ଦୁମାନଙ୍କ ହାତକୁ କାହିଁକି ବ୍ରିଟିଶମାନେ କ୍ଷମତା ହସ୍ତାନ୍ତର କରି ଚାଲିଯିବେ, ଏକଥା ଉପରେ ମୁସଲିମ ଲିଗ୍‌ର ଆପତ୍ତି।

ଆଜି ମଧ୍ୟ ପାକିସ୍ଥାନୀ ସେନା ଏହି ମତରେ ଅଟଳ। ସେମାନେ ଭାରତକୁ ହିନ୍ଦୁସ୍ଥାନ ଓ ହିନ୍ଦୁ ରାଷ୍ଟ୍ର ବୋଲି ବର୍ଣ୍ଣନା କରିଥାନ୍ତି। ହିନ୍ଦୁମାନେ ଏ ଦେଶକୁ ଅନ୍ୟାୟ ଭାବରେ ବ୍ରିଟିଶମାନଙ୍କ ହାତରୁ ଛଡ଼େଇ ନେଇଛନ୍ତି, ତେଣୁ ଭାରତକୁ ପୁଣି ହିନ୍ଦୁମାନଙ୍କ ହାତରୁ ମୁସଲମାନମାନେ ଛଡ଼େଇ ନେବା ଉଚିତ୍, ଏହି ବଦ୍ଧମୂଳ ଧାରଣାରେ ସେମାନେ ବିଶ୍ୱାସୀ।

ତେଣୁ ଭାରତ ବିରୋଧରେ ସେମାନଙ୍କର ଯୁଦ୍ଧ, ଏକ ସାଧାରଣ ଯୁଦ୍ଧ ନୁହେଁ ବୋଲି ସେମାନଙ୍କ ଧାରଣା। ସେମାନେ ବିଶ୍ୱାସ କରନ୍ତି ଯେ, ଭାରତ ବିରୋଧରେ ଯୁଦ୍ଧ ହେଲା ଧର୍ମଯୁଦ୍ଧ, ଅର୍ଥାତ୍ 'ଜେହାଦ୍'। ଭାରତ ବିରୋଧରେ ଯୁଦ୍ଧ ସେମାନଙ୍କ ପାଇଁ ଇସଲାମ୍ ସମ୍ମତ। ଯେତେଥର ଭାରତ ସହିତ ପାକିସ୍ଥାନର ଯୁଦ୍ଧ ହୋଇଛି, ପାକିସ୍ଥାନ ପ୍ରତ୍ୟେକ ଥର ପରାସ୍ତ ହୋଇଛି ନିଶ୍ଚୟ। ୧୯୭୧ ମସିହାରେ ପାକିସ୍ଥାନକୁ ଦୁଇ ଭାଗ କରି ଏକ ନୂଆ ବଙ୍ଗଳାଦେଶ ରାଷ୍ଟ୍ର ଗଠନ କରିବାରେ ଭାରତର ପ୍ରମୁଖ ଭୂମିକା ଥିଲା। ଏହି ଯୁଦ୍ଧରେ ଭାରତୀୟ ସେନାର ବିଜୟ, ପାକିସ୍ଥାନର ବିଭାଜନ, ନୂଆ ବଙ୍ଗଳାଦେଶ ରାଷ୍ଟ୍ର ସୃଷ୍ଟି ଓ ୯୨,୦୦୦ଜଣ ପାକିସ୍ଥାନୀ ସୈନ୍ୟଙ୍କର ଯୁଦ୍ଧବନ୍ଦୀ ଭାବରେ ଭାରତରେ ଏକ ବର୍ଷ ପର୍ଯ୍ୟନ୍ତ ରହଣି, ପାକିସ୍ଥାନ ସେନା ପାଇଁ ଚରମ ଅପମାନର କଥା। ଏହାର ପ୍ରତିଶୋଧ ନେବା ପାଇଁ ସେମାନେ ସଦା ତତ୍ପର। କିନ୍ତୁ ବାରମ୍ବାର ଯୁଦ୍ଧରେ ପରାସ୍ତ ହେଲେ ସେମାନଙ୍କ ସେନାବାହିନୀର ମନୋବଳ ଭାଙ୍ଗିଯିବ। ଏହି ଆଶଙ୍କା ହେତୁ ସେମାନେ ସେମାନଙ୍କର ସୈନ୍ୟମାନଙ୍କୁ ବୁଝାଇଛନ୍ତି ଯେ, ଭାରତ ସହ ଯୁଦ୍ଧ ଏକ 'ଜେହାଦ୍'ହୋଇଥିବାରୁ ହାରିଲେ ମଧ୍ୟ ସର୍ବଦା ଯୁଦ୍ଧ କରି ଚାଲିବା ପାକିସ୍ଥାନୀ ସୈନ୍ୟଙ୍କର ଅସଲ କର୍ତ୍ତବ୍ୟ। ଏହି ଯୁଦ୍ଧରେ ପ୍ରାଣତ୍ୟାଗ କଲେ ତାକୁ ଆଲ୍ଲା ସ୍ୱର୍ଗରେ ସ୍ଥାନ ଦେବେ ଓ ସବୁ କିଛି ସୁଖର ସ୍ୱାଦ ଚଖାଇବେ।

ଭାରତ ସହ ଯୁଦ୍ଧରେ ପାକିସ୍ଥାନ ପାଇଁ କେତେ ସୈନିକ ମଲେ, ପାକିସ୍ଥାନର କେତେ ଅଞ୍ଚଳ ଭାରତ ହାତକୁ ଚାଲିଗଲା, ସେସବୁ ବଡ଼ କଥା ନୁହେଁ। ସେମାନେ ଏହାକୁ ସେମାନଙ୍କର ପରାଜୟ ବୋଲି ଗଣନା କରୁ ନାହାନ୍ତି। ସେମାନଙ୍କ ପାଇଁ ପରାଜୟର ଅର୍ଥ ହେଲା, ସେମାନେ ଯେତେବେଳେ ଭାରତକୁ ପ୍ରତିହତ କରି ପାରିବେ ନାହିଁ। ଯେ ପର୍ଯ୍ୟନ୍ତ ଭାରତକୁ ସେମାନେ ରୋକିବାକୁ ସକ୍ଷମ ହେଉଥିବେ, ସେପର୍ଯ୍ୟନ୍ତ କିଛି ସୈନିକ ମରିଗଲେ ଅବା ଅଳ୍ପ କିଛି ଅଞ୍ଚଳ ଚାଲିଗଲେ ମଧ୍ୟ କିଛି ଯାଏ ଆସେ ନାହିଁ। ଗୋଟିଏ ଯୁଦ୍ଧରେ ପରାଜିତ ହେବାର ସବୁ ପ୍ରକାର ସମ୍ଭାବନା ଥିଲେ ମଧ୍ୟ ସେମାନେ ଭାରତ ସହ ଯୁଦ୍ଧ କରିବାର ବିପଦ ମୁଣ୍ଡାଇବାକୁ ରାଜି ଅଛନ୍ତି। ସେମାନେ ଭାରତକୁ ଦେଖାଇ ଦେବାକୁ ଚାହାନ୍ତି ଯେ, ଭାରତ ତା'ର ଇଚ୍ଛାକୁ ସେମାନଙ୍କ ଉପରେ ଜାହିର କରି ପାରିବ ନାହିଁ।

ଏଠାରେ ଉଲ୍ଲେଖନୀୟ ଯେ, ସାରା ପୃଥିବୀରେ ଏକମାତ୍ର ଧର୍ମଭିତ୍ତିକ ରାଷ୍ଟ୍ର ହେଉଛି ପାକିସ୍ଥାନ। କେବଳ ଧର୍ମକୁ ନେଇ ଏହି ରାଷ୍ଟ୍ର ଗଠିତ। ଏ ରାଷ୍ଟ୍ରରେ ଗୋଟିଏ ଜାତିର ଲୋକମାନେ ନାହାନ୍ତି। ଇସଲାମ ଧର୍ମରେ ଦୀକ୍ଷିତ ପାବୀ, ସିନ୍ଧି, ବାଲୁଚ୍, ପୁସ୍ତୁନ ଓ ଭାରତରୁ ଯାଇଥିବା ଉର୍ଦ୍ଦୁଭାଷୀ ଶରଣାର୍ଥୀମାନେ ମିଶି ପାକିସ୍ଥାନ ଗଢ଼ିଛନ୍ତି। ପାକିସ୍ଥାନ ସୃଷ୍ଟି ହେଲାବେଳେ ଏମାନଙ୍କ ସହ ବଙ୍ଗଳାଭାଷୀ ପୂର୍ବ ପାକିସ୍ଥାନୀ (ବର୍ତ୍ତମାନର ବାଂଲାଦେଶ) ମାନେ ମିଳିତ ହୋଇ ରହିଥିଲେ, ଯେଉଁମାନେ କି ପରବର୍ତ୍ତୀ କାଳରେ ଅଲଗା ହୋଇ ଯାଇଛନ୍ତି। ଇସ୍ରାଏଲ ଦେଶକୁ ଇହୁଦୀମାନେ ଗଢ଼ିଥିଲେ ମଧ୍ୟ ସେ ଦେଶକୁ ସେମାନେ ଧର୍ମ ନିରପେକ୍ଷ ରାଷ୍ଟ୍ର ହିସାବରେ ଘୋଷଣା କରିଛନ୍ତି। ତେଣୁ ପାକିସ୍ଥାନକୁ ଇସଲାମୀ ରାଷ୍ଟ୍ର ଓ ଏହି ରାଷ୍ଟ୍ର ଭାରତ ପରି ହିନ୍ଦୁମାନଙ୍କଠାରୁ ଅଲଗା ହିସାବରେ ରଖିବା ପାକିସ୍ଥାନ ସେନାର ମୁଖ୍ୟ ଆଦର୍ଶ ହୋଇ ରହିଛି।

ଏ ପର୍ଯ୍ୟନ୍ତ ମଧ୍ୟ ପାକିସ୍ଥାନର ଇତିହାସ ପାଠ୍ୟ ପୁସ୍ତକମାନ ଦେଖିଲେ ମନେହେବ ଯେପରି କି, ପୃଥିବୀ ୧୯୪୭ ଅଗଷ୍ଟ ୧୪ ତାରିଖଠାରୁ ସୃଷ୍ଟି ହୋଇଛି। ଏହା ପୂର୍ବରୁ ସତେ ଯେମିତି ପୃଥିବୀ ନଥିଲା। ସେଥିରେ ପାକିସ୍ଥାନୀ ସେନା ଯେଉଁ ଦ୍ୱିଜାତୀୟ ତତ୍ତ୍ୱ କଥା କହୁଛି ସେହି କଥା ହିଁ ଲେଖା ଯାଇଛି। ପ୍ରଥମ ଶ୍ରେଣୀରୁ ହିଁ ପାକିସ୍ଥାନୀ ଛାତ୍ର-ଛାତ୍ରୀଟିଏ ବୁଝିଥାଏ ଯେ, ହିନ୍ଦୁମାନେ ହେଉଛନ୍ତି ସେମାନଙ୍କର ଶତ୍ରୁ। ଗାନ୍ଧୀ ହେଉଛନ୍ତି ଜଣେ ହିନ୍ଦୁ ନେତା। ସେ ଷଡ଼ଯନ୍ତ୍ର କରି ମୁସଲମାନମାନଙ୍କୁ ସେମାନଙ୍କ ହକ୍‌ରୁ ବଞ୍ଚିତ କରିବାକୁ ଚେଷ୍ଟା କରୁଥିଲେ। କେବଳ ଜିନ୍ନା ହିଁ



ତାଙ୍କ ସହ ଲଢ଼ି ମୁସଲମାନମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଇସଲାମୀ ଦେଶ ସୃଷ୍ଟି କରି ପାରିଲେ । କାରଣ ମୁସଲମାନମାନେ ହିନ୍ଦୁମାନଙ୍କ ସହ ରହି ପାରିବେ ନାହିଁ ।

ଏହି ଧରଣର ଆଦର୍ଶବାଦକୁ ଗଭୀର ଭାବରେ ଅନୁଧ୍ୟାନ କଲେ ଜଣାପଡ଼ିବ ଯେ, କାଶ୍ମୀର ଏକ ମୁସଲମାନ ଅଧ୍ୟୁଷିତ ଇଲାକା ହୋଇ ଥିବାରୁ ପାକିସ୍ଥାନ ତାହାକୁ ନିଜ ଆଡ଼କୁ ନେବାକୁ ଚାହୁଁଛି ଓ ସେଇୟା ହେଲେ ପାକିସ୍ଥାନ ସନ୍ତୁଷ୍ଟ ହୋଇଯିବ, ଏକଥା ଆଦୌ ସତ୍ୟ ନୁହେଁ । ସତ୍ୟ ହେଉଛି, କାଶ୍ମୀରକୁ ପାକିସ୍ଥାନ ହାତକୁ ପୂରାପୂରି ଦେଇ ଦିଆଗଲେ ମଧ୍ୟ ପାକିସ୍ଥାନ ସନ୍ତୁଷ୍ଟ ହେବ ନାହିଁ । ତା'ପରେ ମଧ୍ୟ ଭାରତ ସହ ସେଇମିତି ଯୁଦ୍ଧ ଚାଲୁ ରହିବ । କାରଣ ଲକ୍ଷ୍ୟ ହେଉଛି ସାରା ଭାରତବର୍ଷ, କେବଳ କାଶ୍ମୀର ନୁହେଁ । କାଶ୍ମୀର ସମାଧାନର ମାର୍ଗ ନୁହେଁ, ଏହା ହେଉଛି ରୋଗର ଲକ୍ଷଣ । ଆଜି କାଶ୍ମୀରକୁ ଦେଇ ଦିଆଗଲେ ପାକିସ୍ଥାନୀ ସେନା ଆଉ ଅନ୍ୟ କିଛି ଆଳ ବାହାର କରି ବିବାଦକୁ ଜାରି ରଖିବ । ପାକିସ୍ଥାନର ସେନା ସବୁବେଳେ ତା'ର ସୈନିକ ଓ ଦେଶବାସୀମାନଙ୍କୁ ବୁଝାଇଥାଏ ଯେ, ଭାରତ ହିଁ ସଦାବେଳେ ଯୁଦ୍ଧ ଆରମ୍ଭ କରିଥାଏ । ତେଣୁ ତା' ସହ ଲଢ଼ିବାର ଅର୍ଥ ଆତ୍ମରକ୍ଷା, ଆକ୍ରମଣ ନୁହେଁ ।

ପାକିସ୍ଥାନୀ ସେନାର ଏହି ମନୋବୃତ୍ତି ଥିବାବେଳେ ଭାରତ ସହ ବିବାଦ ଏତେ ସହଜରେ ମିଣ୍ଟିବ ନାହିଁ । ଅବଶ୍ୟ ଏକଥା ସତ୍ୟ, ଜଗତୀକରଣ ଯୁଗରେ ଗୋଟିଏ ଦେଶ ଆଉ ଗୋଟିଏ ଦେଶ ସହ ଯୁଦ୍ଧ କରିବା ଏତେ ସହଜ ନୁହେଁ । ଯୁଦ୍ଧ ହେଲେ ଅନ୍ୟ ଦେଶମାନେ ସଂଗେ ସଂଗେ ହସ୍ତକ୍ଷେପ କରି ବସିବେ । ପୁଣି ସବୁ ଦେଶ ସବୁ ଦେଶ ସହ ଅର୍ଥନୈତିକ ଦୃଷ୍ଟିରୁ ସଂପୃକ୍ତ ଥିବାରୁ ଯୁଦ୍ଧ ଆରମ୍ଭ କରି ସେହି ସମ୍ପର୍କକୁ କାଟି ଦେବା ଏତେ ସହଜ ହେବନି । ଆମେରିକାର ବିନା ସହମତିରେ ପାକିସ୍ଥାନ, ଭାରତ ସହ ଯୁଦ୍ଧ କରି ପାରିବନି । କିନ୍ତୁ ପାକିସ୍ଥାନୀ ସେନାର ମନୋବୃତ୍ତି ଦୃଷ୍ଟିରୁ ଦୁଇ ଦେଶ ମଧ୍ୟରେ ବିବାଦ ମଧ୍ୟ ସହଜରେ ତୁଟିବନି ।

Kharabelaswain@gmail.com

# ପ୍ରାର୍ଥନା

**ବିଜୟଲକ୍ଷ୍ମୀ ରାଉତରାୟ**

ଗ୍ରୀଷ୍ମ ଅବକାଶେ ବର୍ଷାର ଶେଷେ
ଶରତ ଋତୁ ଆସେ
ଦୁର୍ଗା ମାତାଙ୍କର ସ୍ୱାଗତ ପାଇଁ
ଧରଣୀ ରାଣୀ
ଫୁଲର ସମ୍ଭାର ସଜାଇ ବସେ ।

ଜୟ ମା', ଜୟ ମା', ଜୟ ମା'
ଜୟ ଜୟ ଜୟ ଜୟ ମା' ।
ଦୁଃଖ ବିନାଶିନୀ ଝଙ୍କଡବାସିନୀ
ଶୁଭଦା, ବରଦା ମାଆ ।

ତୁହି ମା' ଦୁର୍ଗେ, ତୁହି ମା' ଅମ୍ବେ
ତୁହି ମା' କାତ୍ୟାୟିନୀ
ଦୁଷ୍ଟ ନିବାରି ଜଗତ ରଖୁ
ତୁହି ମା' ଜଗତ ଜନନୀ ।



ଆସ ମା' ଦୁର୍ଗେ ଧରଣୀ ବକ୍ଷେ
ଖଣ୍ଡା ଖର୍ପର ଧରି
ବଧ କର ମା' ରକ୍ତ ପିପାସୁ
ନର ରାକ୍ଷସ ଧରି ।
ଅପସରି ଯାଉ ଧରଣୀ ବକ୍ଷୁ
ବିଧର୍ମୀ ଆଉ ପାପୀ
ଦୁର୍ଗତି ଯେତେ ଦୂର ହୋଇଯାଉ
ତୁମରି ନାମ ଜପି ।

କେତକୀ ପାଟଣା
ବୀରପ୍ରତାପପୁର
ଜିଲ୍ଲା– ପୁରୀ– ୭୫୨୦୧୨

# ଶ୍ରୀକ୍ଷେତ୍ରରେ ଶାରଦୀୟ ଦେବୀ ପୂଜା

**ଲାଲମୋହନ ପଟ୍ଟନାୟକ**

ଶ୍ରୀଜଗନ୍ନାଥ ମନ୍ଦିରରେ ପରମ୍ପରାକ୍ରମେ ପାଳିତ ହେଉଥିବା ଶାସ୍ତ୍ରୀୟ ବିଧିବିଧାନ ଏବଂ ନୀତି ଅନନ୍ୟ । ଶାରଦୀୟ ଦେବୀ ପୂଜାରେ ଶ୍ରୀମନ୍ଦିରରେ ପାଳିତ ହେଉଥିବା ବିଧିବିଧାନ ଅନ୍ୟତ୍ର ପାଳିତ ହେଉଥିବା ବିଧିବିଧାନଠାରୁ ଭିନ୍ନ । ସର୍ବତ୍ର ସାଧାରଣତଃ ଦୁର୍ଗାଙ୍କ ସହ ଶିବଙ୍କର ପୂଜା କରାଯାଇଥାଏ । କିନ୍ତୁ ଶ୍ରୀମନ୍ଦିରରେ ଶାରଦୀୟ ଦେବୀ ପୂଜା ସମୟରେ ଦୁର୍ଗାଙ୍କ ସହ ମାଧବଙ୍କ ପୂଜା ହୁଏ । ଏହା ମୁଖ୍ୟତଃ 'ଦୁର୍ଗାମାଧବ ଉପାସନା' ଭାବରେ ଶ୍ରୀମନ୍ଦିରରେ ପାଳିତ ହୁଏ । ଆନନ୍ଦମୟୀ ଦୁର୍ଗା ଏବଂ ସଚ୍ଚିଦାନନ୍ଦ ମାଧବଙ୍କର ଯୁଗଳ ଉପାସନା ହେଉଛି ଦୁର୍ଗାମାଧବ ଉପାସନା । ଶ୍ରୀଜଗନ୍ନାଥଙ୍କ ସ୍ୱରୂପ ମାଧବ । ଦୁର୍ଗା ଭଗବତୀ, ମାଧବ ଭଗବାନ । ଏହିଭଳି ଦୁର୍ଗାମାଧବ ଉପାସନା ନୀତି ଅନ୍ୟତ୍ର ବିରଳ ।



ସେହିପରି ଶ୍ରୀକ୍ଷେତ୍ରରେ ହେଉଥିବା ମୃଣ୍ମୟୀ ଦେବୀ ପୂଜା ଅନ୍ୟତ୍ର ହେଉଥିବା ମୃଣ୍ମୟୀଦେବୀ ପୂଜାଠାରୁ ଭିନ୍ନ । ଶାରଦୀୟ ଦେବୀ ପୂଜାରେ ସର୍ବତ୍ର ଦେବୀଙ୍କର ମୃଣ୍ମୟୀ ଦୁର୍ଗା ମୂର୍ତ୍ତି ପୂଜା ପାଉଥିବା ବେଳେ ଶ୍ରୀକ୍ଷେତ୍ର ପୁରୀରେ ମୃଣ୍ମୟୀ 'ଗୋସାଣୀ' ମୂର୍ତ୍ତିଙ୍କର ପୂଜା ହୁଏ । ଦେବୀଙ୍କର ଉଗ୍ର କ୍ରୋଧ ଶକ୍ତିର ପ୍ରତୀକକୁ 'ଗୋସାଣୀ' ରୂପରେ ପୁରୀରେ ପୂଜାର୍ଚ୍ଚନା କରାଯାଏ । ମହିଷାସୁର ସହ ଯୁଦ୍ଧର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଦେବୀଙ୍କର କରାଳ ମୂର୍ତ୍ତିକୁ 'ଗୋସାଣୀ' ରୂପରେ ପୁରୀରେ ପୂଜା କରାଯାଏ ।

ଶ୍ରୀମନ୍ଦିରରେ ଦୁର୍ଗାମାଧବ ଉପାସନା ଆଶ୍ୱିନ କୃଷ୍ଣ ଅଷ୍ଟମୀ (ମୂଳାଷ୍ଟମୀ)ଠାରୁ ଆରମ୍ଭ ହୋଇ ଷୋଳଦିନ ବ୍ୟାପୀ ହୁଏ । ଏହାକୁ ଷୋଳପୂଜା, ଶାରଦୀୟ ଦେବୀ ପୂଜା, ଶାକ୍ତ ଗୁଣ୍ଡିଚା, ଭିତର ଗୁଣ୍ଡିଚା, ଶାରଦୀୟ ରଥଯାତ୍ରା ବା ଦଶହରା ମହୋତ୍ସବ କୁହାଯାଏ । ଏହି ପୂଜାର ପ୍ରଥମ ଦିନ ଶାରଦୀୟ ଦେବୀ ପୂଜା ସକାଶେ ମା' ସୁଭଦ୍ରାଙ୍କୁ ପ୍ରାର୍ଥନା କରାଯାଏ । ସକାଳ ଧୂପ ବଢ଼ିବା ପରେ ମା' ଦୁର୍ଗାଙ୍କ ପ୍ରତିମାଙ୍କୁ ଭଣ୍ଡାର ଘରୁ ଆଣି ରତ୍ନସିଂହାସନରେ ବିଜେ କରାଯାଏ । ମା' ସୁଭଦ୍ରାଙ୍କଠାରୁ ଆଜ୍ଞାମାଳ ପାଇ ମା'ଦୁର୍ଗା ମାଜଣା ମଣ୍ଡପକୁ ବିଜେ କରନ୍ତି । ସେଠାରେ ମା' ଦୁର୍ଗାଙ୍କର କୁମ୍ଭାଭିଷେକ ହୁଏ । ପଞ୍ଚୋପଚାର ଭୋଗ ଓ ବନ୍ଦାପନା ପରେ ମା' ଦୁର୍ଗା ଭଣ୍ଡାର ଘର ଦ୍ୱାରରେ ବିଜେ କରନ୍ତି । ମାଧବ ରତ୍ନସିଂହାସନରୁ ବିଜେ କରି ମା' ଦୁର୍ଗାଙ୍କ ସହ ରୁନ୍ଧା ହୁଅନ୍ତି ବା ଭଦ୍ରାସନରେ ଏକତ୍ର ଦୁର୍ଗାଙ୍କ ସହ ବିଜେ କରନ୍ତି । ଏହି ଦୁର୍ଗାମାଧବ ରତ୍ନସିଂହାସନରେ ବିଜେ କରି ଆଜ୍ଞାମାଳ ପାଇ ଝୁଲଣ ମଣ୍ଡପଠାରେ ଥିବା ସୁସଜ୍ଜିତ ରଥ (ବିମାନ)ରେ



ବିମଳା ମନ୍ଦିରକୁ ଯାତ୍ରା କରନ୍ତି । ଏହା ପୂର୍ବରୁ ମା' ବିମଳାଙ୍କ ନିକଟରେ ସ୍ୱତନ୍ତ୍ର ରୋଷରେ ପ୍ରସ୍ତୁତ ବିମଳେଇ ପିଠା, ଗଜାମଣ୍ଡା, ମୁଆଁ ଆଦି ଭୋଗ କରାଯାଇ ଆଳତି, ବନ୍ଦାପନା ନୀତି ସମାପନ ହୋଇଥାଏ । 'ଦୁର୍ଗାମାଧବ' ବିମଳା ମନ୍ଦିର ନାଟମଣ୍ଡପରେ ପଲଙ୍କ ଉପରେ ବିଜେ କରନ୍ତି । ସେଠାରେ ଶୀତଳ ଭୋଗ ଲାଗି ହୋଇ ବନ୍ଦାପନା ହୁଏ । ଶ୍ରୀଜଗନ୍ନାଥଙ୍କ ରାତ୍ରି ଚନ୍ଦନ ଲାଗି ନୀତି ପରେ ଦୁର୍ଗାମାଧବ ବିମଳା ମନ୍ଦିରରୁ ବାହୁଡା ବିଜେ କରି ଭଣ୍ଡାର ଘରକୁ ଆସନ୍ତି । ଏହିପରି ଷୋଳପୂଜାର ପ୍ରଥମ ଆଠଦିନ ଦୁର୍ଗାମାଧବ ବିମଳା ମନ୍ଦିରକୁ ବିଜେ କରନ୍ତି ଓ ସେଠାରେ ପ୍ରତିଦିନ ଉପରୋକ୍ତ ନୀତି ପାଳନ କରାଯାଇଥାଏ ।

ଷୋଳପୂଜା ନବମ ଦିନ ଦୁର୍ଗାମାଧବ ଶ୍ରୀମନ୍ଦିରରୁ ରଥରୂପୀ ବିମାନରେ ଦୋଳମଣ୍ଡପ ସାହିସ୍ଥ ନାରାୟଣୀ ମନ୍ଦିରକୁ ଯାତ୍ରା କରନ୍ତି । ଶ୍ରୀମନ୍ଦିର ସିଂହଦ୍ୱାର ସମ୍ମୁଖରେ ଅଳ୍ପ ଦୂରରେ ଦୋଳମଣ୍ଡପ ସାହିରେ ନାରାୟଣୀ ମନ୍ଦିରରେ ପଲଙ୍କ ଉପରେ ଦୁର୍ଗାମାଧବ ବିଜେ କରନ୍ତି । ଭୋଗ ଲାଗି ହୋଇ ବନ୍ଦାପନା ପରେ ଦୁର୍ଗାମାଧବ ନାରାୟଣୀ ମନ୍ଦିରରୁ ଶ୍ରୀମନ୍ଦିରକୁ ବାହୁଡା ଯାତ୍ରା କରି ଭଣ୍ଡାର ଘରେ ବିଜେ ହୁଅନ୍ତି । ଏହିପରି ନୀତି ନାରାୟଣୀ ମନ୍ଦିରରେ ଆଠଦିନ ପାଳିତ ହୁଏ । ଦୁର୍ଗାମାଧବ ରୁଦ୍ଧା ହୋଇ ଏହିପରି ଦଶହରା ପର୍ଯ୍ୟନ୍ତ ଭଣ୍ଡାର ଘରେ ରହନ୍ତି । ଏହାକୁ 'ଦୁର୍ଗାମାଧବ ଉପାସନା' ବା 'ଶାକ୍ତ ଗୁଣ୍ଡିଚା' କୁହାଯାଏ ।

ଦୁର୍ଗାମାଧବ ନାରାୟଣୀ ମନ୍ଦିରକୁ ବିଜେ କରୁଥିବା ଦିନମାନଙ୍କରେ ବିମଳା ମନ୍ଦିରରେ କେତେକ ବିଶେଷ ନୀତି ପାଳିତ ହୋଇଥାଏ । ଏହିସବୁ ନୀତି ପାଳନ ହେବା ପୂର୍ବରୁ ବିମଳା ମନ୍ଦିରକୁ ନଡିଆ ଛାଞ୍ଚରେ ଘେରାଇ ଦିଆଯାଇଥାଏ । ମହାସପ୍ତମୀ, ମହାଷ୍ଟମୀ ଓ ମହାନବମୀରେ ମା' ବିମଳାଙ୍କର ତ୍ରିଦିନାତ୍ମକ ମହାପୂଜାବିଧି ପାଳନ କରାଯାଏ । ଏହି ସମୟରେ ମା' ବିମଳା ଶ୍ରୀନଅରରୁ ଆସିଥିବା କାଣ୍ଡହେଙ୍ଗୁଳ ଶାଢୀ ପରିଧାନ କରି ଶୁକ୍ଳ ପୁଷ୍ପରେ ବିଭୂଷିତା ହୋଇଥାନ୍ତି । ଶ୍ରୀଜଗନ୍ନାଥଙ୍କ ରାତ୍ର ପହୁଡ ହୋଇ ମନ୍ଦିର ଶୋଧ ହେବା ପରେ ମହାସପ୍ତମୀ, ମହାଷ୍ଟମୀ ଓ ମହାନବମୀର ନିଶାର୍ଦ୍ଧରେ ବିମଳା ମନ୍ଦିର ନିକଟରେ ଅସ୍ଥାୟୀ ପରିସରରେ ମାଛବେସର ଓ ଖେଚୁଡି ରାନ୍ଧି ବିମଳାଙ୍କ ସେବକ ବିମଳା ମନ୍ଦିର ଜଗମୋହନରେ ଭୋଗଲାଗି କରିଥାନ୍ତି ।

ଷୋଳପୂଜା ଅବସରରେ ବିମଳାଦେବୀଙ୍କୁ ବିଭିନ୍ନ ଦିବସରେ ଭିନ୍ନ ଭିନ୍ନ ବେଶରେ ବିଭୂଷିତ କରାଯାଇଥାଏ । ବିମଳା ଦେବୀଙ୍କର ଷୋଳପୂଜା ଏବଂ ଦୁର୍ଗାମାଧବ ଉପାସନା ଦଶହରା ଦିନ ସମାପ୍ତ ହୁଏ ।

ମାତୃଶକ୍ତି ପରମ ବୈଷ୍ଣବୀ ମା' ବିମଳା ଦେବୀଙ୍କ ଷୋଳପୂଜା ସମୟରେ ବିମଳା ମନ୍ଦିରରେ ନାରୀମାନଙ୍କର ପ୍ରବେଶ ନିଷେଧ । ମା' ବିମଳାଦେବୀଙ୍କ ଷୋଡଶ ଦିନାତ୍ମକ ଶାରଦୀୟ ମହୋତ୍ସବର ଷୋଳ ଦିନ ଯାକ ମା' ବିମଳା ଦେବୀଙ୍କ ଦର୍ଶନରୁ ନାରୀମାନେ ବଞ୍ଚିତ ।

ଶାରଦୀୟ ଦେବୀପୂଜା ଉତ୍ସବରେ ଶ୍ରୀକ୍ଷେତ୍ର ପୁରୀରେ ବିଭିନ୍ନ ସାହି ଓ ଜାଗା ଆଖଡାରେ ମୃଣ୍ମୟୀ ଦେବୀ 'ଗୋସାଣୀ' ପୂଜାର୍ଚ୍ଚନା ହୁଏ । ଦେବୀ ପ୍ରଥମେ ଦୁର୍ଗା, ପରେ ଉଗ୍ରଚଣ୍ଡୀ ଓ ଶେଷରେ ଭଦ୍ରକାଳୀ ରୂପରେ ମହିଷାସୁରକୁ ବଧ କରି ଥିବାରୁ ଦେବୀଙ୍କର ସେହି ଉଗ୍ରଶକ୍ତିମାନଙ୍କ ବିଭିନ୍ନ ପ୍ରତୀକଙ୍କୁ ଗୋସାଣୀ ରୂପରେ ପୂଜା କରାଯାଇଥାଏ । ବିରାଟ ଆକାରର ଦେବୀଙ୍କର ଉଗ୍ରମୂର୍ତ୍ତିଙ୍କ ପ୍ରତୀକ ମୃଣ୍ମୟୀ 'ଗୋସାଣୀ' ମୂର୍ତ୍ତି ଶୋଳ, ଜରି, ଜମ୍ଭୁରାରେ ନିର୍ମିତ କମନୀୟ ଅଳଙ୍କାର ଓ ମୁକୁଟ ବିଭୂଷିତ ହୋଇ ମହାସପ୍ତମୀ, ମହାଷ୍ଟମୀ ଓ ମହାନବମୀରେ ପୂଜା ପାଆନ୍ତି ।

ବିଭିନ୍ନ ଆକାର ଓ ଭଙ୍ଗୀର ବିଶାଳ ଚତୁର୍ଭୁଜା, ଅଷ୍ଟଭୁଜା, ଦଶଭୁଜା 'ଗୋସାଣୀ' ମୂର୍ତ୍ତିଙ୍କୁ ବିଭିନ୍ନ ପୂଜାମଣ୍ଡପରେ କେଉଁଠାରେ ନିଶଙ୍ଖୁଡି, ଅନ୍ୟ କେଉଁଠାରେ ଶଙ୍ଖୁଡି ଓ ଆମିଷ ଭୋଗ ଲାଗି ହୁଏ । ଭିନ୍ନ ଭିନ୍ନ ନାମରେ 'ଗୋସାଣୀ'ମାନେ ବିଭିନ୍ନ ପୂଜାମଣ୍ଡପରେ ବିରାଜମାନ ହୋଇଥାନ୍ତି ।

**କାକୁଡିଖାଇ ଗୋସାଣୀ:** ମା' ବିମଳାଙ୍କ ଚଳନ୍ତି ପ୍ରତିମା କାକୁଡିଖାଇ 'ଗୋସାଣୀ' ଶ୍ରୀକ୍ଷେତ୍ରରେ ବିଜେ ହେଉଥିବା ଗୋସାଣୀମାନଙ୍କର ମା' ବୋଲି ବିଶ୍ୱାସ କରାଯାଏ । ଶ୍ରୀମନ୍ଦିର ସିଂହଦ୍ୱାରଠାରୁ ସ୍ୱର୍ଗଦ୍ୱାର ରାସ୍ତାର ପେଜନଳା ଛକରେ ଦଶଭୁଜା କାକୁଡିଖାଇ ଗୋସାଣୀ ବିଜେ ହୁଅନ୍ତି । ଶ୍ରୀବଳଭଦ୍ରଙ୍କ ଦାରୁରେ ପ୍ରସ୍ତୁତ ହୋଇଥିବା କୀଳାକୁ ଆଧାର କରି ନିର୍ମିତ ଏହି ଗୋସାଣୀ ଦଶଭୁଜରେ ଧାରଣ କରିଥାନ୍ତି, ଶଙ୍ଖ, ଚକ୍ର, ଖଣ୍ଡା, ଖର୍ପର, ପାଶ, ଅଙ୍କୁଶ, ଧନୁ, ତୀର, ତ୍ରିଶୂଳ, ସର୍ପ ଓ ଢାଲ । ମହାସପ୍ତମୀ, ମହାଷ୍ଟମୀ ଓ ମହାନବମୀ ଦିନ ମା'ଙ୍କୁ ଭୋଗ କରାଯାଏ ଶଙ୍ଖୁଡି ଓ ଆମିଷ । କିନ୍ତୁ ମାଛର ମୁଣ୍ଡ ଓ ଲାଞ୍ଜ ଭୋଗ କରାଯାଏ ନାହିଁ । ସାତସାହିର ପନ୍ତି ଗ୍ରହଣ କରି ଦଶହରା ନିଶାର୍ଦ୍ଧରେ କାକୁଡିଖାଇ ଗୋସାଣୀଙ୍କର ବିସର୍ଜନ ଭସାଣୀ ହୁଏ ମୃଷା ନଈର ଏକ ଅଘାଟ ବା ଅଣଘାଟରେ । କାକୁଡିଖାଇ ଗୋସାଣୀଙ୍କର ଚାନ୍ଦିମେଢ ବେଶ ଆକର୍ଷଣୀୟ ।

**(ଜହ୍ନିଖାଇ) ଗୋସାଣୀ:** ଦୋଳମଣ୍ଡପ ସାହି ଜହ୍ନିମୁଣ୍ଡିଆର ପ୍ରାୟ ୨୩ ଫୁଟ ଉଚ୍ଚତା ବିଶିଷ୍ଟ ଜହ୍ନିମୁଣ୍ଡିଆ ଜହ୍ନିଖାଇ





ଗୋସାଣୀ ଦଶଭୁଜରେ ଧାରଣ କରିଥାନ୍ତି ଚକ୍ର, ଶର, ଖଣ୍ଡା, ଶକ୍ତି, ତ୍ରିଶୂଳ, ସର୍ପ, ଢାଲ, କେଶଗୁଚ୍ଛ, ଅଙ୍କୁଶ ଓ ଧନୁ । ଜହ୍ନିଖାଇ ଗୋସାଣୀଙ୍କୁ କେବଳ ଶୀତଳ ବା ନିଶଙ୍ଖୁଡି ଭୋଗ ଲାଗି ହୁଏ ।

**ବାରବାଟୀ ଗୋସାଣୀ:** ହରଚଣ୍ଡୀ ସାହି ଓ ମଣିକର୍ଣ୍ଣିକା ସାହିର ବାରବାଟୀ ଜାଗା ପରିସରରେ ବିଜେ ହୁଅନ୍ତି ବାରବାଟୀ ଗୋସାଣୀ । ପ୍ରାୟ ୩୦ ଫୁଟ ଉଚ୍ଚତାର ଏହି ବିଶାଳକାୟ ଗୋସାଣୀ ଅଷ୍ଟଭୁଜରେ ଧାରଣ କରିଥାନ୍ତି ତ୍ରିଶୂଳ, ଶଙ୍ଖ, ଚକ୍ର, ଗଦା, ଧନୁ, ତୀର, ସର୍ପ, ଖଣ୍ଡା । ପୁରୀର ସବୁଠାରୁ ବଡ ଏହି ଗୋସାଣୀ ହେଉଛନ୍ତି ମହିଷାସୁର ସହ ଯୁଦ୍ଧ ଆରମ୍ଭ ସମୟର ଦେବୀଙ୍କ ପ୍ରତୀକ ମୂର୍ତ୍ତି । କେବଳ ମହାଷ୍ଟମୀ ଦିନ ବାରବାଟୀ ଗୋସାଣୀଙ୍କୁ ଆମିଷ ଭୋଗ ହୁଏ । ମହାନବମୀ ଦିନ ପ୍ରତ୍ୟୁଷରେ ଶ୍ରୀକ୍ଷେତ୍ରର ସାତ ସାହିର ସାନ ପିଲାମାନଙ୍କୁ ମା'ଙ୍କ ପ୍ରସାଦ ସେବନରେ ଆପ୍ୟାୟିତ କରାଯାଏ । ମହିଷାସୁରକୁ ବଧ କରୁଥିବା ଏହି ଗୋସାଣୀଙ୍କୁ ପାରମ୍ପରିକ ପ୍ରାକୃତିକ ରଙ୍ଗରେ ରଙ୍ଗ କରାଯାଇଥାଏ । ଯେଉଁ ରଙ୍ଗରେ ଶ୍ରୀବିଗ୍ରହମାନଙ୍କର ବନକ ଲାଗି ହୁଏ, ସେହି ପ୍ରକାର ପ୍ରାକୃତିକ ରଙ୍ଗରେ ବାରବାଟୀ ଗୋସାଣୀଙ୍କର ରଙ୍ଗ ହୋଇଥାଏ । କୌଣସି ରାସାୟନିକ ରଙ୍ଗ ବ୍ୟବହାର ହୁଏନାହିଁ ।

**ଗେଲବାଇ ଓ ବନଦୁର୍ଗା ଗୋସାଣୀ:** ମଣିକର୍ଣ୍ଣିକା ସାହିର ଅଷ୍ଟଭୁଜା ଗେଲବାଇ ଗୋସାଣୀ ମହିଷାସୁର ବେକମୋଡି ବଧ କରୁଥିବା ମୂର୍ତ୍ତି । ଗେଲବାଇଙ୍କୁ ଶଙ୍ଖୁଡି ଓ ଆମିଷ ଭୋଗ ହୁଏ । ବନଦୁର୍ଗା ଗୋସାଣୀ ଚତୁର୍ଭୁଜା । କେବଳ ନିରାମିଷ ଭୋଗ ଲାଗିହୁଏ ବନଦୁର୍ଗା ଗୋସାଣୀଙ୍କୁ ।

**ଶୂନ୍ୟ ଗୋସାଣୀ:** ମାଟିମଣ୍ଡପ ସାହି ଉତ୍ତରକାଳୀ ଠାକୁରାଣୀଙ୍କ ପ୍ରତୀକ ଅଷ୍ଟଭୁଜା ଶୂନ୍ୟ ଗୋସାଣୀଙ୍କ ଉଚ୍ଚତା ପ୍ରାୟ ୧୭ଫୁଟ । ଶୂନ୍ୟରେ ରହି ମହିଷାସୁର ସହ ଯୁଦ୍ଧ କରି ମୁଣ୍ଡମୋଡା ମହିଷାସୁର ଉପରେ ବିଜେ କରିଥିବା ଶୂନ୍ୟ ଗୋସାଣୀ ଅଷ୍ଟଭୁଜା । ଶୀତଳ ଭୋଗ ଓ ଶଙ୍ଖୁଡି ଭୋଗ ହୁଏ ଶୂନ୍ୟ ଗୋସାଣୀଙ୍କୁ ।

**ଭୋଗଜାଗା ଗୋସାଣୀ:** ମାଟିମଣ୍ଡପ ସାହିର ଭୋଗଜାଗା ପରିସରରେ ହରଚଣ୍ଡୀଙ୍କ ଅବତାର ଅଷ୍ଟଭୁଜା ଭୋଗଜାଗା ଗୋସାଣୀ ପୂଜା ପାଆନ୍ତି । ପ୍ରାୟ ୧୬ ଫୁଟ ଉଚ୍ଚ ଏହି ଗୋସାଣୀ ମହିଷାସୁରର ମୁଣ୍ଡ ମୋଡି ବଧ କରୁଥିବାର ମୂର୍ତ୍ତି ।

**ବାଲିସାହି ଜହ୍ନିଖାଇ ଗୋସାଣୀ:** ବାଲିସାହି କଦମ୍ବ ଗଡ ଜାଗାଘର ନିକଟରେ ଦଶଭୁଜା ଜହ୍ନିଖାଇ ଗୋସାଣୀ ବିଜେ ହୁଅନ୍ତି । ମହିଷାସୁରକୁ ବଧ କରୁଥିବା ଗୋସାଣୀ ମୂର୍ତ୍ତି ନିକଟରେ ମହିଷର ମୁଣ୍ଡଟି ଅଲଗା ହୋଇ ପଡିଥାଏ । ଶିତଳ, ଶଙ୍ଖୁଡି ଓ ଆମିଷ ଭୋଗ ଲାଗି ହୁଏ ।

ଏହିସବୁ ଗୋସାଣୀଙ୍କ ବ୍ୟତୀତ ପୁରୀର ଅନ୍ୟ ସ୍ଥାନମାନଙ୍କରେ ଚକ୍ରକୋଟ, ମହତେଶ୍ୱର, ଚାମୁଣ୍ଡା, ହଜୁରୀ, ପଣାପିଆ ଆଦି ବହୁ ଗୋସାଣୀ ମୂର୍ତ୍ତି ପୂଜା ପାଆନ୍ତି ।

ଏହି ସମୟରେ ଗୋସାଣୀ ପୂଜା ସହ ବାଲିସାହି, ହରଚଣ୍ଡୀ ସାହି, ଦୋଳମଣ୍ଡପ ସାହି, ମାର୍କଣ୍ଡେଶ୍ୱର ସାହି ବଡଦାଣ୍ଡର ମାଜଣା ଜାଗା ଆଦି ସ୍ଥାନମାନଙ୍କରେ ଶକ୍ତିର ପ୍ରତୀକ ବିରାଟକାୟ 'ନାଗା' ମୂର୍ତ୍ତିମାନଙ୍କର ପୂଜାର୍ଚ୍ଚନା କରାଯାଇଥାଏ ।

**ନାଗାମୂର୍ତ୍ତି:** ୧. ହରଚଣ୍ଡୀ ସାହି, ୨. ବାଲିସାହି, ୩. ବାସେଳି ସାହି, ୪. ପଶ୍ଚିମଦ୍ୱାର, ୫. ଦୋଳମଣ୍ଡପ ସାହି, ୬. ନରେନ୍ଦ୍ର କୋଣ, ୭. ମାଜଣା ଯାଗା, ୮. ନବ ମହାବୀର, ୯. ପେଣ୍ଠକଟାଠାରେ ବିରାଟ ନାଗାମୂର୍ତ୍ତିମାନ ବିଜେ କରି ପୂଜା ପାଆନ୍ତି । ବୀର ନାଗା ବିଗ୍ରହରେ ଦୁର୍ଗା ଦେବୀଙ୍କର ଆବାହନ କରି ନାଗାଙ୍କୁ ବନଦୁର୍ଗା ମନ୍ତ୍ରରେ ପୂଜାର୍ଚ୍ଚନା କରାଯାଇଥାଏ ।

**ସମ୍ପାତି (ଚଢେଇ):** ମାର୍କଣ୍ଡେଶ୍ୱର ସାହିର ସାତବଖରା ଜାଗା ପକ୍ଷରୁ ସମ୍ପାତି ପୂଜା ହୁଅନ୍ତି । ସମ୍ପାତି ଅରୁଣଙ୍କ ପୁତ୍ର । ନଡା, ସୋଲ, ଜରି ଜମ୍ଫୁରାରେ ପ୍ରସ୍ତୁତ ୧୬ଫୁଟ ଉଚ୍ଚତାର ସମ୍ପାତି ଚଢେଇ ସହ ନଳ, ନୀଳ ଓ ମାର୍ଦ୍ଦଳ ଆଦି ଅଷ୍ଟ ବାନର ମଲ୍ଲମାନେ ବିରାଜମାନ କରିଥାନ୍ତି । ସମ୍ପାତି ଶାରଦୀୟ ପୂଜା ସପ୍ତମୀଠାରୁ ଦଶମୀ ପର୍ଯ୍ୟନ୍ତ କରାଯାଇଥାଏ । କେବଳ ଶୁଖିଲି ଭୋଗ ସମର୍ପିତ ହୁଏ ।

ତ୍ରିଦିନାତ୍ମକ ଗୋସାଣୀ ପୂଜା ଶେଷରେ ବିସର୍ଜନ ନୀତି ପରେ ପ୍ରଥମେ କାକୁଡିଖାଇ ଗୋସାଣୀ ଦଶହରା ଦିନ ରାତିରେ ବିସର୍ଜିତ ହୁଅନ୍ତି । ଏକାଦଶୀ ଦିନ ସନ୍ଧ୍ୟାରେ ବିଭିନ୍ନ ସାହି ଜାଗା ଆଖଡାର ଗୋସାଣୀ ମେଢଗୁଡିକର ମେଳଣ ଶ୍ରୀମନ୍ଦିର ସମ୍ମୁଖରେ ବଡଦାଣ୍ଡରେ ହୁଏ । ପ୍ରଥମେ ବାରବାଟୀ ଗୋସାଣୀ ଓ ପରେ ଜହ୍ନିଖାଇ ଗୋସାଣୀ, ଶୂନ୍ୟଗୋସାଣୀ, ଭୋଗଜାଗା, ଚକ୍ରକୋଟ, ପଣାପିଆ, ମହାସୁଆର, ମହତେଶ୍ୱରୀ, ହଜୁରୀ ଆଦି ଗୋସାଣୀ ମେଢ ବର୍ଣ୍ଣାଢ୍ୟ ପଟୁଆରରେ ଆସି ସିଂହଦ୍ୱାରଠାରେ ସମବେତ ହୁଅନ୍ତି । ଗୋସାଣୀଙ୍କ ପରେ ପରେ ଶକ୍ତିର ପ୍ରତୀକ 'ନାଗା' ମେଢଗୁଡିକ ଆସି ସିଂହଦ୍ୱାର ଚକଡାରେ ବିଜେ ହୁଅନ୍ତି । ସମ୍ପାତି, ରାବଣର କୈଳାସ ଟେକା ତୋରଣ ଇତ୍ୟାଦି ପରେ ପରେ



ଆସନ୍ତି । ମିଶ୍ର ସାହି ବୁଢାବୁଢୀ ନୃତ୍ୟ ଓ ଅନ୍ୟ ସାହିମାନଙ୍କରୁ ବିଭିନ୍ନ ନୃତ୍ୟ ମେଢ ଆସି ନୃତ୍ୟ ପ୍ରଦର୍ଶନ କରନ୍ତି । ଗୋସାଣୀ ମେଢମାନଙ୍କୁ ବିଳମ୍ବିତ ରାତ୍ରିରେ ଜାକଜମକରେ ପଟୁଆରରେ ନେଇ ନରେନ୍ଦ୍ରକୋଣ ଦେଇ ମୂଷା ନଈର ଦେବୀଘାଟରେ ବିସର୍ଜନ କରାଯାଇଥାଏ । ଶ୍ରୀମନ୍ଦିରରେ ମହାଦୀପ ଉଠିବା ପରେ ଗୋସାଣୀମାନଙ୍କର ବିସର୍ଜନ ପଟୁଆର ସିଂହଦ୍ୱାରଠାରୁ ବାହାରିଥାଏ ।

ଦଶହରା ଦିନ ଶ୍ରୀଜଗନ୍ନାଥଙ୍କର ବିଜୟ ଉତ୍ସବ ପାଳିତ ହୋଇଥାଏ । ଶ୍ରୀଜୀଉମାନଙ୍କର ଅବକାଶ ନୀତି ପରେ ଚନ୍ଦନଲାଗି ହୁଏ । ଶ୍ରୀବିଗ୍ରହମାନେ ନୂତନ ବସ୍ତ୍ର ଓ ବିବିଧ ସ୍ୱର୍ଣ୍ଣ ଅଳଙ୍କାର ଲାଗି ହୋଇ ସୁନାବେଶରେ ବିଭୂଷିତ ହୁଅନ୍ତି । ଗୋପାଳବଲ୍ଲଭ ଓ ସକାଳ ଧୂପ ଶେଷ ହେବା ପରେ ଭଣ୍ଡାର ଘର ଦ୍ୱାରଦେଶରେ ପୂଜାରେ ବସିଥିବା ହଳ, ମୂଷଳ, ତଡଗୀ, ଶଙ୍ଖ, ଚକ୍ର ଆଦି ଆୟୁଧମାନଙ୍କୁ ସ୍ନାନ କରାଯାଇ ଘଣ୍ଟ, ଘଣ୍ଟା, ଛତି, କାହାଳୀ ସହ ପଟୁଆରରେ ତିନିଥର ଶ୍ରୀମନ୍ଦିର ପ୍ରଦକ୍ଷିଣ କରାଯିବା ପରେ ରତ୍ନସିଂହାସନରେ ବିଜେ କରାଯାଏ । ଶ୍ରୀବଳଭଦ୍ର ହଳ, ମୂଷଳ, ମା' ସୁଭଦ୍ରା ତଡଗୀ ଏବଂ ଶ୍ରୀଜଗନ୍ନାଥ ଶଙ୍ଖ, ଚକ୍ର ଲାଗି ହୁଅନ୍ତି ।

ଦକ୍ଷିଣ ଘରେ ରାମକୃଷ୍ଣ ଓ ମଦନମୋହନ ବୀର ବେଶ ହୁଅନ୍ତି । ଶ୍ରୀଜୀଉମାନଙ୍କର ଆଳତୀ ଶେଷ ହେବା ପରେ ରାମକୃଷ୍ଣ ଓ ମଦନମୋହନ ଦକ୍ଷିଣ ଘରୁ ଏବଂ 'ଦୁର୍ଗାମାଧବ' ଭଣ୍ଡାର ଘରୁ ରତ୍ନସିଂହାସନକୁ ବିଜେ ହୁଅନ୍ତି । ଶ୍ରୀଜୀଉମାନଙ୍କର ଆଳତୀ ଶେଷ ହେବା ପରେ ରାମକୃଷ୍ଣ ଓ ମଦନମୋହନ ଦକ୍ଷିଣ ଘରୁ ଏବଂ 'ଦୁର୍ଗାମାଧବ' ଭଣ୍ଡାର ଘରୁ ରତ୍ନସିଂହାସନକୁ ବିଜେ ହୁଅନ୍ତି । ଶ୍ରୀଜୀଉଙ୍କଠାରୁ ଆଜ୍ଞାମାଳ ପାଇ ରାମକୃଷ୍ଣ ପାଲିଙ୍କିରେ, ମଦନମୋହନ ବିମାନରେ ଏବଂ ଦୁର୍ଗାମାଧବ ରଥ ବିମାନରେ ବିଜେ ହୋଇ ଜଗନ୍ନାଥ ବଲ୍ଲଭ ମଠ ମହାଖଳାକୁ ବିଜୟଯାତ୍ରା କରନ୍ତି । ସେଠାରେ ଦଶହରା ନୀତି ପାଳିତ ହୋଇ ଶୀତଳ ଭୋଗ ହୁଏ । ବନ୍ଦାପନା ନୀତି ପରେ ଠାକୁରମାନେ ଜଗନ୍ନାଥବଲ୍ଲଭ ମଠରୁ ଶ୍ରୀମନ୍ଦିରକୁ ବାହୁଡା ବିଜେ କରନ୍ତି । ରାମକୃଷ୍ଣ ଓ ମଦନମୋହନ ଦକ୍ଷିଣ ଘରେ, ଦୁର୍ଗା ଭଣ୍ଡାର ଘରେ ଏବଂ ମାଧବ ରତ୍ନସିଂହାସନରେ ଶ୍ରୀଜଗନ୍ନାଥଙ୍କ ବାମ ପାର୍ଶ୍ୱରେ ବିଜେ ହୋଇଥାନ୍ତି । ଏହି ବିଜୟ ଉତ୍ସବ ମାଙ୍ଗଳିକ କାଣ୍ଡୋତ୍ସବ ନାମରେ ଖ୍ୟାତ ।

ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ ଶ୍ରୀମନ୍ଦିରରେ ଶ୍ରୀଜୀଉମାନଙ୍କର ରାଧାଦାମୋଦର ବେଶ ହୁଏ । ଏହି ଦିନଠାରୁ ବଡଦେଉଳରେ 'ବାଳଭୋଗ' ବା ବାଳଧୂପ ଆରମ୍ଭ ହୁଏ ଓ କାର୍ତ୍ତିକ ହବିଷ୍ୟାଳିମାନେ କାର୍ତ୍ତିକ ବ୍ରତ ପାଳନ ଶୁଭାରମ୍ଭ କରିଥାନ୍ତି ।

ଶ୍ରୀକ୍ଷେତ୍ର ପୁରୀରେ ଶାରଦୀୟ ଦେବୀ ପୂଜା ଏହିପରି ଅନନ୍ୟ ପରମ୍ପରାକ୍ରମେ ଶାସ୍ତ୍ରୀୟ ବିଧିବିଧାନରେ 'ଦୁର୍ଗାମାଧବ ଉପାସନା' ଏବଂ 'ଗୋସାଣୀ ଯାତ୍ରା' ଆନନ୍ଦ ଉଲ୍ଲାସରେ ପାଳିତ ହୁଏ । ସମାଜର ସବୁ ବର୍ଗର ଲୋକଙ୍କ ସହଯୋଗରେ ଏହି ଶାରଦୀୟ ସାର୍ବଜନୀନ ମହୋତ୍ସବ ପାଳନ କରାଯାଇଥାଏ ।

ଏନ୍‌-୧/୧୯୭
ଆଇଆରସି ଭିଲେଜ
ଭୁବନେଶ୍ୱର-୧୫



# ଓଡ଼ିଶା ସରକାରୀ ମୁଦ୍ରଣାଳୟ ଅତୀତ ଓ ବର୍ତ୍ତମାନ

ହୃଦାନନ୍ଦ ବେହେରା

ଊନବିଂଶ ଶତାବ୍ଦୀ ସମୟରେ ବ୍ରିଟିଶ୍ ସରକାର ନିଜର ଶାସନଗତ ସୁବିଧା ପାଇଁ ଓଡ଼ିଶାର ସରହଦ ସୀମାକୁ ଗ୍ରହଣ ନକରି ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବିହାର ଓ ବଙ୍ଗ ପ୍ରଦେଶ ସହିତ ମିଶାଇ ଦେଇଥିଲେ। ସେମାନେ ଓଡ଼ିଆ ଭାଷା ଓ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ମାନ୍ୟତା ଦେବାକୁ ପ୍ରସ୍ତୁତ ନଥିଲେ। କିନ୍ତୁ ଇଂରେଜମାନଙ୍କର ଏହି ନିଷ୍ପତ୍ତିକୁ ଓଡ଼ିଶାର ତତ୍କାଳୀନ ବହୁ ମାନ୍ୟଗଣ୍ୟ ନେତା, ସାହିତ୍ୟିକ ଓ ସାଧାରଣ ଜନତା ସହଜରେ ଗ୍ରହଣ କରିପାରୁ ନଥିଲେ। ସ୍ୱତନ୍ତ୍ର ଭାଷାଭିତ୍ତିକ ରାଜ୍ୟ ଗଠନ ନିମନ୍ତେ ଓଡ଼ିଶା ତରଫରୁ ଇଂରେଜ ସରକାରଙ୍କ ନିକଟରେ ସଦାସର୍ବଦା ଦାବୀ ହୋଇ ଆସୁଥିଲା। କୁଳବୃଦ୍ଧ ମଧୁସୂଦନ ଦାସ, ବୈକୁଣ୍ଠନାଥ ଦେ, ଫକୀର ମୋହନ ସେନାପତି, ମହାରାଜା କୃଷ୍ଣଚନ୍ଦ୍ର ନାରାୟଣ ଦେଓ ପ୍ରଭୃତିଙ୍କ ପ୍ରଗାଢ଼ ଉଦ୍ୟମ ଫଳରେ ୧୯୩୬ ମସିହା ଅପ୍ରେଲ୍ ମାସ ୧ ତାରିଖରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ବା ଓଡ଼ିଶାର ନବଜନ୍ମ ହୋଇଥିଲା ।



୧୯୩୬ ମସିହା ପୂର୍ବରୁ ବିହାରର ପାଟଣା ସେକ୍ରେଟେରିଏଟ୍ ଅଧୀନରେ ଓଡ଼ିଶାର ବହୁ ଅଂଶ ଶାସିତ ହେଉଥିଲା । ଏଣୁ ବିହାରଠାରୁ ଓଡ଼ିଶା ସ୍ୱତନ୍ତ୍ର ଭାବେ ଅଲଗା ହୋଇଯିବାରୁ ସରକାରୀ ସ୍ତରରେ ଓଡ଼ିଶାର ଏକ ପ୍ରେସ୍‌ର ଆବଶ୍ୟକତା ଅନୁଭବ କରି ପାଟଣା ସରକାରୀ ପ୍ରେସ୍‌ରୁ କିଛି ଯନ୍ତ୍ରାଂଶ ଓ କିଛି କର୍ମଚାରୀଙ୍କୁ ଅଣାଯାଇଥିଲା । ସେହି ସମୟରେ ଓଡ଼ିଶାର ରାଜଧାନୀ କଟକ ଥିଲା । ଏଣୁ ଓଡ଼ିଶାର ସେକ୍ରେଟେରୀଏଟ୍ କଟକରେ ଅବସ୍ଥାପିତ ହୋଇଥିଲା ଏବଂ ଓଡ଼ିଶା ସରକାରଙ୍କ ଆବଶ୍ୟକତାକୁ ଅନୁଭବ କରି ସେକ୍ରେଟେରୀଏଟ୍ ନିକଟରେ ପ୍ରେସ୍ ଆରମ୍ଭ ହୋଇଥିଲା। ବର୍ତ୍ତମାନ ଯେଉଁଠାରେ କଟକର ସିଟି ହସ୍‌ପିଟାଲ୍ କାର୍ଯ୍ୟ କରୁଛି, ସେହିଠାରେ ପ୍ରଥମେ ଓଡ଼ିଶା ସରକାରୀ ପ୍ରେସ୍ କାର୍ଯ୍ୟ ଆରମ୍ଭ କରିଥିଲା। ଏହାର କିଛି ଦିନ ପରେ ବର୍କ୍ସବଜାରର ଏକ ଭଡ଼ାଘରକୁ ପ୍ରେସ୍‌କୁ ଉଠାଇ ନିଆଗଲା।

ବର୍ତ୍ତମାନ ଭଳି ସେତେବେଳେ ପ୍ରେସ୍‌ର ନିର୍ଦ୍ଦେଶକ (Director) ପଦବୀ ନଥିଲା। ପ୍ରେସ୍‌ର ପରିଚାଳକ ବା ମୁଖ୍ୟଙ୍କୁ ସୁପରିନ୍‌ଟେଣ୍ଡେଣ୍ଟ୍ କୁହାଯାଉଥିଲା । ଏହି ସମୟରେ ଜଣେ ଗୋରା ସାହେବ C.R. Battersby ପ୍ରେସ୍‌ର ସୁପରିନ୍‌ଟେଣ୍ଡେଣ୍ଟ୍ ହୋଇ ଆସିଥିଲେ। ବୋଧହୁଏ ସେହି ସାହେବ ହିଁ ହେଉଛନ୍ତି ଓଡ଼ିଶା ସରକାରୀ ମୁଦ୍ରଣାଳୟର ପ୍ରଥମ ସୁପରିନ୍‌ଟେଣ୍ଡେଣ୍ଟ୍ । Battersbyଙ୍କ ପରେ ୧୯୪୦ ମସିହାରେ Md. Siddique

ପ୍ରେସ୍‌ର ପରିଚାଳନା ଦାୟିତ୍ୱ ହାତକୁ ନେଇ ସୁପରିନ୍‌ଟେଣ୍ଡେଣ୍ଟ୍ ରୂପେ ପ୍ରେସ୍‌ରେ କାର୍ଯ୍ୟ ଆରମ୍ଭ କରିଥିଲେ। ସେ ଓଡ଼ିଶାରେ ବେଶୀ ଦିନ ଅବସ୍ଥାନ କରି ନଥିଲେ। ସେହି ୧୯୪୦ ମସିହାରେ ସାମୁସୁଲ୍ ହୁଦା ଖାଁ ଓଡ଼ିଶା ସରକାରୀ ପ୍ରେସ୍‌ର କାର୍ଯ୍ୟଭାର ହାତକୁ ନେଇ ସୁପରିନ୍‌ଟେଣ୍ଡେଣ୍ଟ ରୂପେ କାର୍ଯ୍ୟରେ ଯୋଗ ଦେଇଥିଲେ। ସେ ୧୯୪୦ ମସିହାରୁ ୧୯୬୦ ମସିହା ପର୍ଯ୍ୟନ୍ତ ପ୍ରେସ୍‌ର ମୁଖ୍ୟ ଭାବେ କାର୍ଯ୍ୟ କରିଥିଲେ। ତାଙ୍କ ସମୟରୁ ହିଁ ପ୍ରେସ୍‌ର ଉତ୍‌ଥାନ ହୋଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବୃକ୍ଷ ଦୁଇଟି ବୀଜପତ୍ରରୁ ଆରମ୍ଭ ହୋଇ ଯେପରି ବୃହତ୍ ଦ୍ରୁମରେ ପରିଣତ ହୁଏ, ଠିକ୍ ସେହିପରି ସରକାରୀ ପ୍ରେସ୍ ଅତି କ୍ଷୁଦ୍ରରୁ ବୃହତ୍ ହୋଇ ଏସିଆ ମହାଦେଶରେ ସର୍ବବୃହତ୍ ପ୍ରେସ୍‌ରେ ପରିଣତ ହୋଇପାରିଛି। ବକ୍ସିବଜାରରେ ଯେଉଁ ଭଡ଼ା ଘରେ ପ୍ରେସ୍‌ଟି ଆରମ୍ଭ ହୋଇଥିଲା, ସେହି ଘରଟି ପ୍ରେସ୍ ହେବା ପାଇଁ ଉପଯୁକ୍ତ ନ ଥିଲା। ସ୍ଥାନ ଅଭାବ ହେବାରୁ ପ୍ରେସ୍‌ର ବିଭିନ୍ନ ବିଭାଗକୁ ସହରର ବିଭିନ୍ନ ସ୍ଥାନରେ ଘର ଭଡ଼ା ନିଆଯାଇ କାମ ଚାଲୁଥିଲା। ବିଭିନ୍ନ ସ୍ଥାନରେ ପ୍ରେସ୍‌ରେ କାର୍ଯ୍ୟ ଚାଲୁ ଥିବାରୁ କାମ ସୁଚାରୁ ରୂପେ କରିବା ସହଜ ହେଉ ନଥିଲା। ସରକାରଙ୍କ ବିଭିନ୍ନ ପ୍ରକାର ଫର୍ମ ମୁଦ୍ରଣ ଜରୁରୀ ହେବାରୁ ଉକ୍ତ ଫର୍ମଗୁଡ଼ିକ ଏହି ପ୍ରେସ୍‌ରେ ଛପା ହେଉଥିଲା । ଫର୍ମଗୁଡ଼ିକ ସୁରୁଖୁରୁରେ ଓ ଠିକ୍ ସମୟରେ ଛାପି ସରକାରଙ୍କୁ ଯୋଗାଇ ଦେବା ପାଇଁ ପ୍ରେସ୍‌ର ଉନ୍ନତିକରଣର ଆବଶ୍ୟକତା ତତ୍‌କାଳୀନ ସୁପରିନ୍‌ଟେଣ୍ଡେଣ୍ଟ୍ ଅନୁଭବ କରିଥିଲେ। ତାଙ୍କ ପ୍ରଚେଷ୍ଟାରେ ପ୍ରେସ୍‌ର ବିଭିନ୍ନ ପ୍ରକାର ଉନ୍ନତିର ଅୟମାରମ୍ଭ ହୋଇଥିଲା। ଏଥିପାଇଁ ତାଙ୍କୁ ବହୁ ବାଧାବିଘ୍ନ ଓ ସମାଲୋଚିତ ହେବାକୁ ମଧ୍ୟ ପଡ଼ିଥିଲା। ସମସ୍ତ ବାଧାବିଘ୍ନ ସତ୍ତ୍ୱେ ସରକାରଙ୍କ ଅର୍ଥ ବିଭାଗ ତରଫରୁ କିଛି ନୂଆ ମେସିନ୍ କ୍ରୟ କରିବା ନିମନ୍ତେ ଅନୁମତି ପ୍ରଦାନ କରାଯାଇଥିଲା ଏବଂ ଏହି ଅର୍ଥରେ କିଛି ନୂଆ ମୁଦ୍ରଣ ଯନ୍ତ୍ର କିଣା ହୋଇଥିଲା। ସେତେବେଳେ ପ୍ରେସ୍ ପ୍ରାୟ ୨୪ ଘଣ୍ଟା ଖୋଲା ରହୁଥିଲା। ଅର୍ଥାତ୍ ତିନୋଟି ସିଫ୍‌ଟରେ କର୍ମଚାରୀମାନେ କାର୍ଯ୍ୟ କରୁଥିଲେ। ପ୍ରେସ୍‌ରେ ମୁଦ୍ରଣ ମେସିନ୍‌ର ଆବଶ୍ୟକତାକୁ ଅନୁଭବ କରି ଗଡ଼ଜାତ ରାଜାମାନେ ସେମାନଙ୍କର ପ୍ରେସ୍‌କୁ ସରକାରଙ୍କୁ ହସ୍ତାନ୍ତର କରିଥିଲେ। ଫଳରେ ଉକ୍ତ ମେସିନ୍‌ଗୁଡ଼ିକ ବକ୍ସିବଜାରସ୍ଥ ଭଡ଼ାଘରେ ଥିବା ପ୍ରେସ୍‌କୁ ଅଣାଯିବାରୁ ସେଗୁଡ଼ିକୁ ରଖିବା ସମ୍ଭବପର ହୋଇ ନଥିଲା। ଯେଉଁ ମେସିନ୍‌ଗୁଡ଼ିକ ମୁଦ୍ରଣର ସୁବିଧା ଦୃଷ୍ଟିରୁ ଅଣାଯାଇଥିଲା, ସେହି ମେସିନ୍‌ଗୁଡ଼ିକ ବହୁ ପୁରୁଣା ଥିବାରୁ ସେଗୁଡ଼ିକ ମଧ୍ୟରୁ ଅନେକର ଯନ୍ତ୍ରାଂଶ ଖରାପ ହୋଇସାରିଥିଲା। ଯେଉଁ ଉଦ୍ଦେଶ୍ୟ ନେଇ ମେସିନ୍‌ଗୁଡ଼ିକ ଅଣା ହୋଇଥିଲା, ତାହା ପୂରଣ ହୋଇ ପାରିଲା ନାହିଁ। ସେହି ସମୟରେ ପ୍ରେସ୍‌ରେ ଶ୍ରମିକ ସଙ୍ଗଠନ ମଧ୍ୟ ନିଜର ଦାବି ପାଇଁ ଆନ୍ଦୋଳନ ସମୟେ ସମୟେ କରୁଥିଲେ। ଏହିପରି ବିଭିନ୍ନ ପ୍ରକାର ସମସ୍ୟାକୁ ନେଇ ପ୍ରେସ୍‌ର ଉନ୍ନତି ତଥା ପ୍ରେସ୍‌ର ନିଜସ୍ୱ ଭୂମିରେ ପ୍ରେସ୍‌କୁ ସ୍ଥାପନ କରିବା ପାଇଁ ତତ୍‌କାଳୀନ ସୁପରିନ୍‌ଟେଣ୍ଡେଣ୍ଟ୍ ସରକାରଙ୍କ ନିକଟରେ ଦାବୀ ଉପସ୍ଥାପନ କରିଥିଲେ।

ପ୍ରେସ୍‌ର କାମ ବଢ଼ିବା ଦୃଷ୍ଟିକୁ ଅନୁଭବ କରି ଓ କୁଶଳୀ କର୍ମଚାରୀ ପାଇବା ନିମନ୍ତେ ପ୍ରେସ୍ ଭିତରେ "School of Printing and Allied Trades" ନାମରେ ଏକ ଶିକ୍ଷାନୁଷ୍ଠାନ ଗଢ଼ି ଉଠିଲା। ବର୍ତ୍ତମାନ ମଧ୍ୟ ଉକ୍ତ ଶିକ୍ଷାନୁଷ୍ଠାନ ପ୍ରେସ୍ ମଧ୍ୟରେ କାର୍ଯ୍ୟ କରୁଛି। ପ୍ରତିବର୍ଷ ଅନେକ ଶିକ୍ଷାନବିଶ ଏଠାରେ ସରକାରଙ୍କ ତରଫରୁ ଷ୍ଟାଇପେଣ୍ଡ୍ ପାଇ ଶିକ୍ଷା ଗ୍ରହଣ କରି ଭାରତର ବିଭିନ୍ନ ସ୍ଥାନରେ ନିଯୁକ୍ତି ପାଇପାରୁଛନ୍ତି ଓ ସରକାରୀ ମୁଦ୍ରଣାଳୟରେ ମଧ୍ୟ ନିଯୁକ୍ତି ପାଉଛନ୍ତି।

ସମୟ ଥିଲା ସରକାରୀ ପ୍ରେସ୍ ଓଡ଼ିଶା ସରକାରଙ୍କର ଏକ ମୁଖ୍ୟ ଶିଳ୍ପ ରୂପେ ଗଣା ହେଉଥିଲା। ସରକାରଙ୍କ ତରଫରୁ ପ୍ରେସ୍‌ର ଆନୁଷଙ୍ଗିକ ସମସ୍ୟାକୁ ଅନୁଭବ କରି କଟକର ପୂର୍ବ ଭାଗରେ ଥିବା ଖପୁରିଆ ଶିଳ୍ପାଞ୍ଚଳରେ ପ୍ରେସ୍ ସ୍ଥାପନ ନିମନ୍ତେ ଜାଗା ଯୋଗାଇ ଦିଆଗଲା। ଏହାପରେ ପ୍ରେସ୍‌ର କୋଠାବାଡ଼ିର ନିର୍ମାଣ ନିମନ୍ତେ ତତ୍‌କାଳୀନ ସୁପରିନ୍‌ଟେଣ୍ଡେଣ୍ଟ୍ S.H. Khan ମହୋଦୟ ତାଙ୍କ ଅଧସ୍ତନ ଅଫିସରଙ୍କ ସହିତ ଆଲୋଚନା ଆରମ୍ଭ କରିଥିଲେ। ବିଶେଷ କରି ସେତେବେଳେ କାର୍ଯ୍ୟ କରୁଥିବା ଡେପୁଟୀ ସୁପରିନ୍‌ଟେଣ୍ଡେଣ୍ଟ୍ ଶ୍ରୀଯୁକ୍ତ ଉଦୟନାଥ ମିଶ୍ରଙ୍କୁ ଦାୟିତ୍ୱ ଅର୍ପଣ କରିଥିଲେ। ସେତେବେଳେ ଖପୁରିଆ ଅଞ୍ଚଳ ବର୍ତ୍ତମାନ ଭଳି ଲୋକାରଣ୍ୟ ନଥିଲା କି ବର୍ତ୍ତମାନ ଭଳି ରାସ୍ତାଘାଟର ଉନ୍ନତି ହୋଇ ନଥିଲା। ଉକ୍ତ ଅଞ୍ଚଳଟି ପଙ୍କିଳ କର୍ଦ୍ଦମମୟ ଓ ବିଭିନ୍ନ କଣ୍ଟାବୁଦାରେ ପରିପୂର୍ଣ୍ଣ ଥିଲା। ସେତେବେଳର ଡେପୁଟି ସୁପରିନ୍‌ଟେଣ୍ଡେଣ୍ଟ୍ ଶ୍ରୀଯୁକ୍ତ ମିଶ୍ର ମହୋଦୟ ନିଜର ଆପ୍ରାଣ ଉଦ୍ୟମ ଓ ଚେଷ୍ଟା ବଳରେ ପ୍ରଥମେ ପ୍ରେସ୍‌ର ଗୋଟିଏ ରଫ୍ ପ୍ଲାନ୍ କରିଥିଲେ ଓ ଏହି ଯୋଜନା ହିଁ ବର୍ତ୍ତମାନର ପ୍ରେସ୍‌ର ଏକ ଜ୍ୱଳନ୍ତ ଉଦାହରଣ ଅଟେ। ଶ୍ରୀଯୁକ୍ତ ମିଶ୍ରଙ୍କ ଅକ୍ଳାନ୍ତ ପରିଶ୍ରମ ଓ ଦୂରଦୃଷ୍ଟି ଯୋଗୁଁ ଏବଂ ସୁପରିନ୍‌ଟେଣ୍ଡେଣ୍ଟ୍‌ଙ୍କର ସରକାରୀ ସ୍ତରରେ ଖାତିରି ଥିବାରୁ ବର୍ତ୍ତମାନର ପ୍ରେସ୍ କୋଠା ଓ ପ୍ରେସ୍‌ର ପୂର୍ବ ଭାଗରେ ଥିବା ପ୍ରେସ୍ କଲୋନୀ ନିର୍ମିତ ହୋଇପାରିଥିଲା।





ଖପୁରିଆ ଅଞ୍ଚଳରେ ପ୍ରେସ୍ ନିମନ୍ତେ କିଛି କୋଠାବାଡ଼ି ନିର୍ମିତ ହୋଇଯିବା ପରେ ବକ୍ସିବଜାର ପ୍ରେସ୍‌ରୁ ଯନ୍ତ୍ରପାତି ଅଣାଯାଇ ପ୍ରେସ୍‌ରେ କାମ ଆରମ୍ଭ ହୋଇଥିଲା। କର୍ମଚାରୀ ଓ ଅଫିସରମାନଙ୍କ ନିମନ୍ତେ ନିର୍ମିତ ହୋଇଥିବା କ୍ୱାଟର୍ସମାନଙ୍କରେ କର୍ମଚାରୀ ଓ ଅଫିସର୍‌ମାନେ ଭଡ଼ାଘର ପରିବର୍ତ୍ତେ କ୍ୱାଟର୍ସମାନଙ୍କରେ ରହିଲେ।

ସମୟର ଅତିକ୍ରାନ୍ତ ହେବା ସଙ୍ଗେ ସଙ୍ଗେ ସରକାରୀ ମୁଦ୍ରଣାଳୟ ଖପୁରିଆ ଶିଳ୍ପାଞ୍ଚଳରେ ଦ୍ୱିତଳ ପ୍ରାସାଦରେ ପରିଣତ ହୋଇ ଅଦ୍ୟାବଧି ସଗର୍ବରେ ଦଣ୍ଡାୟମାନ ହୋଇ ରହିଛି। ଏହି ନୂତନ କାର୍ଯ୍ୟାଳୟରେ ସରକାରଙ୍କ ତରଫରୁ ବିଭିନ୍ନ ସମୟରେ ଅର୍ଥ ମଞ୍ଜୁର ହୋଇ ନୂଆ ନୂଆ ମେସିନ୍ କିଣା ହେବା ସଙ୍ଗେ ସଙ୍ଗେ ନୂତନ କର୍ମଚାରୀ ମଧ୍ୟ ନିଯୁକ୍ତି ହେଲେ। ପ୍ରେସ୍ ମଧ୍ୟରେ School of Printingରୁ ପାଶ୍ ହେଉଥିବା ଶିକ୍ଷାନବିଶମାନେ ନିଯୁକ୍ତି ପାଇବାରୁ ମୁଦ୍ରଣର ମାନଦଣ୍ଡର ଉନ୍ନତି ପରିଲକ୍ଷିତ ହେଲା। ଭୁବନେଶ୍ୱରରେ ଥିବା Text Book Press ସରକାରୀ ପ୍ରେସ୍ ଅଧୀନରେ କାର୍ଯ୍ୟ କରୁଥିଲା। ପରେ ଏହା ଶିକ୍ଷା ବିଭାଗ ଅଧୀନକୁ ଚାଲିଗଲା। ସରକାରୀ ପ୍ରେସ୍‌ର ମୁଖ୍ୟ ଦପ୍ତର କଟକରେ ରହିଥିଲେ ମଧ୍ୟ ବିଭିନ୍ନ ଜିଲ୍ଲା ସ୍ତରରେ ଥିବା ସରକାରୀ କାର୍ଯ୍ୟାଳୟମାନଙ୍କୁ ବିଭିନ୍ନ ପ୍ରକାର ଫର୍ମ ଓ ଦଲିଲ୍ ଯୋଗାଇ ଦେବା ନିମନ୍ତେ ରାଜ୍ୟର ବିଭିନ୍ନ ସ୍ଥାନରେ ୮ଟି ଶାଖା ପ୍ରେସ୍ କାର୍ଯ୍ୟ କରୁଛି।

ଶ୍ରୀଯୁକ୍ତ ଖାଁ ସାହେବଙ୍କର ଅବସର ପରେ ଶ୍ରୀଯୁକ୍ତ ଉଦୟନାଥ ମିଶ୍ର ପ୍ରେସ୍‌ର ସୁପରିନ୍‌ଟେଣ୍ଡେଣ୍ଟ୍ ହୋଇଥିଲେ। ଶ୍ରୀଯୁକ୍ତ ମିଶ୍ରଙ୍କ ସମୟରେ ପ୍ରେସ୍‌ର ବହୁତ ଉନ୍ନତି ହୋଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ। ତାଙ୍କର ପ୍ରଗାଢ଼ ଚେଷ୍ଟା ଯୋଗୁଁ ପ୍ରେସ୍‌ର କଳେବରର ବୃଦ୍ଧି ଘଟିଥିଲା। ଶ୍ରୀଯୁକ୍ତ ମିଶ୍ର ୧୯୬୦ ମସିହାରୁ ୧୯୭୨ ମସିହା ପର୍ଯ୍ୟନ୍ତ ସୁପରିନ୍‌ଟେଣ୍ଡେଣ୍ଟ୍ ଭାବେ ପ୍ରେସ୍‌ରେ କାର୍ଯ୍ୟ କରିଥିଲେ। ତାଙ୍କ ସମୟରେ ପ୍ରେସ୍‌ର ଫର୍ମସ୍ ବିଲ୍‌ଡିଙ୍ଗ୍ ନିର୍ମିତ ହୋଇଥିଲା। ଶ୍ରୀଯୁକ୍ତ ଉଦୟନାଥ ମିଶ୍ର ଅବସର ଗ୍ରହଣ କରିବା ପରେ ୧୯୭୨ ମସିହାରେ ଶ୍ରୀଯୁକ୍ତ ଶକ୍ତିପ୍ରସାଦ ମିଶ୍ର ପ୍ରେସ୍‌ର ସୁପରିନ୍‌ଟେଣ୍ଡେଣ୍ଟ୍ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ। ସେ ୧୯୭୨ ମସିହାରୁ ୧୯୮୧ ପର୍ଯ୍ୟନ୍ତ ପ୍ରେସ୍‌ର ମୁଖ୍ୟ ଭାବେ କାର୍ଯ୍ୟ ତୁଲାଇ ଥିଲେ। ତାଙ୍କ ସମୟରେ ସରକାର ପ୍ରେସ୍‌କୁ ଡିରେକ୍ଟୋରେଟ୍‌ରେ ପରିଣତ କରିଥିଲେ ଓ ଶ୍ରୀଯୁକ୍ତ ଶକ୍ତିପ୍ରସାଦ ମିଶ୍ର ପ୍ରେସ୍‌ର ପ୍ରଥମ ଡାଇରେକ୍ଟର ହୋଇଥିଲେ। ସେତେବେଳେ ଏହି ପଦବୀରେ ବରିଷ୍ଠତା କ୍ରମରେ ବୈଷୟିକ ଅଫିସରମାନେ ନିର୍ଦ୍ଦେଶକ ପଦବୀରେ ସରକାରଙ୍କ ତରଫରୁ ନିଯୁକ୍ତି ପାଉଥିଲେ। ଶ୍ରୀ ମିଶ୍ର ନିଜର କାର୍ଯ୍ୟ ଦକ୍ଷତା ଯୋଗୁଁ ସରକାରଙ୍କୁ ତୁଷ୍ଟ କରିପାରିଥିଲେ ଓ I.A.S. ପାଇ ଅନ୍ୟତ୍ର ବଦଳି ହୋଇଯାଇଥିଲେ। ଶ୍ରୀ ମିଶ୍ରଙ୍କ ଅନ୍ୟତ୍ର ବଦଳି ହୋଇଯିବାରୁ ପ୍ରେସ୍‌ର ତତ୍‌କାଳୀନ ବରିଷ୍ଠ ଅଫିସର୍ ଶ୍ରୀଯୁକ୍ତ ଦେବ କୁମାର ରାଉତ ୧୯୮୧ ମସିହାରୁ ୧୯୮୪ ମସିହା ପର୍ଯ୍ୟନ୍ତ ଡାଇରେକ୍ଟର୍ ଭାବେ କାର୍ଯ୍ୟ କରିଥିଲେ। କିନ୍ତୁ ଶ୍ରୀଯୁକ୍ତ ରାଉତଙ୍କର ଅକାଳ ବିୟୋଗ ଘଟିବାରୁ ତାଙ୍କ ସ୍ଥାନରେ ଶ୍ରୀଯୁକ୍ତ ବିଶ୍ୱନାଥ ଶତପଥୀ ଡାଇରେକ୍ଟର ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ। ଶ୍ରୀ ଶତପଥୀଙ୍କ ପରଠାରୁ ବିଭିନ୍ନ ସମୟରେ ନିର୍ଦ୍ଦେଶାଳୟକୁ ବରିଷ୍ଠ ଆଇ.ଏ.ଏସ୍, ଆଇ.ପି.ଏସ୍ ଏବଂ ଓ.ଏ.ଏସ୍ ଅଫିସରମାନେ ଡାଇରେକ୍ଟର ରୂପେ କାର୍ଯ୍ୟରେ ଯୋଗ ଦେଇ ପ୍ରେସ୍‌ର ବିଭିନ୍ନ ଉନ୍ନତି କରିଛନ୍ତି। ମୁଦ୍ରଣର ଗୁଣାତ୍ମକ ଉନ୍ନତି ନିମନ୍ତେ ବୈଷୟିକ ନିର୍ଦ୍ଦେଶକ ପଦବୀ ମଧ୍ୟ ସରକାରଙ୍କ ତରଫରୁ ସୃଷ୍ଟି ହୋଇଛି।

ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ମୁଦ୍ରଣ ଶିଳ୍ପର ମଧ୍ୟ ଅଗ୍ରଗତି ହୋଇ ଚାଲିଛି। ମୁଦ୍ରଣର ଜନକ ଗୁଟେନବର୍ଗଙ୍କ ମୂଳ ପଦ୍ଧତି ଅନୁସାରେ ବର୍ତ୍ତମାନର ମୁଦ୍ରଣ ପଦ୍ଧତି ଦ୍ରୁତଗତିରେ ଆଗେଇ ଚାଲିଛି। ସରକାରୀ ମୁଦ୍ରଣାଳୟରେ ପ୍ରଥମେ ଲେଟର୍ ପ୍ରେସ୍ ମୁଦ୍ରଣ ପଦ୍ଧତିରେ ମୁଦ୍ରଣ କାର୍ଯ୍ୟ ହେଉଥିଲା। ଏହି ପଦ୍ଧତି ଦ୍ୱାରା ମୁଦ୍ରଣ ନିମନ୍ତେ କର୍ମଚାରୀମାନଙ୍କ ଦ୍ୱାରା ଅକ୍ଷର ସଂଯୋଜନା କରାଯାଉଥିଲା। ଏଥି ନିମନ୍ତେ ପ୍ରେସ୍‌ରେ ଅନେକ ଲୋକ କମ୍ପୋଜିଟର ରୂପେ ନିଯୁକ୍ତି ପାଇଥିଲେ। ଲୋକମାନଙ୍କ ଦ୍ୱାରା ଅକ୍ଷର ସଂଯୋଜନ କରିବା ସେତେବେଳେ ସମୟ ସାପେକ୍ଷ ବ୍ୟାପାର ଥିଲା। ଗୋଟିଏ ବହି ମୁଦ୍ରିତ କରିବା ବା ସରକାରୀ ଫର୍ମ ଛାପିବା ନିମନ୍ତେ ଅନେକ ସମୟ ଲାଗୁଥିଲା। ବିଭିନ୍ନ ପ୍ରକାର ମୁଦ୍ରିତଜନିତ ସମସ୍ୟା ଯୋଗୁଁ ଓ ଠିକ୍ ସମୟରେ ମୁଦ୍ରଣ କାର୍ଯ୍ୟ ସମାପନ କରିବା ନିମନ୍ତେ ଅକ୍ଷର ସଂଯୋଜନ ପାଇଁ ମେକାନିକାଲ୍ କମ୍ପୋଜିଙ୍ଗ (Lino Mono) ପ୍ରେସ୍‌ରେ ଆରମ୍ଭ ହୋଇଥିଲା। ମେକାନିକାଲ କମ୍ପୋଜିଙ୍ଗର ବ୍ୟବହାର ସତ୍ତ୍ୱେ ମଧ୍ୟ ସରକାରଙ୍କର ସମସ୍ତ ବିଭାଗୀୟ କାର୍ଯ୍ୟକୁ ସୁଚାରୁ ରୂପେ କାମ କରି ଯୋଗାଇବା କଷ୍ଟକର ହେଉଥିଲା।

୧୯୭୯ ମସିହାରେ ସରକାରୀ ମୁଦ୍ରଣାଳୟରେ ଅଫସେଟ୍ ମୁଦ୍ରଣର ଆରମ୍ଭ ହୋଇଥିଲା। ତତ୍‌କାଳୀନ ଅଫିସର ଶ୍ରୀଯୁକ୍ତ ବ୍ରଜସୁନ୍ଦର ମହାପାତ୍ର ଓ ଶ୍ରୀଯୁକ୍ତ ଧନେଶ୍ୱର ଶତପଥୀଙ୍କ ଉଦ୍ୟମ ଯୋଗୁଁ ମୁଦ୍ରଣାଳୟରେ ଅଫ୍‌ସେଟ୍ ମୁଦ୍ରଣ ଆରମ୍ଭ ହୋଇଥିଲା। ଅବଶ୍ୟ ପରେ ଏହି ଦୁଇଜଣ ଉପ ନିର୍ଦ୍ଦେଶକ

ପଦବୀରେ ଅବସର ନେଇଥିଲେ । ପ୍ରଥମେ School of Printingରେ ଗୋଟିଏ ସିଟ୍‌ଫେଡ୍ (Poligraph-41) ଅଫ୍‌ସେଟ୍ ମେସିନ୍‌ରେ ମୁଦ୍ରଣ କାର୍ଯ୍ୟ ଆରମ୍ଭ ହୋଇଥିଲା । ଯେଉଁ ସମୟରେ ମୁଦ୍ରଣ ବିଦ୍ୟାଳୟରେ ଅଫ୍‌ସେଟ୍‌ର ପ୍ରଚଳନ ଆରମ୍ଭ ହୋଇଥିଲା, ସେହି ସମୟରେ ଓଡ଼ିଶାର ବେସରକାରୀ ପ୍ରେସ୍ ମାଲିକମାନଙ୍କ ପାଇଁ ଏହା ଏକ ସ୍ୱପ୍ନ ସଦୃଶ ଥିଲା । ସରକାରୀ ପ୍ରେସ୍‌ରେ ମୁଦ୍ରଣର ଉନ୍ନତି ପରିଲକ୍ଷିତ ହେବାରୁ ସରକାରଙ୍କ ତରଫରୁ ମୁଦ୍ରିତ ହେଉଥିବା 'ଉତ୍କଳ ପ୍ରସଙ୍ଗ' ଓ 'ଓଡ଼ିଶା ରିଭ୍ୟୁ' ନାମକ ଦୁଇଟି ମାସିକ ପତ୍ରିକା ସରକାରୀ ମୁଦ୍ରଣାଳୟରେ ଛାପିବା ପାଇଁ ସରକାର ନିର୍ଦ୍ଦେଶ ଦେଲେ ଏବଂ ସେବେଠାରୁ ଆଜି ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ଏହା ମୁଦ୍ରିତ ହୋଇଆସୁଅଛି । ଉକ୍ତ ପତ୍ରିକା ଦୁଇଟି ପୂର୍ବରୁ ରାଷ୍ଟ୍ରଭାଷା ପ୍ରେସ୍‌ରେ ମୁଦ୍ରିତ ହେଉଥିଲା । ୧୯୭୨ ମସିହାରେ ମୁଦ୍ରିତ ହୋଇଥିବା 'ଉତ୍କଳ ପ୍ରସଙ୍ଗ' (ଅରବିନ୍ଦ ବିଶେଷାଙ୍କ) ପାଇଁ ସର୍ବଭାରତୀୟ ସ୍ତରରେ ସରକାରୀ ମୁଦ୍ରଣାଳୟ All India Masters Printers Association ଦ୍ୱାରା ଉତ୍କୃଷ୍ଟ ମାନର ମୁଦ୍ରଣ ପାଇଁ ପୁରସ୍କୃତ ମଧ୍ୟ ହୋଇଥିଲା ।

ବିଶେଷ କରି ଅଫ୍‌ସେଟ୍ ମୁଦ୍ରଣର ପ୍ରଚଳନ ଯୋଗୁଁ ସରକାରୀ ପ୍ରେସ୍‌ରେ ମୁଦ୍ରଣର ଏକ ବୈପ୍ଳବିକ ପରିବର୍ତ୍ତନ ଆସିଥିଲା । ସେତେବେଳର ଅଫ୍‌ସେଟ୍ ମୁଦ୍ରଣ ନିମନ୍ତେ କ୍ୟାମେରା, ରିଟଚିଙ୍ଗ ଓ ପ୍ଲେଟ୍‌ମେକିଂ ବିଭାଗ ଗୁରୁତ୍ୱ ବହନ କରୁଥିଲା । ମୁଦ୍ରଣର ବୈଷୟିକ କୌଶଳର ଅଗ୍ରଗତି ସଙ୍ଗେ ସଙ୍ଗେ ସରକାରୀ ମୁଦ୍ରଣାଳୟ ମଧ୍ୟ ଚାହିଦା ମୁତାବକ ମୁଦ୍ରଣ କରିବା ନିମନ୍ତେ ପ୍ରଚେଷ୍ଟା ଜାରି ରଖି ଚାଲିଛି । ବର୍ତ୍ତମାନ ମୁଦ୍ରଣ ଜଗତରେ କମ୍ପ୍ୟୁଟରର ବହୁଳ ବ୍ୟବହାର ହେଉଛି । କମ୍ପ୍ୟୁଟର୍‌ର ବ୍ୟବହାର ଦ୍ୱାରା କମ୍ ଖର୍ଚ୍ଚ ଓ କମ୍ ସମୟରେ ପ୍ରତ୍ୟେକ କାର୍ଯ୍ୟ ସୁଚାରୁ ରୂପେ ସଂପାଦନ ହୋଇପାରୁଛି । ବିଶେଷ କରି ମୁଦ୍ରଣ ଜଗତରେ କମ୍ପ୍ୟୁଟରର ବ୍ୟବହାର ଯୋଗୁଁ ଗୁଣାତ୍ମକ ମାନର ମୁଦ୍ରଣ ଖୁବ୍ କମ୍ ସମୟରେ ହୋଇପାରୁଛି । ୧୯୮୪-୮୫ ମସିହାରେ ସରକାରୀ ମୁଦ୍ରଣାଳୟରେ ମୁଦ୍ରଣର ସହାୟତା ନିମନ୍ତେ କମ୍ପ୍ୟୁଟରର ପ୍ରଚଳନ ଆରମ୍ଭ ହୋଇଥିଲା । ସେତେବେଳର ନିର୍ଦ୍ଦେଶକ କେତେଜଣ କୁଶଳୀ ବୈଷୟିକ କର୍ମଚାରୀଙ୍କୁ ନେଇ କମ୍ପ୍ୟୁଟର ମାଧ୍ୟମରେ ଅକ୍ଷର ସଂଯୋଜନ କରିବା କାର୍ଯ୍ୟ ଆରମ୍ଭ କରିଥିଲେ । ପ୍ରଥମେ ସରକାରୀ ମୁଦ୍ରଣାଳୟକୁ ଅକ୍ଷର ସଂଯୋଜନ ନିମନ୍ତେ ପ୍ରାରମ୍ଭିକ ସ୍ତରରେ ଯେଉଁ କମ୍ପ୍ୟୁଟର୍ ଅଣା ହୋଇଥିଲା, ଉକ୍ତ କମ୍ପ୍ୟୁଟରର ନାମ ଥିଲା 'ଅଟୋଲଜିକ୍' ଫଟୋଟାଇପ୍ ସେଟର୍ । ପୁନଶ୍ଚ ନୂତନ ଭାବେ ଉନ୍ନତ ଧରଣର ଫଟୋ ଟାଇପ୍ ସେଟ୍‌ର ବାହାରିବା ଦ୍ୱାରା ସରକାରୀ ପ୍ରେସ୍‌କୁ ବିଭିନ୍ନ ସମୟରେ ବିଭିନ୍ନ ପ୍ରକାର ଫଟୋ ଟାଇପ୍ ସେଟ୍‌ର୍ ଯଥା- ମନୋଟାଇପ୍ ସିଷ୍ଟମ୍ ୫୧୨, ଡି.ଟି.ପି. ଇତ୍ୟାଦି ଅଣାଯିବା ଦ୍ୱାରା ମୁଦ୍ରଣର ମାନ ବୃଦ୍ଧି ପାଇଥିଲା ।

ବର୍ତ୍ତମାନ ମୁଦ୍ରଣ ଜଗତରେ ବିଶ୍ୱ ସ୍ତରରେ ବୈପ୍ଳବିକ ପରିବର୍ତ୍ତନ ଆସିଛି । ପୁରୁଣା ମୁଦ୍ରଣ ଯନ୍ତ୍ରପାତି ଅଲୋଡ଼ା ହୋଇ ପଡ଼ିଛି । ସରକାରୀ ମୁଦ୍ରଣାଳୟରେ ଅତ୍ୟାଧୁନିକ ମୁଦ୍ରଣ ଯନ୍ତ୍ରପାତି ମାଧ୍ୟମରେ ଛପା କାର୍ଯ୍ୟ ଚାଲୁ ରହିଛି । ବହୁ ଉଚ୍ଚକୋଟୀର ମୂଲ୍ୟବାନ ଅତ୍ୟାଧୁନିକ ମେସିନ୍ ପ୍ରେସ୍‌କୁ ଅଣାଯିବା ଦ୍ୱାରା ମୁଦ୍ରଣର ଗୁଣବତ୍ତାର ଉନ୍ନତି ହୋଇ ଠିକ୍ ସମୟରେ ମୁଦ୍ରଣ କାର୍ଯ୍ୟ ସଂପାଦନ କରିବାରେ ମଧ୍ୟ ସକ୍ଷମ ହୋଇପାରିଛି । ପ୍ରକୃତରେ କହିବାକୁ ଗଲେ, ସରକାରୀ ମୁଦ୍ରଣାଳୟ ସରକାରଙ୍କ ପ୍ରକାଶନ ନିମନ୍ତେ ଏକ ମୁଖ୍ୟ ଅଙ୍ଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ସରକାରଙ୍କର ବିଭିନ୍ନ ପ୍ରକାର ଗୋପନୀୟ ମୁଦ୍ରଣ କାର୍ଯ୍ୟ ଯଥା– ଗେଜେଟ୍, ବଜେଟ୍, ବାଲାଟ୍ ପେପର, ଷ୍ଟାଣ୍ଡି କମିଟି ରିପୋର୍ଟ, ଆକ୍ଟିଭିଟିଜ୍ ରିପୋର୍ଟ ଇତ୍ୟାଦି ଏବଂ ବିଭିନ୍ନ ବିଭାଗର ପ୍ରକାଶନ କାର୍ଯ୍ୟ ସୁରୁଖୁରୁରେ ସମୟୋଚିତ ଭାବେ ସଂପାଦନ କରି ବିଭିନ୍ନ ସରକାରୀ ଦପ୍ତରକୁ ଯୋଗାଇ ଦିଆଯାଇ ପାରୁଛି ।

ବର୍ତ୍ତମାନର ନିର୍ଦ୍ଦେଶକ ଶ୍ରୀଯୁକ୍ତ ଅଭୟ, ଆଇ.ପି.ଏସ୍‌ଙ୍କ ପ୍ରେରଣାରେ ପ୍ରେସ୍ ପରିସର ମଧ୍ୟରେ ଗୋଟିଏ ମୁଦ୍ରଣ ମ୍ୟୁଜିୟମ୍ ସ୍ଥାପିତ ହୋଇପାରିଛି । ବିଗତ ଦିନର ମୁଦ୍ରଣର ଯନ୍ତ୍ରପାତିଗୁଡ଼ିକୁ ସୁଚାରୁ ରୂପେ ସଜାଯାଇ ସାଧାରଣ ଜନତାଙ୍କ ନିମନ୍ତେ ପ୍ରଦର୍ଶନ କରାଯାଇଛି । ଉକ୍ତ ମ୍ୟୁଜିୟମ୍ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ କରକମଳରେ ୨୧.୮.୮୪ ତାରିଖରେ ଉଦ୍‌ଘାଟିତ ହୋଇଯାଇଛି ।

ଓ.ଜି.ପି. ଅଫିସର୍ସ କଲୋନୀ
କ୍ୱାଟର୍ସ ନଂ-ଆଇ.ଭି-୨୩
ମଧୁପାଟଣା, କଟକ-୧୦



# ଓଡ଼ିଶାରେ ଜନଜାତି ମହିଳାଙ୍କ ସ୍ଥିତି ଓ ଭୂମିକା

ଡକ୍ଟର ଦେବାଶିଷ ପାତ୍ର

ପରିଦୃଶ୍ୟମାନ ବିଶ୍ୱ, ଅତିନ୍ଦ୍ରୀୟ କଳ୍ପଲୋକ ଓ ଛଳଛଳ ଦେଶଜ ଦୁଃଖ ଭିତରୁ ଦିଶିଯାଏ ଅସହାୟ ମଣିଷର ମୁହଁ । ସେ ମୁହଁ ପ୍ରାଗୈତିହାସିକ ଗାଁର ନିରବତା ଭିତରୁ ଦିଶୁଥିବା ଡଙ୍ଗର ମଣିଷର ମୁହଁ । ଯିଏ କେବେ ନୀଳ ସଂଜରେ ଗାଏ ପ୍ରୀତିର ପ୍ରଣବ ତ, କେବେ ବାଘର ହେଣ୍ଟାଳ ଭିତରୁ ବଖାଣେ ଅନୁଭୂତିର ସାମସଂଗୀତ । ସାହ୍‌ହୁଲ୍‌ର ଜହ୍ନ, ପୁଷ୍ପବତୀ ମହୁଲଗଛ, ଢୁଙ୍ଗ୍‌ଢୁଙ୍ଗାର ଅନ୍ତର୍ଦାହ, ଦୁଃଖର ଆର୍ଦ୍ରତା, ପାଳଭୂତର ନିଃସଂଗତା, ସଦ୍ୟସ୍ନାତ ଶାଗୁଆନ ଗଛର ପତ୍ରରେ ପ୍ରତିବିମ୍ବିତ ଖରା କହିଦିଏ ଜନଜାତିର ସ୍ମୃତି ସମ୍ବେଦନାର ଅନନ୍ତ ଅନୁଭବ, ଯେଉଁଠୁ ଦିଶିଯାଏ ଥାକ ଥାକ ଛଳନାହୀନ ମନ ଆଉ ଯନ୍ତ୍ରଣାର ଧୂସର ସ୍ଥାପତ୍ୟ । ସତରେ ସମୟ ଯେମିତି ଅଟକି ଯାଇଛି ସେଇଠି । ସେମିତି ଦେଖିଥିଲେ ଆମ ପୂର୍ବଜମାନେ ପ୍ରାକ୍ ସ୍ୱାଧୀନତାର ସମୟରେ ।

ନୃତାତ୍ତ୍ୱିକ ଗବେଷଣା କହେ, ଓଡ଼ିଶାର ସଂସ୍କୃତି ଜନଜାତିର ସଂସ୍କୃତି ସହିତ ସମନ୍ୱିତ ଓ ସମୀକୃତ, ଯେଉଁଠି ଅଛି ଡଙ୍ଗର ଜୀବନ ଚର୍ଯ୍ୟାର ସବୁଜ ସଦିଚ୍ଛା । ପୂର୍ବଘାଟ ପର୍ବତମାଳାର ଧାଡି ଧାଡି ବନସ୍ପତି, ନୀଳାଭ ଆକାଶ, ଅଙ୍କାବଙ୍କା ପେନ୍‌ସିଲ ଗାର ପରି ପ୍ରବହମାନ ଝରଣା ଓଡ଼ିଶାର ଭୂମିକୁ ଜନଜାତିର ଆସ୍ଥାନ ଭାବରେ ମାନ୍ୟତା ଦେଇଛି । ଯେଉଁଠି ରହନ୍ତି ବାଷଠି ପ୍ରଜାତିର ଜନଜାତି । ତନ୍ମଧ୍ୟରୁ ୧୩ ପ୍ରକାରର ଆଦିମ ଜନଜାତି ଗୋଷ୍ଠୀ ପରିମାଣାତ୍ମକ ଓ ଗୁଣାତ୍ମକ ମାପକାଠିରେ ନିଜକୁ ତଉଲେ ଆଉ ସ୍ୱାଭିମାନର ବାର୍ତ୍ତା ଦିଏ ସମଗ୍ର ବିଶ୍ୱକୁ । ଯିଏକି ଗବେଷକଙ୍କ ଦୃଷ୍ଟିରେ 'ଜନଜାତି', 'ଆଦିମଜାତି', 'ଗିରିଜନ', 'ବନବାସୀ', 'ବନଜାତି' ଭାବରେ ପରିଚିତ । ୨୦୧୧ ଜନଗଣନା କହେ, ସମଗ୍ର ଓଡ଼ିଶାରେ ଜନଜାତିଙ୍କ ସଂଖ୍ୟା ୮୧,୪୫,୦୮୧, ଯାହା ଓଡ଼ିଶାର ଜନସଂଖ୍ୟାର ଶତକଡା ୨୨.୧ । ଜନଜାତି ଗୋଷ୍ଠୀର ମହିଳାଙ୍କ ସଂଖ୍ୟା ପୁରୁଷଙ୍କ ତୁଳନାରେ ଅଧିକ, ଯାହା ୧୦୦୦ ପୁରୁଷଙ୍କ ଅନୁପାତରେ ୧୦୧୫ ଅଟେ । ଯେଉଁଠି ସମଗ୍ର ବିଶ୍ୱରେ ପୁରୁଷଙ୍କ ତୁଳନାରେ ମହିଳାଙ୍କ ସଂଖ୍ୟା କମିକମି ଯାଉଛି, ସେଇଠି ଏହି ଅନୁପାତ ନିଶ୍ଚିତ ଭାବରେ ବ୍ୟତିକ୍ରମ କୁହାଯାଇପାରେ । ଏହା ଉଲ୍ଲେଖଯୋଗ୍ୟ ଯେ ସମାଜ ଜୀବନ ନିର୍ବାହର ପ୍ରତ୍ୟେକ ପର୍ଯ୍ୟାୟରେ ଉଭୟ ପୁରୁଷ ଓ ମହିଳା ଅଂଶ ଗ୍ରହଣ କରିଥାନ୍ତି । ଯଦି କେହି କେବେ ଆଦିବାସୀ ଗାଁର ଆଚାର ବ୍ୟବହାର, ଚାଲିଚଳଣ ଆଦି ଦେଖି ଜନଜାତି ଗୋଷ୍ଠୀର ମହିଳାମାନଙ୍କ ପ୍ରସ୍ଥିତି ଓ ଭୂମିକା ବିଷୟରେ ଜ୍ଞାନ ଆହରଣ କରିବାକୁ ଚାହିଁବ, ସିଏ କେବେବି ନିରାଶ ହେବେ ନାହିଁ ।

ଜନଜାତି ସମାଜର ପ୍ରଚଳିତ ସଂସ୍କୃତି ଉଭୟ ପୁରୁଷ ଓ ମହିଳାଙ୍କ ଜୀବନଧାରାକୁ ନିୟନ୍ତ୍ରିତ କରେ । କାରଣ ଉଭୟେ ସମାଜ ଓ ସଂସ୍କୃତି ସହିତ ବିଜଡିତ । ମାତ୍ର ସମାଜତାତ୍ତ୍ୱିକ ଅନୁଧ୍ୟାନ ସମୟରେ ମହିଳା ପ୍ରସ୍ଥିତି ସମ୍ପର୍କରେ ଅନେକ ଉପାଦେୟ ତଥ୍ୟ ଆମ ଦୃଷ୍ଟି ଆକର୍ଷଣ କରେ । ଯଦିଓ ଆଦିବାସୀ ଗାଁଗୁଡିକ ପିତୃକୈନ୍ଦ୍ରିକ, ପତି–ଆବାସିକ ତଥାପି ମହିଳାମାନଙ୍କ ସ୍ଥାନ ନ୍ୟୁନ ନୁହେଁ । ତେବେ ମହିଳା ପ୍ରସ୍ଥିତି ସମ୍ପର୍କରେ ଜାଣିବା ପାଇଁ ଚାରିଗୋଟି ପ୍ରଧାନ ଚାରିତ୍ରିକ ଲକ୍ଷଣ ଉପରେ ଅନୁଧ୍ୟାନ କରିବାକୁ ପଡିଥାଏ । ସେଗୁଡିକ ହେଲା–

(କ) ମହିଳାଙ୍କ ପ୍ରତି ବାସ୍ତବ ବ୍ୟବହାର ପ୍ରଦର୍ଶନ
(ଖ) ବିଧିସମ୍ମତ ପ୍ରସ୍ଥିତି
(ଗ) ଜନସାଧାରଣଙ୍କ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣର ସୁଯୋଗ
(ଘ) ଶ୍ରମଦାନର ଲକ୍ଷଣ ଓ ପରିସର

ସ୍ଥୂଳତଃ ପୁରୁଷ ପ୍ରାଧାନ ସମାଜରେ ମହିଳାଙ୍କ ସ୍ଥିତି ନିମ୍ନ ଓ ମହିଳା ପ୍ରଧାନ ସମାଜରେ ଏହା ଉଚ୍ଚ ହେବା ସ୍ୱାଭାବିକ । ମାତ୍ର ଜନଜାତି ସମାଜରେ ମହିଳାଙ୍କ ପ୍ରସ୍ଥିତି ଓ ଭୂମିକା ପୁରୁଷଙ୍କ

ସହ ତୁଳନା କଲେ ମନେହେବ ସେମାନଙ୍କର ସ୍ଥାନ ପୁରୁଷମାନଙ୍କଠାରୁ ଉଚ୍ଚରେ ।

ଆଦିବାସୀ ଗାଁମାନଙ୍କରେ ରହୁଥିବା ମହିଳାମାନେ ସନ୍ତାନ ଲାଳନ ପାଳନ, ଗୃହ କାର୍ଯ୍ୟ ସମ୍ପାଦନ ସହ ବିଭିନ୍ନ ଅର୍ଥନୈତିକ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶଗ୍ରହଣ କରି ପରିବାରର ଉପାର୍ଜନ ବ୍ୟବସ୍ଥାକୁ ସୁଦୃଢ କରନ୍ତି । ଉଦାହରଣ ସ୍ୱରୂପ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ, ପୋଡୁଚାଷ, ସୋପାନକୃଷି ଓ ସ୍ଥାୟୀକୃଷି କାର୍ଯ୍ୟରେ ସହାୟତା ପ୍ରଦାନ, ଗୃହ ନିର୍ମାଣ ସମୟରେ ଗୃହର କାନ୍ଥ ତିଆରି ଓ ଲିପାପୋଛା କରିବା, ରନ୍ଧାବଢା, ଦୂରସ୍ଥାନରୁ ପାନୀୟଜଳ ସଂଗ୍ରହ, ସନ୍ତାନ ଯତ୍ନ, ହସ୍ତଶିଳ୍ପ ଯଥା: ଖଲିପତ୍ର ଥାଳି ଓ ଦନା ପ୍ରସ୍ତୁତି, ଝାଡୁତିଆରି, ସପ ମସିଣା, ପଟି ବୁଣିବା, ପାରମ୍ପରିକ ତନ୍ତ ସାହାଯ୍ୟରେ ପିନ୍ଧାଲୁଗା ବୁଣିବା ପ୍ରଭୃତି କାର୍ଯ୍ୟରେ ମହିଳାମାନେ ନିୟୋଜିତ ହୋଇଥାନ୍ତି । ଏପରିକି କୃଷି ଉତ୍ପାଦନଗୁଡିକ ବିକ୍ରୀ କରିବା ପାଇଁ ଦୂରଦୂରାନ୍ତର ହାଟକୁ ଯାଇ ତାକୁ ବିକ୍ରୀ କରିବା ସହିତ ଅତ୍ୟାବଶ୍ୟକୀୟ ଜିନିଷଗୁଡିକ କ୍ରୟ କରିଥାନ୍ତି । କୌଣସି ଜନଜାତିର ଗାଁରେ ଜଣେ ଯଦି ଲକ୍ଷ୍ୟ କରେ ତେବେ ମହିଳାମାନଙ୍କ ବହୁମୁଖୀ କାର୍ଯ୍ୟାବଳୀର ଦୃଷ୍ଟାନ୍ତ ସିଏ ପାଇପାରେ । ଗୃହକାର୍ଯ୍ୟ ସମାଧାନ ପରେ ମହିଳାମାନେ ପ୍ରାତ୍ୟହିକ କାର୍ଯ୍ୟସ୍ଥଳୀ ଯିବା ନିମନ୍ତେ ପ୍ରସ୍ତୁତି ହୋଇଥାନ୍ତି । ଗାଁ ନିକଟସ୍ଥ ଜଙ୍ଗଲ କିମ୍ବା କୃଷି କ୍ଷେତ୍ରରେ ନିଜ କାର୍ଯ୍ୟ ଶେଷ କରି ସନ୍ଧ୍ୟା ପୂର୍ବରୁ ଫେରିବା ପରେ ପୁନର୍ବାର ଗୃହ କାର୍ଯ୍ୟରେ ମନୋନିବେଶ କରନ୍ତି ।

ମହିଳାମାନଙ୍କ କାର୍ଯ୍ୟଧାରା ପ୍ରତି ଦୃଷ୍ଟି ଦେଲେ ସେମାନଙ୍କ ନିଷ୍ଠା, ତ୍ୟାଗ, ସହନଶୀଳତା, ନିଷ୍ପତ୍ତି ନେବା ଦକ୍ଷତା, ସୁଚିନ୍ତିତ ପଦକ୍ଷେପ, ଦାୟିତ୍ୱ ଗ୍ରହଣ ଶକ୍ତି, ଅକୁଣ୍ଠିତ ଶ୍ରମଦାନ, ପରିବାର ପରିଚାଳନା ଶକ୍ତି ଇତ୍ୟାଦି ପ୍ରତିଫଳିତ ହୋଇଥାଏ । ସାମାଜିକ ପ୍ରଥାଗୁଡିକ ଅନୁଧ୍ୟାନ କଲେ ଅନୁଭବ କରିହେବ ମହିଳାଙ୍କ ସ୍ଥାନ ଉଚ୍ଚରେ ରହିଛି । ପ୍ରଚଳିତ ପ୍ରଥା ଅନୁଯାୟୀ ବିବାହ ଉପଲକ୍ଷେ ବରପକ୍ଷରୁ କନ୍ୟାପକ୍ଷକୁ କନ୍ୟାସୁନା ବା କନ୍ୟାଝୋଲା ପ୍ରଦାନ କରାଯାଇଥାଏ । ଉକ୍ତ ପ୍ରଥା ମହିଳାଙ୍କ ସାମାଜିକ ପ୍ରସ୍ଥିତି ଓ ପ୍ରତିଷ୍ଠାକୁ ଅଧିକ ସୁଦୃଢ କରେ । ସେହିପରି ଛାଡପତ୍ର କ୍ଷେତ୍ରରେ ଉଭୟ ମହିଳା ଓ ପୁରୁଷଙ୍କୁ ସମାନ ଅଧିକାର ଦିଆଯାଏ । ଛାଡପତ୍ର ପ୍ରାପ୍ତ ମହିଳା ପୁନର୍ବିବାହ କରିପାରନ୍ତି । ଏପରିକି ବିବାହ ସମୟରେ ମଧ୍ୟ କନ୍ୟାଟିଏ ପସନ୍ଦ ନକଲେ ତାହାର ବିବାହ ସ୍ଥିରୀକୃତ ହୋଇପାରେ ନାହିଁ । କେତେକ ପୂଜା ଆରାଧନା କ୍ଷେତ୍ରରେ ଗୁରୁମାଈର ପ୍ରମୁଖ ଭୂମିକା ତୁଲାଇବା ସହ ଧର୍ମୀୟ କ୍ଷେତ୍ରରେ ନାରୀର ଅଧିକାର ଥିବା ଜନଜାତି ଅଞ୍ଚଳରେ ଅନୁଭବ କରିହୁଏ ।

ଆଦିବାସୀ ଗାଁରେ ଅବସର ବିନୋଦନ ତଥା ଆମୋଦ ପ୍ରମୋଦ ନିମନ୍ତେ ଅନୁଷ୍ଠିତ ହେଉଥିବା ଲୋକନୃତ୍ୟ ଓ ଲୋକଗୀତ ଗାୟନରେ ମହିଳାମାନେ ପୁରୁଷମାନଙ୍କ ସହ ସକ୍ରିୟ ଅଂଶ ଗ୍ରହଣ କରନ୍ତି । ଏହାଫଳରେ କର୍ମକ୍ଳାନ୍ତିରୁ ସେମାନେ ସାମୟିକ ଭାବେ ଆନନ୍ଦ ପାଇଥାନ୍ତି । ମାତ୍ର ଐତିହାସିକ, ସାମାଜିକ ତଥା ସାଂସ୍କୃତିକ କାରଣରୁ ମହିଳାମାନେ ସାକ୍ଷରତା, ଶିକ୍ଷା, ସ୍ୱାସ୍ଥ୍ୟ କ୍ଷେତ୍ରରେ ପୁରୁଷମାନଙ୍କ ଅପେକ୍ଷା ଅଧିକ ଅବହେଳିତ । ଏହା ସେମାନଙ୍କ ପ୍ରସ୍ଥିତିକୁ ନ୍ୟୂନ କରିବା ନିମନ୍ତେ ଦାୟୀ । ପୁନଶ୍ଚ ସ୍ଥାବର-ଅସ୍ଥାବର ସମ୍ପତ୍ତିର ମାଲିକାନା କ୍ଷେତ୍ରରେ ମହିଳାଙ୍କ ଅଧିକାର ଓ ଦାୟିତ୍ୱ ସମାଜ ଦ୍ୱାରା ନିୟନ୍ତ୍ରିତ । ତଥାପି ଝିଅଟିକୁ ଜଣେ ସଫଳ ଗୃହୀ ଭାବରେ ଭବିଷ୍ୟତରେ ଦେଖିବା ପାଇଁ ସମାଜ ଧାଂଡୀବସା ବା ଯୁବ ଶୟନାଗାରର ବ୍ୟବସ୍ଥା କରାଇଥିବାର ଦେଖିବାକୁ ମିଳେ । ଜଣେ ଅବିବାହିତ କନ୍ୟା ଘରଯୋଗ୍ୟା ହେବାର ସମସ୍ତ କଳା ଶିକ୍ଷା କରିଥାଏ । ଏପରିକି ଜନଜାତି ଗୋଷ୍ଠୀରେ କନ୍ୟା ସନ୍ତାନ ପ୍ରତି ଆଦୌ ଅବହେଳା କରାଯାଇ ନଥାଏ । କନ୍ୟା ସନ୍ତାନ ନିଜ ମା'କୁ ବିଭିନ୍ନ କାର୍ଯ୍ୟରେ ସହାୟତା କରିବା ସହିତ ଛୋଟ ଭାଇଭଉଣୀଙ୍କ ଯତ୍ନ ନେଇଥାଏ । ମହିଳାଟିଏ ସନ୍ତାନ ସମ୍ଭବା ହେବା କାଳରେ ପରିବାର ସଦସ୍ୟ ଓ ଜ୍ଞାତି କୁଟୁମ୍ବମାନେ ତାଙ୍କର ଯତ୍ନ ନେଇଥାନ୍ତି । ଏହା ଜନଜାତି ସମାଜରେ ଥିବା ନାରୀ ପ୍ରତି ସମ୍ମାନକୁ ସୂଚାଇଥାଏ ।

ଆଦିବାସୀ ଗାଁଗୁଡିକରେ ବିଶେଷତଃ ଦେଶର ସ୍ୱାଧୀନତା ପରେ ଯୋଜନାଭିତ୍ତିକ ଉନ୍ନୟନ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଏହା ମହିଳା ସଶକ୍ତିକରଣ ଦିଗରେ ସକାରାତ୍ମକ ପ୍ରଭାବ ପକାଇଛି । ଗଣତାନ୍ତ୍ରିକ କ୍ଷମତା ପ୍ରତ୍ୟର୍ପଣ ଫଳରେ ପଞ୍ଚାୟତ ଅନୁଷ୍ଠାନଗୁଡିକରେ ମହିଳାଙ୍କ ପାଇଁ ଏକ ତୃତୀୟାଂଶ ସ୍ଥାନ ସଂରକ୍ଷଣ ଯୋଗୁଁ ସେମାନେ ନିର୍ବାଚିତ ଲୋକ ପ୍ରତିନିଧି ଭାବରେ ଭୂମିକା ଗ୍ରହଣର ସୁଯୋଗ ପାଇଛନ୍ତି । ଏହା ଜନଜାତି ସମାଜରେ ନୂତନ ଆଶା ଓ ଉତ୍ସାହର ପ୍ରତୀକ । ସମ୍ପ୍ରତି ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରି ଜନଜାତି ଗୋଷ୍ଠୀର ମହିଳାମାନେ ବିଭିନ୍ନ ଲାଭପ୍ରଦ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରୁଛନ୍ତି । ସେମାନଙ୍କ ପାଇଁ ବିଭିନ୍ନ ବଜାର ଓ କ୍ରୟ ବିକ୍ରୟ କେନ୍ଦ୍ର ପ୍ରତିଷ୍ଠା ଫଳରେ ସେମାନଙ୍କ ଦ୍ୱାରା ଉତ୍ପାଦିତ ସାମଗ୍ରୀ ଓ ହସ୍ତଶିଳ୍ପର ଉଚିତ ମୂଲ୍ୟ ମିଳିବା ସହିତ ଆର୍ଥିକ ସୁଧାର ମଧ୍ୟ ଆସିଛି । ସାକ୍ଷରତା ଓ ବିଦ୍ୟାଳୟ ଶିକ୍ଷା କ୍ଷେତ୍ରରେ କନ୍ୟା ସନ୍ତାନ ତଥା ମହିଳାମାନେ ଅଧିକ ଆଗ୍ରହ ପ୍ରକାଶ କଲେଣି । ଏହି ସମସ୍ତ ବ୍ୟବସ୍ଥା ମହିଳା ପ୍ରସ୍ଥିତି ତଥା ଭୂମିକା କ୍ଷେତ୍ରରେ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦିଏ ।

◆◆◆




ମାତ୍ର କେତେକ ଆଭ୍ୟନ୍ତରୀଣ ଅଞ୍ଚଳରେ ସରଳ ଜୀବନ ଜୀଉଁଥିବା ମହିଳାମାନେ ଏବେବି ଅନେକ ପ୍ରକାର ଶୋଷଣ, ପ୍ରତାରଣା ଓ ନିର୍ଯ୍ୟାତନାର ଶିକାର ହେଉଛନ୍ତି ଏବଂ ଅବହେଳିତ ଅବସ୍ଥାରେ ଅଛନ୍ତି । ଜମି ମାଲିକାନାର ସ୍ୱତ୍ୱ ମିଳିନାହିଁ । ଉତ୍ତରାଧିକାର କ୍ଷେତ୍ରରେ ଅସମାନତା ରହିଛି । ଶ୍ରମ ନିୟୋଜନ କ୍ଷେତ୍ରରେ ମହିଳାମାନେ ପୁରୁଷଙ୍କ ତୁଳନାରେ କମ୍ ମୂଲ ମଜୁରୀ ପାଉଛନ୍ତି । ଯୋଜନାବଦ୍ଧ ଉନ୍ନୟନ କାର୍ଯ୍ୟକ୍ରମରେ ମହିଳାମାନଙ୍କୁ ହିତାଧିକାରୀ ରୂପେ ଚିହ୍ନଟ କରାଯାଉନାହିଁ । ଏହାର ପରିଣତିରେ ଶିକ୍ଷାଠାରୁ ଦୂରରେ ଥିବା ମହିଳାଙ୍କ ମନରେ ଆତ୍ମପ୍ରତ୍ୟୟ ସୃଷ୍ଟି ହୋଇପାରୁନାହିଁ । ତଥାପି ସମୟ ସହିତ ପାଦ ମିଶାଇ ଆଗେଇବାର ସ୍ୱପ୍ନ ସେମାନଙ୍କ ଆଖିରେ ଆଖିଏ । ଓଡ଼ିଶାର ଜନଜାତିମାନଙ୍କ ମଧ୍ୟରୁ ପ୍ରମୁଖ ଜନଜାତି ଗୋଷ୍ଠୀ ସାନ୍ତାଳ, କୋୟା, କନ୍ଧ, ପରଦା, କିସାନ, ମୁଣ୍ଡା, ଓରାଂ ଏବଂ ଭୂୟାଁ ସମ୍ପ୍ରଦାୟର ମହିଳାମାନେ ଅନ୍ୟମାନଙ୍କଠାରୁ ଅଗ୍ରସର । ଶିକ୍ଷା ପ୍ରତି ସେମାନଙ୍କର ସଦିଚ୍ଛାର ବାଟ ବି ଫିଟିଛି । ତେବେ ପୂର୍ଣ୍ଣାଙ୍ଗ ଶିକ୍ଷା ପାଇ ନଥିବା ଆଦିବାସୀ ନାରୀର ବୁଦ୍ଧିମତା, ଧୀଶକ୍ତି, କର୍ମକୁଶଳତା ଓ ବିଶ୍ୱସନୀୟତା ଆଧୁନିକ ନାରୀଠାରୁ କୌଣସି ଗୁଣରେ କମ୍ ନୁହେଁ । ଉପଯୁକ୍ତ ପରିବେଶ ଓ ସୁଯୋଗ ସୁବିଧା ପାଇଲେ ସେମାନେ ସଭ୍ୟତାର ଶୀର୍ଷ ସ୍ଥାନକୁ ନିର୍ବିଘ୍ନରେ ଯାଇପାରିବେ ।

ଏସବୁ ସତ୍ତ୍ୱେ ଅଧିକାଂଶ ଗାଁର ମହିଳା ସଚେତନ । ନିଜର ସାମାଜିକ–ସାଂସ୍କୃତିକ ସ୍ଥିତି, ଭୂମିକା, ଦାୟିତ୍ୱ ଓ କର୍ତ୍ତବ୍ୟ ସମ୍ପର୍କରେ କିଛି ପରିମାଣରେ ଉତ୍ସାହୀ । ତଥାପି ସାଂପ୍ରତିକ ପରିସ୍ଥିତିରେ ସେମାନଙ୍କର ପ୍ରସ୍ଥିତିର ଉନ୍ନତି ନିମନ୍ତେ ତଥା ମହିଳା ସଶକ୍ତିକରଣ ନିମନ୍ତେ ବହୁ ଉଦ୍ୟମ ଆବଶ୍ୟକ । ପୁରୁଷମାନେ ଆନ୍ତରିକତାର ସହ ଏ ଦିଗରେ ସମୁଚିତ ପଦକ୍ଷେପ ନେଲେ ବହୁ ସମସ୍ୟାର ସମାଧାନ ଘଟି ସେମାନଙ୍କର ନିଶ୍ଚିତ ଭାବରେ ଅଗ୍ରଗତି ହୋଇପାରିବ । ମହିଳାମାନେ ସମାଜରେ ସୁରକ୍ଷିତ ହେଲେ ବିଭିନ୍ନ ପ୍ରକାର ଶୋଷଣରୁ ରକ୍ଷା ପାଇବେ । ଏଥିନିମନ୍ତେ ଏକ ବିବାହ ପ୍ରଥା, ପରିବାର କଲ୍ୟାଣ, ସମାନ ମଜୁରି, ଜମି ଅଧିକାର ସ୍ୱତ୍ୱ ଓ ଉତ୍ତାରାଧିକାର ଇତ୍ୟାଦି ନିମନ୍ତେ ସୁଚିନ୍ତିତ ବିଧି ବ୍ୟବସ୍ଥା ଆବଶ୍ୟକ । ସର୍ବୋପରି ଶିକ୍ଷା ଓ ସ୍ୱାସ୍ଥ୍ୟ କ୍ଷେତ୍ରରେ ମହିଳାମାନଙ୍କୁ ଅଗ୍ରାଧିକାର ଦିଆଗଲେ ତାହା ସମାଜର ସର୍ବାଙ୍ଗୀନ ଉନ୍ନତି କରିପାରିବ । ପୁନଶ୍ଚ ସେମାନଙ୍କ ନିମନ୍ତେ ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ସଶକ୍ତିକରଣ ଏକ ଶୁଭ ଲକ୍ଷଣ । ଏହାଦ୍ୱାରା ନାରୀର ପ୍ରସ୍ଥିତି ଓ ଭୂମିକା ସ୍ଥିରୀକୃତ ହୋଇପାରିବ । ଶେଷରେ ଜନଜାତି ମହିଳାଙ୍କ ଅନ୍ତର୍ବିଶ୍ୱକୁ ଅନୁଭବ କରି କୁହାଯାଇପାରେ ଜନଜାତିର ମହିଳାମାନେ ପ୍ରକୃତିର କନ୍ୟା । ପ୍ରକୃତି ପରି ସରଳ, ସବୁଜ, ସୁନ୍ଦର ଓ ସତେଜ । ପାହାଡି ଝରଣା ପରି ଚଳଚଞ୍ଚଳା, ପ୍ରଜାପତି ପରି ଅବାଧ ସେମାନଙ୍କ ଗତିବିଧି, ବିପଦକୁ ସହି ନେବାର ସ୍ଥିର ଓ ଅବିଚଳତା, ଜୋଛନା ପରି ନିଷ୍କପଟତା, ଶାଳଗଛର ଫୁଲପରି ପବିତ୍ରତାକୁ ଆପଣେଇ ନେଇଥିବା ସାନିଆ, କାଜୋଡି, ଫୁଲମତୀମାନେ ଅତ୍ୟନ୍ତ ଆନନ୍ଦମୟୀ । ଜଙ୍ଗଲ ଭୂଇଁରେ ଋତୁ ବଦଳିପାରେ ମାତ୍ର ସେମାନଙ୍କ ଜୀବନର ଛନ୍ଦ ଅତୁଟ ଓ ଅପରିବର୍ତ୍ତନୀୟ । ତଥାପି ସମୟ ସହିତ କଡ ଲେଉଟେଇଛି ଡଙ୍ଗର ଭୂମି । ଧାଡିଧାଡି ପର୍ବତମାଳାରୁ ଶୁଭୁଛି ଜନଜାତି ମହିଳାଙ୍କ ମନ ମର୍ମରର କଥା । ସଂଜ ଆସୁଛି ଚଇତି ପରବର ଡୁଙ୍ଗଡୁଙ୍ଗାରେ, ମାଦଳ ବାଜୁଛି ପ୍ରତିଟି ସଂଜରେ । କିଏ ଯେମିତି ଗୁମୁରି ଗୁମୁରି ବାହୁନୁଛି ଆଉ କହି ଦେଉଛି ଜୀବନ ସୁପ୍ତ । ତଥାପି ସେମାନଙ୍କ ପ୍ରତି ଲମ୍ବିଯାଉଛି ମୁଗ୍ଧ ଦୃଷ୍ଟି ଓ ଅମୃତ ଅନୁଭବ ସବୁ । ମୁଣ୍ଡ ନୁଆଇଁ ଦେଉଛି ପୁଷ୍ପବତୀ ମହୁଲ ଗଛ । ନୀଳାଭ ସ୍ମୃତି, ଅକୁହା ଶବ୍ଦ ଓ ସବୁଜ ସମ୍ବେଦନା ଭିତରୁ କିଏ ଯେମିତି ଗାଇ ଉଠୁଛି ଆଶାର ସାମସଂଗୀତ, ଆଉ ଶୁଭୁଛି–

ସକାଳର କଅଁଳା ସୂର୍ଯ୍ୟର ରଙ୍ଗରେ, କୁକୁଡାର କକ୍–କ–ଅ ଡାକ
ହେ ଈଶ୍ୱରୀ ! ବଢେଇ ଦିଅ, ସାହାଯ୍ୟର ହାତ ଯୋଡାକ
ଯେଉଁଠି ନଥିବ ଶୋଷଣର ଭୟ, ଦାଦନର ଦୁଃଖ, ଲୁହ ଆଉ କୋହ
ଆମେ ଆରାମ୍‌ରେ ଚାଲୁଥିବା ବାଟ ।
(ବଣ୍ଡା ଲୋକଗୀତର ଓଡ଼ିଆ ଅନୁସୃଜନ)

**ଗ୍ରନ୍ଥସୂଚୀ**


୧) ଓଡ଼ିଆ ସାହିତ୍ୟ ଓ ଆଦିବାସୀ ସଂସ୍କୃତି– ଓଡ଼ିଶା ସାହିତ୍ୟ ଏକାଡେମୀ, ୧୯୮୧

୨) ମୁଦୁଲିପଡାର ଲୋକେ– ପାତ୍ର ଦେବାଶିଷ– ସଂଶ୍ରିତା ପ୍ରକାଶନୀ, ୨୦୧୦

୩) ଓଡ଼ିଶାର ଜନଜାତି– ମହାନ୍ତି କୃଷ୍ଣ କୁମାର– ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ୨୦୦୮

୪) ଦକ୍ଷିଣାଞ୍ଚଳୀୟ ଓଡ଼ିଆ ଜନଜାତି ସଂସ୍କୃତି ଓ ସାହିତ୍ୟ (ଡି.ଲିଟ୍.ନିବନ୍ଧ)– ପାତ୍ର ଦେବାଶିଷ, ୨୦୧୩



ଓଡିଆ ଅଧ୍ୟାପକ (ସ୍ନାତକୋତ୍ତର)
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ରାଜଧାନୀ ମହାବିଦ୍ୟାଳୟ, ଭୁବନେଶ୍ୱର





# ରାଜ୍ୟର କୃଷି କ୍ଷେତ୍ରରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ଭୂମିକା

ମାନସ ରଞ୍ଜନ ଖୁଣ୍ଟିଆ

୧୯୬୨ ମସିହା ଅଗଷ୍ଟ ୨୪ ତାରିଖରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ (O.U.A.T) ଦେଶର ଦ୍ୱିତୀୟ କୃଷି ବିଶ୍ୱବିଦ୍ୟାଳୟ ଭାବେ ଜନ୍ମ ନେଇଥିଲା । ଶିକ୍ଷାଦାନ, ଗବେଷଣା ଓ ସମ୍ପ୍ରସାରଣ ଶିକ୍ଷା– ଏହି ତିନୋଟି କ୍ଷେତ୍ରରେ ଓୟୁଏଟିର ଅବଦାନ ଅଦ୍ୱିତୀୟ । ନିରବଚ୍ଛିନ୍ନ ଉତ୍କର୍ଷ ପଥରେ ଅଗ୍ରସର ହୋଇଥିବା ଓ ସଫଳତାର ସୋପାନ ପରେ ସୋପାନ ଉଠି ଚାଲିଥିବା ଏହି ବିଶ୍ୱବିଦ୍ୟାଳୟ ଆଜି କେବଳ ଆମ ରାଜ୍ୟରେ ନୁହେଁ, ସମଗ୍ର ଦେଶରେ ଏପରିକି ବିଦେଶରେ ମଧ୍ୟ ସୁନାମ ଓ ପ୍ରସିଦ୍ଧି ଅର୍ଜନ କରିପାରିଛି ।

ଓୟୁଏଟି ଅଧୀନରେ ଆଜି ୧୦ଟି ମହାବିଦ୍ୟାଳୟ ଓ ଗୋଟିଏ ପୋଷ୍ଟ ଗ୍ରାଜୁଏଟ୍ ସେଣ୍ଟର କାର୍ଯ୍ୟରତ । ୫୪ଟି ଇଣ୍ଟରମିଡିଏଟ୍, ୫୨ଟି ପୋଷ୍ଟ ଗ୍ରାଜୁଏଟ୍ ଓ ୩୧ଟି ଡକ୍ଟରେଟ୍ କାର୍ଯ୍ୟକ୍ରମର ଛାତ୍ରମାନଙ୍କୁ ମିଶାଇଲେ ଏହି ବିଶ୍ୱବିଦ୍ୟାଳୟର ବାର୍ଷିକ ଛାତ୍ରଛାତ୍ରୀ ସଂଖ୍ୟା ୧୮୦୮ । ସମ୍ପ୍ରତି ଏହି ବିଶ୍ୱବିଦ୍ୟାଳୟରେ ସମୁଦାୟ ୪୩୯୪ ଜଣ ବିଦ୍ୟାର୍ଥୀ ଅଧ୍ୟୟନରତ, ଯେଉଁଥିରୁ ଶତକଡା ୪୬ ଭାଗ ହେଉଛନ୍ତି ବାଳିକା । ଏ ପର୍ଯ୍ୟନ୍ତ ଓୟୁଏଟିର ବିଭିନ୍ନ ବିଭାଗରୁ ୧୬ ହଜାର ୪୯୮ ଜଣ ଗ୍ରାଜୁଏଟ୍, ୬ ହଜାର ୪୩ ଜଣ ପୋଷ୍ଟ ଗ୍ରାଜୁଏଟ୍ ଓ ୩୪୧ ଜଣ ଡକ୍ଟରେଟ୍ ପାଇ ଉତ୍ତୀର୍ଣ୍ଣ ହୋଇ ସାରିଛନ୍ତି । ଦୀର୍ଘ ୫୨ ବର୍ଷ ମଧ୍ୟରେ ଏହି ବିଶ୍ୱବିଦ୍ୟାଳୟରୁ ବିଭିନ୍ନ ବିଷୟରେ ଗ୍ରାଜୁଏଟ୍, ପୋଷ୍ଟ ଗ୍ରାଜୁଏଟ୍ ଓ ଡକ୍ଟରେଟ୍ ପାଇ ଉତ୍ତୀର୍ଣ୍ଣ ହେବା ଆମର ଗର୍ବ ଓ ଗୌରବର ବିଷୟ ।

୨୦୧୨–୧୩ ମସିହାରୁ ରାଜ୍ୟ ସରକାରଙ୍କ ସହାୟତାରେ ଓୟୁଏଟି ରାଜ୍ୟର ୧୦ଟି କୃଷି–ପାଣିପାଗ ଜୋନରେ ୧୦ଟି କୃଷି ପଲିଟେକ୍‌ନିକ୍ ଖୋଲି ସାରିଛି । ତନ୍ମଧ୍ୟରୁ କୃଷି ବିଜ୍ଞାନ ପାଇଁ ୬ଟି, ଉଦ୍ୟାନ କୃଷି ବିଭାଗ ପାଇଁ ୨ଟି, ମତ୍ସ୍ୟଚାଷ ପାଇଁ ଗୋଟିଏ ଓ ପଶୁ ଚିକିତ୍ସା ବିଜ୍ଞାନ ପାଇଁ ଗୋଟିଏ ପଲିଟେକ୍‌ନିକ୍ ସ୍ଥାପିତ ହୋଇଛି । ଏହି ୧୦ଟି ପଲିଟେକ୍‌ନିକ୍‌ରୁ କୃଷି ଓ ଅନ୍ୟ ଆନୁଷଙ୍ଗିକ ବିଜ୍ଞାନ କ୍ଷେତ୍ରରେ ପାରା ପ୍ରଫେସନାଲ୍‌ମାନେ ଡିପ୍ଲୋମା ଓ ଅନ୍ୟ ସାର୍ଟିଫିକେଟ୍ କୋର୍ସ ପଢି ସୁନାମ ଅର୍ଜନ କରିଛନ୍ତି । ଭୁବନେଶ୍ୱରରେ ଅତ୍ୟାଧୁନିକ ଯନ୍ତ୍ରପାତି ସୁବିଧା ସୁଯୋଗ ଥାଇ ଗୋଟିଏ କେନ୍ଦ୍ରୀୟ ପ୍ରୟୋଗଶାଳା ସ୍ଥାପନ କରାଯାଇଛି । ଆଇସିଏଆର ଓ ରାଜ୍ୟ ସରକାରଙ୍କ ସହାୟତା ରାଶିକୁ ବିନିଯୋଗ କରି ପ୍ରତ୍ୟେକ ମହାବିଦ୍ୟାଳୟଗୁଡ଼ିକରେ ଶ୍ରେଣୀଗୃହ, ପ୍ରୟୋଗଶାଳା, ପରୀକ୍ଷା ହଲ, ସମ୍ମିଳନୀ କକ୍ଷ, ଗୋସମ୍ପଦ ଫାର୍ମ ଓ କେନ୍ଦ୍ରୀୟ କ୍ଲିନିକ୍‌ର ନବୀକରଣ କରାଯାଇଛି । ବିଶ୍ୱବିଦ୍ୟାଳୟର କେନ୍ଦ୍ରୀୟ ଲାଇବ୍ରେରୀରେ ଇଣ୍ଟରନେଟ୍‌ଠାରୁ ଆରମ୍ଭ କରି ଇ–ଲାଇବ୍ରେରୀ, କମ୍ପ୍ୟୁଟରୀକୃତ ଡାଟାବେସ୍, ବୁକ୍‌ବ୍ୟାଙ୍କ, ଇଣ୍ଟର–ଲାଇବ୍ରେରୀ ଲୋନ ଓ ଅନ୍‌ଲାଇନ୍ ପାଠ ପଢିବାର ସୁବିଧା ରହିଛି ।

କୃଷି ମହାବିଦ୍ୟାଳୟରେ ଉନ୍ନତ ମହୁଚାଷ, ଛତୁ ଚାଷ ଓ ବର୍ଷସାରା ଚାଷ ହୋଇପାରୁଥିବା ଶସ୍ୟ ଉପରେ ସ୍ୱତନ୍ତ୍ର ଶିକ୍ଷାଦାନ ଚାଲିଛି । ପଶୁ ଚିକିତ୍ସା ମହାବିଦ୍ୟାଳୟରେ ଆୟକାରୀ କୁକୁଡାମାଂସ, ଛେଳିମାଂସ ଉତ୍ପାଦନ ଉପରେ ଗୁରୁତ୍ୱ ଆରୋପ କରାଯାଉଛି । କୃଷି ଓ ବୈଷୟିକ ମହାବିଦ୍ୟାଳୟରେ ଫଳ, ପନିପରିବା ଓ ମସଲାର ପ୍ରକ୍ରିୟାକରଣ କେନ୍ଦ୍ର ଖୋଲାଯାଇଛି । ୨୦୧୩–୧୪ରେ ୪୨ ହଜାର ୩୮୬ ଜଣ ପୁରୁଷ ଓ ମହିଳା ଚାଷୀଙ୍କୁ ୧୬୬୭ଟି ପ୍ରଶିକ୍ଷଣ ଦିଆଯାଇ ପାରିଛି । ୬୩୯୭ ଗ୍ରାମ୍ୟ ଯୁବକଙ୍କୁ ୩୭୧ଟି ଟ୍ରେନିଂ ଓ ୨୭୭୯ କୃଷି ସମ୍ପ୍ରସାରଣ କର୍ମଚାରୀଙ୍କୁ ୧୯୧ଟି ଟ୍ରେନିଂ ଦିଆଯାଇଛି । ରାଜ୍ୟରେ ଥିବା କୃଷି ବିଜ୍ଞାନ କେନ୍ଦ୍ରଗୁଡ଼ିକ ଜରିଆରେ ୫୫୯୪ ଜଣ ଚାଷୀଙ୍କୁ ୪୭୨ଟି କୃଷି ଫାର୍ମ ପ୍ରୟୋଗ, ୮୩୪୧

ଜଣ ଚାଷୀଙ୍କୁ ୬୩୩ଟି ପରୀକ୍ଷଣ ପ୍ରଦାନ କରାଯାଇଛି । ଚାଷୀମାନଙ୍କ ବିଲରୁ ୩୭୯ ପ୍ରକାରର ମୃତ୍ତିକାକୁ ପରୀକ୍ଷା କରାଯାଇ ସେମାନଙ୍କୁ ମୃତ୍ତିକା ସ୍ୱାସ୍ଥ୍ୟ କାର୍ଡ ଦିଆଯାଇଛି । ଖୋର୍ଦ୍ଧା ଜିଲ୍ଲାର ବାଲିଅନ୍ତା ବ୍ଲକ ଅନ୍ତର୍ଗତ ଚିଙ୍ଗୁଡିଆ ଓ ଗେଣ୍ଡାମାଳିଆ ଏବଂ ବାଲିପାଟଣା ବ୍ଲକ୍‌ର ନୂଆପଡା ଓ ଜେନାପଡା ଗାଁରେ କୃଷି ସମ୍ପ୍ରସାରଣ ଶିକ୍ଷା ଦିଆଯାଇଛି । ଶ୍ରୀ ଧାନ ପାଇଁ ୧.୨ ହେକ୍ଟର, ହାଇବ୍ରିଡ୍ ଧାନ ପାଇଁ ୦.୪ ହେକ୍ଟର, ଅଧିକ ଅମଳକ୍ଷମ ରାଶି ପାଇଁ ୪ ହେକ୍ଟର, ଗେଣ୍ଡୁ ଫୁଲ ପାଇଁ ୧. ୨ ହେକ୍ଟର, ଅଧିକ ଅମଳକ୍ଷମ ପିଆଜ ପାଇଁ ୧.୧୧ ହେକ୍ଟର, ଅଧିକ ଅମଳକ୍ଷମ କଲରା ପାଇଁ ୦.୮ ହେକ୍ଟର, ଅଧିକ ଅମଳକ୍ଷମ ବାଇଗଣ ପାଇଁ ୪ ହେକ୍ଟର, ବିନ୍ ପାଇଁ ୧.୨ ହେକ୍ଟର, ପାଳଛତୁ ଚାଷ ପାଇଁ ୨୦୦ଟି ବେଡ୍‌ରେ ସମ୍ପ୍ରସାରଣ କୃଷି କାର୍ଯ୍ୟ କରାଯାଉଛି । ଛତୁ ଆଚାର ପ୍ରସ୍ତୁତି ସମ୍ବନ୍ଧରେ ମଧ୍ୟ ଶିକ୍ଷା ଦିଆଯାଉଛି ।

କୃଷି ବୈଷୟିକ ସୂଚନା କେନ୍ଦ୍ରରେ ବିଭିନ୍ନ ସୂଚନା, ସେବା ଓ କୃଷି କୌଶଳ ଆଦିକୁ ସିଧାସଳଖ ଚାଷୀମାନଙ୍କୁ ଯୋଗାଇ ଦିଆଯାଉଛି । ୧୩୩୪ ଜଣ ଚାଷୀ, ୨୩୦ ସମ୍ପ୍ରସାରଣ କର୍ମଚାରୀ ଓ ବିଭିନ୍ନ ସ୍ୱେଚ୍ଛାସେବୀ ସଂସ୍ଥାର ସଦସ୍ୟଗଣ ଏହି କେନ୍ଦ୍ରଗୁଡିକୁ ବୁଲିଛନ୍ତି । ବେଲ ଓ ମହୁଆ ଫୁଲରୁ ସ୍କ୍ୱାସ୍, ଜାମ ଓ ଟଫି, ଘିକୁଆଁରୀରୁ ବିଶୁଦ୍ଧ ଜେଲ୍, ଅଦାରୁ ଓଲିଓ ରେସିନ୍ , ଅଦାରସ ଓ ଶୁଷ୍କ ଅଦା, ସପୁରୀ ଓ ଗାଜର ପ୍ରସ୍ତୁତ ବିଭିନ୍ନ ଖାଦ୍ୟଦ୍ରବ୍ୟ ଏହି ବିଶ୍ୱବିଦ୍ୟାଳୟର ଗବେଷଣା ପ୍ରସ୍ତୁତ । ଧଳାପଥର ଅଞ୍ଚଳରେ ଜୈବିକ ବୟନ ଶିଳ୍ପର ନୂତନ କୌଶଳ ଏହି ବିଶ୍ୱବିଦ୍ୟାଳୟ ବାହାର କରିଛି । ୩୦ଟି ଜିଲ୍ଲାରେ ୩୧ଟି କୃଷି ବିଜ୍ଞାନକେନ୍ଦ୍ର ଖୋଲି ଆଧୁନିକ କୃଷି କୌଶଳକୁ ଚାଷୀମାନଙ୍କ ନିକଟରେ ପହଞ୍ଚାଇବାର ପ୍ରୟାସକୁ 'ଚାଷୀର ସଂସାର' ଭଳି ପାକ୍ଷିକ ପତ୍ରିକା ରୂପାୟିତ କରିପାରିଛି । ଦୂରଶିକ୍ଷା କାର୍ଯ୍ୟକ୍ରମରେ ୧୧ଟି ବିଭାଗରେ ୧୫୬୨ ଜଣ ଚାଷୀ ଉତ୍ତୀର୍ଣ୍ଣ ହୋଇଛନ୍ତି । ଏ ପର୍ଯ୍ୟନ୍ତ ୧୮,୮୨୬ ଜଣ ଚାଷୀ ଓୟୁଏଟିର ଦୂରଶିକ୍ଷା କାର୍ଯ୍ୟକ୍ରମ ଜରିଆରେ ଶିକ୍ଷାପ୍ରାପ୍ତ ହୋଇଛନ୍ତି ବିଶେଷ କରି କଳାହାଣ୍ଡି, ରାୟଗଡା ଓ ଗଜପତି କୃଷି ବିଜ୍ଞାନ କେନ୍ଦ୍ରର ପ୍ରଚେଷ୍ଟା ଯୋଗୁଁ ୧୫୩ ଜଣ ମହିଳା ଚାଷୀ ୩ଟି ପ୍ରଶିକ୍ଷଣ ଶିବିର ତଥା କର୍ମଶାଳାରେ ଅଂଶ ଗ୍ରହଣ କରି ପ୍ରଶିକ୍ଷିତ ହୋଇପାରିଛନ୍ତି । ସ୍ଥାନୀୟ ବ୍ରିଡ୍‌କୁ ଅଧିକ ଉନ୍ନତ କରି ଓୟୁଏଟି 'ଗଞ୍ଜାମ ଛେଳି', 'ମୋଟୁ ଗୋସମ୍ପଦ' ଓ 'ବିଞ୍ଝାରପୁରୀ ଗୋସମ୍ପଦ', 'ଚିଲିକା ମଇଁଷି' ନୂତନ ବ୍ରିଡ୍ ଉଦ୍‌ଭାବନ କରିପାରିଛି । ଓୟୁଏଟିର ଗବେଷଣାରୁ ୧୪୦ଟି ଅଧିକ ଅମଳକ୍ଷମ ଶସ୍ୟ ଉଦ୍ଭାବିତ ହୋଇ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଏହାର ସୁନାମକୁ ବହୁଗୁଣିତ କରିଛି । ସୁପ୍ରଭା, ସୁରୁଚି, ସୁରଭି ଅଦା, ରୋମା, ସୁରମା, ରଙ୍ଗ, ରଶ୍ମୀ ହଳଦୀ ଓୟୁଏଟି ଦ୍ୱାରା ଉଦ୍ଭାବିତ ହୋଇ ସାରା ଦେଶରେ ପ୍ରସିଦ୍ଧ ହୋଇଛି । ଜଗନ୍ନାଥ ଓ ବଳଭଦ୍ର– ଦୁଇଟି ରପ୍ତାନୀଯୋଗ୍ୟ କାଜୁ ଓୟୁଏଟିର ଗବେଷଣା ପ୍ରସ୍ତୁତ । ସବିତା, ନୀଳମାଧବ, ରଘୁନାଥ, ନୀଳଚକ୍ର ଆଖୁ, ଜାଲ–୪୨ ଚିନାବାଦାମ, ମୃଣାଳିନୀ, ତେଜସ୍ୱିନୀ, ମନ୍ଦାକିନୀ, ତନ୍ମୟୀ, ହିରଣ୍ମୟୀ, ଜ୍ୟୋତିର୍ମୟୀ ଧାନ, ନୂଆ ଆଚାରମାଟି ବିରି, ସ୍ମାରକ ଓ ସୁଧା ରାଶି, ଶ୍ରେଷ୍ଠା ଝୋଟ ଆଦି ଓୟୁଏଟିର କୃଷି ବିଜ୍ଞାନୀମାନଙ୍କ ଅବଦାନ ।

ଓୟୁଏଟିର ଗବେଷଣା ନେଟ୍‌ୱାର୍କ ବେଶ୍ ବ୍ୟାପକ । ୮ଟି ଆଞ୍ଚଳିକ ଗବେଷଣା ଓ ବୈଷୟିକ ଜ୍ଞାନ କୌଶଳ ପ୍ରଦାନ କେନ୍ଦ୍ର, ୪ଟି ଆଞ୍ଚଳିକ ଗବେଷଣା ଓ ବୈଷୟିକ ଜ୍ଞାନ କୌଶଳ ପ୍ରଦାନ ଉପକେନ୍ଦ୍ର, ୭ଟି କୃଷିଜାତ ଦ୍ରବ୍ୟ ଗବେଷଣା କେନ୍ଦ୍ର, ୧୩ଟି ପରିବେଶ ସହ ଖାପ ଖୁଆଇ ପାରୁଥିବା ଶସ୍ୟ ସମ୍ବନ୍ଧୀୟ ଗବେଷଣା କେନ୍ଦ୍ର ଓ ୧୦ଟି କୃଷି ପରାମର୍ଶ କ୍ଷେତ୍ର ୟୁନିଟ୍ ରାଜ୍ୟର ୧୦ଟି କୃଷି ପାଣିପାଗ ଜୋନ୍ ଅଞ୍ଚଳରେ ପରିବ୍ୟାପ୍ତ । ୫୦ଟି ଜାତୀୟ ସମନ୍ୱିତ ଗବେଷଣା ପ୍ରକଳ୍ପ, ୨ଟି ଜାତୀୟ ପ୍ରକଳ୍ପ, ୭ଟି ଏନ୍.ଏ.ଆଇ.ପି., ଗୋଟିଏ ରାଷ୍ଟ୍ରୀୟ କୃଷି ବିକାଶ ଯୋଜନା ପ୍ରକଳ୍ପ ଓ ୪୬ଟି ଅନ୍ୟ ସହାୟତା ପ୍ରାପ୍ତ ପ୍ରକଳ୍ପ ୨୦୧୩–୧୪ ମସିହାରେ ଓୟୁଏଟିରେ କାର୍ଯ୍ୟକାରୀ କରାଯାଉଛି । କଦଳୀ, ଆଖୁ ଓ ଜର୍ବେରାର ଉନ୍ନତ ମାନର ଚାରା ଓୟୁଏଟିର ବାୟୋ ଟେକ୍ନୋଲୋଜି ତଥା ବ୍ୟବସାୟିକ ଟିସୁ କଲ୍‌ଚର ସେଣ୍ଟରରେ ଉତ୍ପାଦିତ ହେଉଛି । ଏହି ସେଣ୍ଟର ପୂର୍ଣ୍ଣ କାର୍ଯ୍ୟକ୍ଷମ ହେଲେ ପ୍ରତ୍ୟେକ ବର୍ଷ ୧୦ ଲକ୍ଷ ଚାରା ଉତ୍ପାଦନ କରାଯାଇ ପାରିବ । ଓୟୁଏଟି ୩୭ଟି କୃଷିମେଳା ଆୟୋଜନ କରି ୨୨ ହଜାର ୨୬ ଜଣ, ୮୨ଟି ପ୍ରଦର୍ଶନୀ ଜରିଆରେ ୨ ଲକ୍ଷ ୨୯ ହଜାର ୨୩୪ ଜଣ, ୧୦୨ଟି ସ୍ୱତନ୍ତ୍ର ଦିବସ ପାଳନ ଜରିଆରେ ୭୬୩୭ ଜଣ, ୩୧୦ଟି କ୍ଷେତ୍ର ଦିବସ ଜରିଆରେ ୧୨,୫୭୫ ଜଣ, ୯୪୪ଟି ଚଳଚ୍ଚିତ୍ର ପ୍ରଦର୍ଶନ ଦ୍ୱାରା ୨୪,୭୧୯ ଜଣଙ୍କ ହିତସାଧନ କରି ପାରିଛି ।

ଓୟୁଏଟି ୨୪ଟି ଆବେଦନପତ୍ର ବିହନ ଓ ଚାରାର ସୁରକ୍ଷା ଏବଂ କୃଷକମାନଙ୍କ ଅଧିକାର ସମ୍ବନ୍ଧୀୟ କର୍ତ୍ତୃପକ୍ଷଙ୍କ ନିକଟରେ ଦାଖଲ କରିସାରିଛି । ଏ ପର୍ଯ୍ୟନ୍ତ ଏହାର ଗବେଷଣା ପ୍ରସୂତ ୧୮ଟି କିସମର ଶସ୍ୟ ପଞ୍ଜିକୃତ ହୋଇ ସାରିଛି । ପ୍ରତୀକ୍ଷା, ଲଳିତଗିରି ଓ ଗଜପତି– ଏହିଭଳି ୩ଟି ଧାନ ବ୍ୟବସାୟିକ ହୋଇ ସାରିଛି । ବାର୍ଷିକ ୨୯୭୦ ଟନ୍ ଛତୁ ଉତ୍ପାଦନ କରି ଓଡ଼ିଶାକୁ ଏକ ପ୍ରମୁଖ ଛତୁ ଉତ୍ପାଦନକାରୀ ରାଜ୍ୟ ଭାବେ ସ୍ୱୀକୃତି ଦେବାରେ

ଓୟୁଏଟିର ଅବଦାନ ଉଲ୍ଲେଖଯୋଗ୍ୟ । ଏହା ଯୋଗୁଁ ବାଇଗଣ, ଟମାଟୋ, ଭେଣ୍ଡି, କଞ୍ଚାଲଙ୍କା ଆଦିର ଉତ୍ପାଦନ ବଢ଼ି ପାରିଛି ଏବଂ ଓଡ଼ିଶା ଏ କ୍ଷେତ୍ରରେ ଦେଶର ଦ୍ୱିତୀୟ ରାଜ୍ୟ ଭାବେ ପରିଗଣିତ ହୋଇ ପାରିଛି । କୃଷି ଯନ୍ତ୍ରପାତିର ଆଧୁନିକୀକରଣ କ୍ଷେତ୍ରରେ ଓୟୁଏଟି ବେଶ୍ ଅଗ୍ରଣୀ ହୋଇ ପାରିଛି ।

ଚଳିତ ବର୍ଷ ଦେଶର ୭୦ଟି କୃଷି ବିଶ୍ୱବିଦ୍ୟାଳୟ ମଧ୍ୟରେ ଓୟୁଏଟି ପ୍ରଥମ ହେବାର ସୌଭାଗ୍ୟ ଲାଭ କରିବା ଆମ ରାଜ୍ୟ ପାଇଁ ଅତୀବ ଗୌରବାବହ । ଭାରତୀୟ କୃଷି ଗବେଷଣା ପରିଷଦ ଦ୍ୱାରା ସମାହିତ ହୋଇଥିବା ସର୍ବଭାରତୀୟ ପ୍ରବେଶିକା ପରୀକ୍ଷାରେ ଏହି ବିଶ୍ୱବିଦ୍ୟାଳୟର ୩୭ ଜଣ ଜୁନିୟର ରିସର୍ଚ୍ଚ ଫେଲୋସିପ୍ ପାଇବା ପାଇଁ ଯୋଗ୍ୟ ବିବେଚିତ ହେବା ସମଗ୍ର ଦେଶରେ ବିରଳ । ଏହି ଅଭୁତପୂର୍ବ କୃତିତ୍ୱ ହାସଲ ପାଇଁ ଭାରତୀୟ କୃଷି ଗବେଷଣା ପରିଷଦର ୮୬ତମ ପ୍ରତିଷ୍ଠା ଦିବସରେ ଜୁଲାଇ ୨୯ ତାରିଖରେ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ନରେନ୍ଦ୍ର ମୋଦି ନୂଆଦିଲ୍ଲୀସ୍ଥିତ ଏନ୍.ଏ.ଏସ୍.ସି. କମ୍ପ୍ଲେକ୍ସଠାରେ ଓୟୁଏଟିର କୁଳପତି ପ୍ରଫେସର ମନୋରଞ୍ଜନ କରଙ୍କୁ ସମ୍ବର୍ଦ୍ଧିତ ଓ ପୁରସ୍କୃତ କରିସାରିଛନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଓ କୃଷିମନ୍ତ୍ରୀ ଶ୍ରୀ ପ୍ରଦୀପ ମହାରଥୀ ମଧ୍ୟ ଓୟୁଏଟିର ଏହି ମେଧାବୀ ଛାତ୍ରଛାତ୍ରୀମାନଙ୍କୁ ସମ୍ବର୍ଦ୍ଧିତ କରିଛନ୍ତି । ଭାରତୀୟ କୃଷି ଗବେଷଣା ପରିଷଦ ପ୍ରତ୍ୟେକ ମେଧାବୀ ଛାତ୍ରଛାତ୍ରୀଙ୍କୁ ଫେଲୋସିପ୍ ବାବଦରେ ୨ ଲକ୍ଷ ଟଙ୍କା ଲେଖାଏଁ ୩୭ ଜଣଙ୍କୁ ୭୪ ଲକ୍ଷ ଟଙ୍କା ପ୍ରଦାନ କରିବ, ଯେଉଁ ଅର୍ଥରାଶି ଗବେଷଣା ଦିଗରେ ବିନିଯୋଗ ହୋଇ ଓୟୁଏଟିର ସୁନାମକୁ ବହୁଗୁଣିତ କରିବ । ଓୟୁଏଟିର ୫୩ତମ ପ୍ରତିଷ୍ଠା ଦିବସ ପାଳନ ଅବସରରେ ଏହା ହିଁ ଏହି ବିଶ୍ୱବିଦ୍ୟାଳୟର ଉତ୍କର୍ଷର ଯଥାର୍ଥ ସ୍ୱୀକୃତି । ଗତବର୍ଷ ମଧ୍ୟ କୃଷି କ୍ଷେତ୍ରରେ ଉଚ୍ଚଶିକ୍ଷା ପାଇଁ ପ୍ରବେଶିକା ପରୀକ୍ଷାରେ ଯୋଗ୍ୟ ବିବେଚିତ ମେଧାବୀ ଛାତ୍ରଛାତ୍ରୀଙ୍କ ସଂଖ୍ୟା ଆଧାରରେ ଭାରତୀୟ କୃଷି ଗବେଷଣା ପରିଷଦ, ଏହି ବିଶ୍ୱବିଦ୍ୟାଳୟକୁ ତୃତୀୟ ସ୍ଥାନ ପ୍ରଦାନ କରିଥିଲା । ୨୦୧୦ ମସିହାରେ ଟାଇମ୍ସ ଅଫ୍ ଇଣ୍ଡିଆ ଗ୍ରୁପ୍ ଓୟୁଏଟିକୁ ଓଡ଼ିଶାର ସର୍ବାଙ୍ଗୀନ କୃଷି ଅଭିବୃଦ୍ଧି ହାସଲ ଦିଗରେ ମହତ୍ୱପୂର୍ଣ୍ଣ ଭୂମିକା ଓ ଶିକ୍ଷା, ଗବେଷଣା ଏବଂ ସମ୍ପ୍ରସାରଣ ଶିକ୍ଷା କ୍ଷେତ୍ରରେ ଚମତ୍କାର ଅବଦାନ ଯୋଗୁଁ ରାଜ୍ୟର ସମସ୍ତ ବିଶ୍ୱବିଦ୍ୟାଳୟଗୁଡ଼ିକ ମଧ୍ୟରେ ସର୍ବୋତ୍ତମ ଆଖ୍ୟା ଦେଇଥିଲେ । ଏଥିପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓୟୁଏଟିର କୁଳପତିଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ଓୟୁଏଟିର ଶୁଷ୍କଭୂମି କୃଷି ୟୁନିଟ୍‌ରେ ସମ୍ପୂର୍ଣ୍ଣ ହୋଇଥିବା ନିଖିଳ ଭାରତ ସମନ୍ୱିତ ଗବେଷଣା ପ୍ରୋଜେକ୍ଟ (ଏ.ଆଇ.ସି.ଆର୍.ପି.) ୨୦୦୯ ମସିହାରେ ଚୌଧୁରୀ ଦେବୀଲାଲ ସର୍ବୋତ୍କୃଷ୍ଟ ଏ.ଆଇ.ସି.ଆର୍.ପି. ପୁରସ୍କାରରେ ସମ୍ମାନିତ ହେବା ଅତ୍ୟନ୍ତ ଗୌରବର କଥା । ୨୦୦୧ ମସିହାରେ ଓୟୁଏଟି ଦ୍ୱାରା ଦେଶର ପ୍ରଥମ କୃଷି–ପାଣିପାଗ ୱେବ୍‌ସାଇଟ୍ ଉନ୍ମୋଚିତ ହୋଇଥିଲା । ଏହା ସମଗ୍ର ଦେଶରେ ଏକ ବିରଳ କୃତିତ୍ୱ । ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ କୃଷି ଓ ପାଣିପାଗ ସମ୍ବନ୍ଧୀୟ ପରାମର୍ଶ ସେବା ପ୍ରଦାନ କରିବା ଓ ଏସ୍.ଏମ୍.ଏସ୍. ଜରିଆରେ ସରକାରୀ ବିଭାଗ, ଜିଲ୍ଲା ପ୍ରଶାସନ ଓ ସର୍ବୋପରି ଚାଷୀଭାଇମାନଙ୍କୁ ପାଣିପାଗ ସୂଚନା ଜଣାଇବା ବାସ୍ତବିକ୍ ସାରା ଦେଶ ପାଇଁ ଅନନ୍ୟ । ଭାରତୀୟ ପାଣିପାଗ ବିଭାଗ ଓୟୁଏଟିର କୃଷି–ପାଣିପାଗ ୱେବ୍‌ସାଇଟ୍ ଓ କୃଷି ଓ ପାଣିପାଗ ସମ୍ବନ୍ଧୀୟ ପରାମର୍ଶ ସେବାକୁ ଦେଶର ଏକ ମଡେଲ ବୋଲି ଗ୍ରହଣ କରି ସାରିଛି ।

ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ୧୪୦ରୁ ଊର୍ଦ୍ଧ୍ୱ ଉଚ୍ଚ ଅମଳକ୍ଷମ କିସମର ଫସଲ ଓୟୁଏଟି ଯୋଗୁଁ ସମ୍ଭବ ହୋଇ ପାରିଛି । ବିଶେଷକରି ଚୀନ୍, ମାଲୟେସିଆ, ଇଜିପ୍ଟ, ଭିଏତ୍‌ନାମ, କାମ୍ବୋଡ଼ିଆ, ବଙ୍ଗଳାଦେଶ, ମିଆଁମାର ଆଦି ଦେଶରେ ଏହି ବିଶ୍ୱବିଦ୍ୟାଳୟ ପ୍ରସୂତ ଧାନ ବିହନ ବେଶ୍ ଲୋକପ୍ରିୟ ହୋଇ ପାରିଛି । ଅଦା, ହଳଦୀ, କାଜୁ, ଆଖୁ, ଚିନାବାଦାମ, ବିରି ଆଦିର ଉନ୍ନତ ଓ ଅଧିକ ଅମଳକ୍ଷମ ବିହନ ଓୟୁଏଟିର ଗବେଷଣା ପ୍ରସୂତ । ଓୟୁଏଟିର ଗବେଷଣାଲବ୍ଧ ଜ୍ଞାନର ଏହା କିୟଦଂଶ ମାତ୍ର । ପଶୁ ପାଳନ ଓ ମତ୍ସ୍ୟ ଚାଷ ଆଦି କ୍ଷେତ୍ରରେ ଏହାର ଅନନ୍ୟ ଅବଦାନ ରାଜ୍ୟର ଅଗଣିତ କୃଷକମାନଙ୍କୁ ବିକଳ୍ପ ଜୀବିକା ପ୍ରଦାନ କରି ସ୍ୱାବଲମ୍ବୀ କରି ପାରିଛି । ଦୀର୍ଘ ୫୨ ବର୍ଷ ଧରି ଓୟୁଏଟିର ନିରବଚ୍ଛିନ୍ନ ଅବଦାନ ରାଜ୍ୟବାସୀ ବିଶେଷ କରି ଚାଷୀଭାଇମାନେ କେବେ ହେଁ ଭୁଲି ପାରିବେ ନାହିଁ । ଆମ ରାଜ୍ୟର କୃଷି ଉତ୍ପାଦନକୁ ସମ୍ମାନଜନକ ସ୍ତରରେ ପହଞ୍ଚାଇବା ଦିଗରେ ଓୟୁଏଟିର ଭୂମିକା ଅତୁଳନୀୟ । ଏହି ବିଶ୍ୱବିଦ୍ୟାଳୟ ରାଜ୍ୟର କୃଷି କ୍ଷେତ୍ରରେ ଅନନ୍ୟ ଭୂମିକା ଗ୍ରହଣ କରିବା ସଂଗେ ସଂଗେ ଦେଶ ତଥା ବିଦେଶର କୃଷି ବିଶ୍ୱବିଦ୍ୟାଳୟଗୁଡ଼ିକ ମଧ୍ୟରେ ଅଗ୍ରଗଣ୍ୟ ସାବ୍ୟସ୍ତ ହେବ, ଏଥିରେ ସନ୍ଦେହ ନାହିଁ ।

ସୂଚନା ଅଧିକାରୀ
ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର




# ତସ୍ମୈ ଶ୍ରୀଗୁରବେ ନମଃ

**ପଣ୍ଡିତ ଜଗନ୍ନାଥ ଶତପଥୀ**

ମନ୍ନାଥଃ ଶ୍ରୀଜଗନ୍ନାଥଃ, ମଦ୍‌ଗୁରୁଃ ଶ୍ରୀଜଗଦ୍‌ଗୁରୁଃ
ମମାତ୍ମା ସର୍ବଭୂତାତ୍ମା, ତସ୍ମୈ ଶ୍ରୀଗୁରବେ ନମଃ ।

ପୂର୍ବତନ ରାଷ୍ଟ୍ରପତି ମହାନ୍ ଦାର୍ଶନିକ ଆଦର୍ଶ ଗୁରୁ ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନଙ୍କର ଜନ୍ମଦିବସ ସେପ୍ଟେମ୍ବର ୫ ତାରିଖ ସମଗ୍ର ଭାରତବାସୀଙ୍କ ପାଇଁ ସ୍ମରଣୀୟ । ତାଙ୍କର ମହନୀୟ ସ୍ମୃତିକୁ ଉଜ୍ଜୀବିତ କରି ରଖିବା ପାଇଁ ବିଦ୍ୟାୟତନମାନଙ୍କରେ ଖୁବ୍ ସମାରୋହରେ ଏ ଉତ୍ସବ ପାଳିତ ହୋଇଆସୁଛି । ଗୁରୁ ହେଉଛନ୍ତି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ପ୍ରତିଭୂ । ଅଜ୍ଞାନରୂପୀ ଘନ ତମସା ଦ୍ୱାରା ଅନ୍ଧ ଶିଷ୍ୟର ଚକ୍ଷୁ ଦୁଇଟିକୁ ଜ୍ଞାନାଞ୍ଜନ ଶଳାକା ଦ୍ୱାରା ସେ ଉନ୍ମୀଳିତ କରିଦିଅନ୍ତି । ପୁଣି ଅଖଣ୍ଡ ମଣ୍ଡଳାକାରରେ ସର୍ବତ୍ର ପରିବ୍ୟାପ୍ତ ସଚ୍ଚିଦାନନ୍ଦ ସ୍ୱରୂପୀ ପରଂବ୍ରହ୍ମଙ୍କ ପଦାରବିନ୍ଦକୁ ସେ ଦେଖାଇ ଦିଅନ୍ତି । ସେହି ସଦ୍‌ଗୁରୁଙ୍କୁ ଆଜିର ଏହି ମହନୀୟ ବାସରରେ ଅନନ୍ତ କୋଟି ପ୍ରଣାମ ।

ତଦାନୀନ୍ତନ ସେହି ମନ୍ତ୍ରଦ୍ରଷ୍ଟା ଗୁରୁମାନେ ସମାଜ ଜୀବନର ଆଦ୍ୟ ପ୍ରବକ୍ତା ଥିଲେ । ସେତେବେଳେ ଗୁରୁଙ୍କୁ ଆଚାର୍ଯ୍ୟ, ଉପାଧ୍ୟାୟ, ଗୁରୁ ଓ ଋଷି ଅଭିହିତ କରାଯାଉଥିଲା ଏବଂ ଛାତ୍ରକୁ ଶିଷ୍ୟ, ଅନ୍ତେବାସୀ, ସ୍ନାତକ, ବ୍ରହ୍ମଚାରୀ ଓ ଶ୍ରମଣ ବୋଲି କୁହାଯାଉଥିଲା । ଗୁରୁ ଶିଷ୍ୟକୁ ଉପଦେଶ ଦେଇ କହୁଥିଲେ, ପିତାମାତା, ଆଚାର୍ଯ୍ୟ ଓ ଅତିଥି ପ୍ରଭୃତିଙ୍କୁ ଦେବତା ଜ୍ଞାନରେ ସମ୍ମାନିତ କର । ଯେଉଁ ଯେଉଁ କର୍ମଗୁଡ଼ିକ ଅନବଦ୍ୟ ସେଗୁଡ଼ିକ ଉପରେ ଗୁରୁତ୍ୱ ଦିଅ । ଯଦି କୌଣସି କାର୍ଯ୍ୟ କରିବାରେ ସନ୍ଦେହ ଜାତ ହୁଏ, ତାହେଲେ ସେଠାରେ ଥିବା ବିଶେଷଜ୍ଞମାନଙ୍କର ପରାମର୍ଶ ନିଅ । ପଠନ ଶେଷରେ ଗୁରୁ ଶିଷ୍ୟକୁ କହୁଥିଲେ, ଯନ୍ମେଶ୍ରୁତମ୍, ଯଦଧୀତମ୍ ତନ୍ମେମନସି ତିଷ୍ଠତୁ, ଜିହ୍ୱାତେ ମଧୁମଦ୍‌ବଚଃ କର୍ଣ୍ଣାଭ୍ୟାଂ ଭୂରିଶୁଶ୍ରୁବେ ଇତ୍ୟାଦି ଯାହା ମୋ'ଠାରୁ ଶୁଣିଲ ଏବଂ ଯାହାସବୁ ଅଧ୍ୟୟନ କଲ, ସେସବୁ ତୁମ ମନରେ ରହୁ, ତୁମର ରସନା ମଧୁର କଥା କହୁ, କର୍ଣ୍ଣ ଦୁଇଟି ଭଲ ଭଲ କଥା ଶୁଣିବା ପାଇଁ ସାମର୍ଥ୍ୟ ଲାଭ କରୁ, ଏହିପରି ଅନେକ ଅନୁଶାସନ । ପୁରାତନ ଯୁଗରେ ଆମର ସାମାଜିକ ଜୀବନକୁ ସୁସଂହତ କରିବା ପାଇଁ ଚାରୋଟି ଆଶ୍ରମ ଧର୍ମର ବ୍ୟବସ୍ଥା ଥିଲା । ଯଥା ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ । ପ୍ରଥମଟି ଗୁରୁକୁଳରେ ରହି ବ୍ରହ୍ମଚର୍ଯ୍ୟ ଧାରଣପୂର୍ବକ ଶିଷ୍ୟମାନେ ବେଦାଦି ଶାସ୍ତ୍ର ଅଧ୍ୟୟନ କରୁଥିଲେ । ଦ୍ୱିତୀୟଟି ହେଲା ଗାର୍ହସ୍ଥ୍ୟ ଜୀବନ– ଗୃହସ୍ଥ ହିସାବରେ ପ୍ରତିଦିନ ପାଞ୍ଚୋଟି ଯଜ୍ଞ କରିବାର ବ୍ୟବସ୍ଥା ଥିଲା । ପ୍ରଥମରେ ବ୍ରହ୍ମଯଜ୍ଞ (ସ୍ୱାଧ୍ୟାୟ ଅଧ୍ୟାପନ), ଦ୍ୱିତୀୟରେ ଅଗ୍ନିହୋତ୍ର, (ହୋମାଦିକ୍ରିୟା), ତୃତୀୟରେ ପିତୃଯଜ୍ଞ (ଶ୍ରାଦ୍ଧାଦି କ୍ରିୟା), ଚତୁର୍ଥରେ ଭୂତଯଜ୍ଞ (ପଶୁପକ୍ଷୀମାନଙ୍କର ସେବା), ପଞ୍ଚମରେ ନୃଯଜ୍ଞ (ଅତିଥି ସତ୍କାର) । ଏହି ପଞ୍ଚ ମହାଯଜ୍ଞ ଗୃହକର୍ତ୍ତା ପ୍ରତିଦିନ ପାଳନ କରିବାର ବ୍ୟବସ୍ଥା ଥିଲା ।

ତୃତୀୟରେ ବାନପ୍ରସ୍ଥ– ଏହି ସମୟରେ ସାଂସାରିକ ଜୀବନରୁ ଅବ୍ୟାହତି ନେଇ ସବୁ ପ୍ରକାର ଆସକ୍ତି ମାୟା ମମତାକୁ ଛିନ୍ନ କରି ଈଶ୍ୱରାର୍ପିତ ଭାବନାରେ କର୍ମକରି ଯିବା ।

ଚତୁର୍ଥଟି ହେଲା ସନ୍ନ୍ୟାସ– ଅର୍ଥାତ୍ ସାଂସାରିକ ବନ୍ଧନକୁ ଛିନ୍ନ କରି ଭଗବଦାରାଧନାରେ ଆତ୍ମନିୟୋଗ କରିବା ।

ଅତୀତର ପ୍ରେକ୍ଷାପଟରେ ମଣିଷ ଜୀବନକୁ ସରସ ସୁନ୍ଦର ଓ ଆଧ୍ୟାତ୍ମିକ କରିବା ପାଇଁ ଗୁରୁଶିଷ୍ୟ ସମ୍ପର୍କୀୟ ବହୁ ଉପାଖ୍ୟାନ ଶୁଣିବାକୁ ମିଳେ । ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କର ଗୁରୁ ଥିଲେ ବଶିଷ୍ଠ । ଭଗବାନ ଶ୍ରୀକୃଷ୍ଣଙ୍କର ଗୁରୁ ଥିଲେ ମହର୍ଷି ସାନ୍ଦିପନୀ । ସେହିପରି ଦେବତାମାନଙ୍କର ଗୁରୁ ବୃହସ୍ପତି, ଅସୁରମାନଙ୍କର ଗୁରୁ ଶୁକ୍ରାଚାର୍ଯ୍ୟ । ଏତଦ୍‌ବ୍ୟତୀତ ଆରୁଣିଙ୍କର ଶିଷ୍ୟ ଉପମନ୍ୟୁ, ବରତନ୍ତୁଙ୍କର ଶିଷ୍ୟ କୌତ୍ସ । ଏହିପରି ଗୁରୁ–ଶିଷ୍ୟ ସମ୍ପର୍କୀୟ

ବହୁ ଉପାଖ୍ୟାନ ସାମାଜିକ ଜୀବନକୁ ଦିଗ୍‌ଦର୍ଶନ ଦେଇଥାଏ। ସେ ସମୟର ଆଉ କେତୋଟି ଶିଷ୍ୟ ଯଥା– ଜାବାଳି, ନଚିକେତା ଓ ସତ୍ୟକାମ ସେମାନଙ୍କ ଗୁରୁଭକ୍ତି ଯୋଗୁଁ ଏବେବି ଅବିସ୍ମରଣୀୟ।

ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା
ଉପଦେକ୍ଷନ୍ତି ତେ ଜ୍ଞାନଂ ଜ୍ଞାନିନଃ ତତ୍ତ୍ୱଦର୍ଶିନଃ ।

ମନ୍ତ୍ରଦ୍ରଷ୍ଟା ଗୁରୁଙ୍କୁ ସଭକ୍ତି ପ୍ରଣାମ ଓ ସେବାଦି ଦ୍ୱାରା ସନ୍ତୁଷ୍ଟ କରି ବିବିଧ ପ୍ରଶ୍ନ ପଚରା ଯାଇଥାଏ, ସେ ତତ୍ତ୍ୱଦର୍ଶୀ ଗୁରୁମାନେ ସନ୍ତୁଷ୍ଟ ହୋଇ ଶିଷ୍ୟମାନଙ୍କୁ ଯଥାର୍ଥ ଦିଗ୍‌ଦର୍ଶନ ଦେଇଥାନ୍ତି । ଭଗବାନ କୃଷ୍ଣ, ବଳରାମ ଓ ସୁଦାମା ପ୍ରଭୃତି ଅନେକ ଶିଷ୍ୟ ଆଚାର୍ଯ୍ୟ ସାନ୍ଦିପନୀଙ୍କର ଶିଷ୍ୟ ଥିଲେ । ସେମାନେ ଗୁରୁକୁଳରୁ ବିଦାୟ ନେବା ସମୟରେ ଗୁରୁଦମ୍ପତିଙ୍କ ନିକଟରେ ପହଞ୍ଚି ଦକ୍ଷିଣା ଯାଚିଲେ । ତାଙ୍କର ବଳିଷ୍ଠ ଯୁକ୍ତି ଥିଲା– 'ମୃତୋଯଜ୍ଞସ୍ତଦକ୍ଷିଣଃ'– ଦକ୍ଷିଣା ବିହୀନ ସମସ୍ତ ବୈଦିକ କର୍ମ ନିଷ୍ଫଳ ହୋଇଯାଏ । ଗୁରୁଦମ୍ପତି କହିଲେ, ତୁମ୍ଭମାନଙ୍କର ଅଧ୍ୟୟନ ସାର୍ଥକ ହୋଇଛି । ଏବେ ଯାଅ ଅଧୀତବ୍ୟ ବିଷୟକୁ ଜନସେବାରେ ବିନିଯୋଗ କର, ଏହାହିଁ ହେବ ଆମର ଗୁରୁଦକ୍ଷିଣା । ଏହା ଶୁଣି ଶ୍ରୀକୃଷ୍ଣ କହିଲେ, ଗୁରୁଙ୍କୁ ଦକ୍ଷିଣା ଦେବା ଶାସ୍ତ୍ରାନୁମୋଦିତ, ତା' ନହେଲେ ଆମର ଅଧୀତ ବିଦ୍ୟା ବ୍ୟର୍ଥ ହୋଇଯିବ । ଏକଥା ଶୁଣି ଗୁରୁଦମ୍ପତି କହିଲେ– ଆମର ପୁଅମାନଙ୍କୁ ସମୁଦ୍ର ଗ୍ରାସ କରିଛି, ତୁମେ କ'ଣ ସମୁଦ୍ରଠାରୁ ଆମର ସେହି ସପ୍ତପୁତ୍ରଙ୍କୁ ଫେରାଇ ଆଣିପାରିବ ? କୃଷ୍ଣ ବଳରାମ ସମ୍ମତି ଜଣାଇ ସମୁଦ୍ର ସହିତ ସଂଗ୍ରାମ କରିବାକୁ ଯାତ୍ରା କଲେ । ତେଣେ ସମୁଦ୍ର ଏକଥା ଜାଣି ଯୁଦ୍ଧ ପାଇଁ ପ୍ରସ୍ତୁତ ରହିଲା । ଯେତେବେଳେ ମହାସାଗର ଭଗବାନଙ୍କର ସଚ୍ଚିଦାନନ୍ଦ ରୂପ ଦର୍ଶନ କଲା, ସେତେବେଳେ ତା'ର ଅହମିକା ବୁଦ୍‌ବୁଦ୍ ପରି ମିଳେଇ ଗଲା । ସେ ବିନମ୍ରତାର ସହ ପ୍ରାର୍ଥନା କରି କହିଲା, ପ୍ରଭୋ ! ମୁଁ ମନେ ମନେ ଆପଣଙ୍କ ପ୍ରତି ଅସୂୟାପ୍ରବଣ ହୋଇଥିଲି, ମତେ କ୍ଷମା କରିବେ, ମୁଁ ଗୁରୁପୁତ୍ରମାନଙ୍କୁ ଆପଣଙ୍କୁ ସମର୍ପଣ କରିଦେଉଛି । ଏହା ପରେ ଶ୍ରୀକୃଷ୍ଣ ଗୁରୁ ପୁତ୍ରଙ୍କୁ ନେଇ ଗୁରୁଦମ୍ପତିଙ୍କୁ ଯେତେବେଳେ ପ୍ରତ୍ୟର୍ପଣ କଲେ ସେତେବେଳେ ତାଙ୍କର ଚକ୍ଷୁ ଲୋତକସ୍ନାତ ହୋଇଗଲା । ସେ ଆଶୀର୍ବାଦ ମୁଦ୍ରାରେ ସେମାନଙ୍କୁ ବିଦାୟ ଦେଇ ଅନ୍ୟ ଏକ ମାନସିକ ଯନ୍ତ୍ରଣାରେ ଦଗ୍ଧୀଭୂତ ହେଲେ । ଏହାହିଁ ଥିଲା ଗୁରୁଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତିର ଅପୂର୍ବ ନିଦର୍ଶନ ।

ଏହି ଗୁରୁଭକ୍ତି ସମ୍ପର୍କିତ ଭୂରି ଭୂରି ଦୃଷ୍ଟାନ୍ତ ଥିଲେ ମଧ୍ୟ ଆଉ ଗୋଟିଏ ଉଦାହରଣ ଏଠାରେ ପ୍ରାସଙ୍ଗିକ ହେବ । ଆଚାର୍ଯ୍ୟ ବରରୁଚିଙ୍କ ଆଶ୍ରମରେ କୌତ୍ସ ନାମରେ ଜଣେ ଶିଷ୍ୟ ଅଧ୍ୟୟନ କରୁଥିଲେ । ଅଧ୍ୟୟନ ଶେଷରେ ସେ ଯେତେବେଳେ ଗୁରୁଙ୍କୁ ଦକ୍ଷିଣା ଦେବାକୁ ଚାହିଁଲେ ସେତେବେଳେ ଗୁରୁ କହିଲେ, ତୁମର ଅଧ୍ୟୟନ ଓ ଭକ୍ତିଭାବନାରେ ମୁଁ ନିରତିଶୟ ସନ୍ତୁଷ୍ଟ, ଆଉ ତୁମଠାରୁ ମୋର ଅଧିକ କିଛି ପ୍ରାପ୍ୟନାହିଁ । କିନ୍ତୁ କୌତ୍ସ ଭାବିଲେ ବିନା ଦକ୍ଷିଣାରେ ମୋର ଅଧୀତ ବିଷୟ ବ୍ୟର୍ଥ ହୋଇଯିବ, ଦୟାକରି ମୋଠାରୁ ଦକ୍ଷିଣା ଗ୍ରହଣ କରନ୍ତୁ । ଏଥିରେ ଆଚାର୍ଯ୍ୟ ଉତ୍‌କ୍ଷିପ୍ତ ହୋଇ କହିଲେ– ମୁଁ ତୁମ୍ଭଙ୍କୁ ଚତୁର୍ଦ୍ଦଶ ବିଦ୍ୟା ଶିକ୍ଷା ଦେଇଛି, ତେଣୁ ଚତୁର୍ଦ୍ଦଶକୋଟି ସ୍ୱର୍ଣ୍ଣମୁଦ୍ରା ଗୁରୁଦକ୍ଷିଣା ରୂପେ ପ୍ରଦାନ କର । ଏହା ପରେ କୌତ୍ସ ବିନୟର ସହ ଗୁରୁଦେବଙ୍କଠାରୁ ବିଦାୟ ନେଇ ମହାରାଜ ରଘୁଙ୍କ ଦରବାରରେ ଉପସ୍ଥିତ ହେଲେ । ରଘୁ ଗୈରିକ ବସ୍ତ୍ର ପରିହିତ ବାଳ ବ୍ରହ୍ମଚାରୀଙ୍କୁ ଦେଖି ଆସନରୁ ଉଠି ଆସି ତାଙ୍କୁ ସ୍ୱାଗତ କରିବା ସହ ଗୋଟିଏ ମାଟି ପାତ୍ରରେ ତାଙ୍କର ପଦଧୌତ କଲେ ଏବଂ ଆଗମନର କାରଣ ଜିଜ୍ଞାସା କଲେ । ବ୍ରହ୍ମଚାରୀ ଭାବିଲେ ଦାନବୀର ରଘୁ ବିଶ୍ୱଜିତ୍ ଯଜ୍ଞରେ ସର୍ବସ୍ୱ ଦାନ କରି ବୋଧହୁଏ ବର୍ତ୍ତମାନ ନିଃସ୍ୱ ହୋଇଯାଇଛନ୍ତି, ତେଣୁ ମୃଣ୍ମୟ ପାତ୍ରରେ ମୋର ପଦଧୌତ କଲେ, ଏହି କଥା ସେ ମନେମନେ ଭାବି ଯେତେବେଳେ ପ୍ରତ୍ୟାବର୍ତ୍ତନ କରିବାକୁ ଉଦ୍ୟତ ହେଲେ ସେତେବେଳେ ରାଜା ରଘୁ କହିଲେ, ହେ ବାଳ ବ୍ରହ୍ମଚାରିନ୍ ! ମୁଁ ଆପଣଙ୍କ ମନୋଭାବ ଠିକ୍ ବୁଝିପାରୁଛି, ଏବେ କୁହନ୍ତୁ ଆପଣଙ୍କ ପ୍ରାର୍ଥିତ ବସ୍ତୁ କ'ଣ ? କୌତ୍ସ କହିଲେ, ମୋ ଗୁରୁଙ୍କୁ ଦକ୍ଷିଣା ଦେବା ପାଇଁ ଚତୁର୍ଦ୍ଦଶ କୋଟି ସ୍ୱର୍ଣ୍ଣ ମୁଦ୍ରା ଦରକାର । ରାଜା ନିଜର ସମ୍ମତି ଜଣାଇ କୁବେର ପୁରୀକୁ ଅଭିଯାନ ପାଇଁ ସେନାମାନଙ୍କୁ ନିର୍ଦ୍ଦେଶ ଦେଲେ । ଏତିକିବେଳେ ଦ୍ୱାରପାଳ ଆସି କହିଲା ମଣିମା, ଆମ କୋଷାଗାରରେ ଲକ୍ଷ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ବୃଷ୍ଟି ହେବାରେ ଲାଗିଛି । ଏହା ଶୁଣି ରାଜା ବିସ୍ମିତ ହେଲେ ଏବଂ ବ୍ରହ୍ମଚାରୀଙ୍କୁ ଏଗୁଡିକ ଗ୍ରହଣ କରିବାକୁ ଅନୁରୋଧ କଲେ । କିନ୍ତୁ କୌତ୍ସ ତାଙ୍କର ଯେତିକି ଆବଶ୍ୟକ ସେତିକି ନେଇ ଗୁରୁଙ୍କୁ ସମର୍ପଣ କଲେ । ଗୁରୁ ଆଶୀର୍ବାଦ ମୁଦ୍ରାରେ ଗ୍ରହଣ କରି ଅଶ୍ରୁ ଛଳଛଳ ନେତ୍ରରେ ସେଦିନ ପ୍ରାଣର ଶିଷ୍ୟଟିକୁ ବିଦାୟ ଦେଇଥିଲେ । ସାମାନ୍ୟ ଲୌହ ଖଣ୍ଡ ସ୍ପର୍ଶ ମଣିର ସମ୍ପର୍କରେ ଆସିଲେ ଯେପରି ସୁବର୍ଣ୍ଣରେ ପରିଣତ ହୋଇଯାଏ, ସେହିପରି ସଦ୍‌ଗୁରୁଙ୍କ ସାହଚର୍ଯ୍ୟରେ ଆସିଲେ ଏ ଅଜ୍ଞ ମାନବ ଜୀବନ ସରସ ସୁନ୍ଦର ଓ ଈଶ୍ୱରାର୍ପିତ ହୋଇଯାଏ । ଆଜିର ଏହି ପବିତ୍ର ଗୁରୁଦିବସରେ 'ଅଣୋରଣୀୟାନ୍ ମହତୋ ମହୀୟାନ୍', ସେହି ଦିବ୍ୟଦ୍ରଷ୍ଟା ଗୁରୁବୃନ୍ଦଙ୍କୁ ଅନନ୍ତ କୋଟି ପ୍ରଣାମ ।

ପ୍ରାକ୍ତନ ସାହିତ୍ୟ ଓ ସଂସ୍କୃତାଚାର୍ଯ୍ୟ
ପି.ଏମ୍.ଏକାଡେମୀ, 'ଚନ୍ଦ୍ରାଳୟ'
ସେଲ୍‌ଟର ଛକ, କଟକ– ୭୫୩୦୦୮

◆◆◆




# ଓଡ଼ିଆ ପରମ୍ପରାରେ ଓଷା ଓ ବ୍ରତ

**ବିପିନ ବିହାରୀ ମହାନ୍ତି**

**ବୁଧେଇ ଓଷା**

ଓଡ଼ିଶାରେ ଜଗନ୍ନାଥଙ୍କୁ କେନ୍ଦ୍ର କରି ବାର ମାସରେ ତେର ଯାତ୍ରା ହୁଏ । ଏହା ବ୍ୟତୀତ ଅନ୍ୟାନ୍ୟ ଓଷାବ୍ରତ ଅଛି । ଏଗୁଡିକ ହେଲା ସୁଦଶାବ୍ରତ, କାର୍ତ୍ତିକବ୍ରତ, ମାଘବ୍ରତ, ସୋମନାଥ ବ୍ରତ, ନିଶା ମଙ୍ଗଳବାର ଓଷା, ଦ୍ୱିତୀୟା ଓଷା, ତଅପୋଇ ଓଷା ଇତ୍ୟାଦି । ଏହି ଓଷାମାନଙ୍କ ମଧ୍ୟରୁ ବୁଧେଇ ଓଷା ଅନ୍ୟତମ । ଏହି ଓଷା ଭାଦ୍ରବ ମାସର ପ୍ରତି ବୁଧବାର ଦିନ ପାଳିତ ହୁଏ ।

ବୁଧେଇ ଓଷାରେ ପାଞ୍ଚଟି ବୁଧବାର ସାଧାରଣ ଭାବରେ ଓଷା କରାଯାଏ । ଏହି ହିସାବକୁ ଧରି ଅନେକ ଗହ୍ମାପୂର୍ଣ୍ଣମୀଠାରୁ ଇନ୍ଦୁପୂର୍ଣ୍ଣିମା, ଆଉ କିଏ ସଂକ୍ରାନ୍ତିକୁ ଧରି ଭାଦ୍ର ସଂକ୍ରାନ୍ତିରୁ ଆଶ୍ୱିନ ସଂକ୍ରାନ୍ତିକୁ ହିସାବକୁ ନେଇଥାନ୍ତି । ଏହି ଓଷାଟି ସାଧାରଣତଃ ସଧବା ନାରୀମାନେ କରିଥାଆନ୍ତି । ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଲା, ସନ୍ତାନ କାମନା କରିବା ଏବଂ ତା'ର ଶୁଭ ମନାସିବା । ଏହା ବ୍ୟତୀତ ସେ କିପରି ବିପଦ ଏବଂ ରୋଗବ୍ୟାଧି ମୁକ୍ତ ହେବ, ସେ ନେଇ ପୂଜା କରିବା ତଥା ଧନ ସଂପଦ ଲାଭ ବା ଆଶା ରଖିବା । ଏହା ନିର୍ଜଳ ଓ ନିଷ୍ଠାର ଓଷା ।

ଏହି ଓଷାରେ ବୁଦ୍ଧିବାମନଙ୍କୁ ପୂଜା କରାଯାଏ । ଏଠାରେ ବୁଦ୍ଧ ବା ବୁଧେଇ ଯିଏ କି ଭୈରବୀ ବା ବିମଳା । ବାମନ କହିଲେ ଭୈରବ ଯିଏ କି ସ୍ୱୟଂ ଜଗନ୍ନାଥ । ଅର୍ଥାତ୍ ଏହି ଓଷାରେ ଆରାଧ୍ୟ ଦେବାଦେବୀ ହେଲେ ଶ୍ରୀଜଗନ୍ନାଥ ଓ ବିମଳା । କିନ୍ତୁ ଜ୍ୟୋତିଷଶାସ୍ତ୍ର ଅନୁସାରେ ଏଥିରେ ନାରୀ ରୂପୀ ବୁଧ ଓ ମଙ୍ଗଳଙ୍କୁ ପୂଜା କରାଯାଏ । କାରଣ ଏମାନେ ସୃଷ୍ଟି କର୍ତ୍ତା ।

ଏହି ଓଷାଟି ବଡ଼ ନିଷ୍ଠାର ସହିତ ପାଳନ କରାଯାଏ । ପୂଜାସ୍ଥଳୀଟିକୁ ଶୁଚି ନିମନ୍ତେ ଗୋବରରେ ଲିପାଯାଏ । ଏହି ପୂଜା ନିମନ୍ତେ ପାଞ୍ଚଟି ରଂଗର ଫୁଲ, ପାଞ୍ଚ ପ୍ରକାରର ଫଳ, ପାଞ୍ଚଟି ଧୂପ, ପାଞ୍ଚଟି ଦୁବ ଅକ୍ଷତ ଦରକାର ହୁଏ । ଏଥିରେ ବେଲପତ୍ର, ଫୁଲମାଳ ଏବଂ ଖଇମାଳରେ ଠାକୁରଙ୍କୁ ଲାଗି କରାଯାଏ । ପ୍ରଥମ ପାଳିରୁ ଏଥିରେ ଗୋଟେ ନଡ଼ିଆ ବସାଯାଏ । ଶେଷ ପାଳିଦିନ ଏହାକୁ ଭାଙ୍ଗି ଠାକୁରଙ୍କୁ ସମର୍ପଣ କରାଯାଏ । ମଝି ପାଳିଗୁଡ଼ିକରେ ପିଠାପଣା ଭୋଗ ହୁଏ । ତେବେ ଶେଷ ପାଳିଦିନ ଅନ୍ତତଃ ୫ ପ୍ରକାରର ପିଠାପଣା ନିଶ୍ଚିତ ହୁଏ । ଏହି ବ୍ରତରେ ଦିନଯାକ ଉପବାସ କରି ରାତିରେ ପୂଜା ପରେ ଉପାସ ଭଙ୍ଗାଯାଏ ଏବଂ ଭୋଗ ଖିଆଯାଏ ।

ବିଶ୍ୱାସ ଯେ ନିଃସନ୍ତାନୀ ମହିଳା ପ୍ରଥମ ପାଳିରୁ ଗୋଟେ ଶାଢ଼ୀ, ପୂଜା ଘର ଦୁଆର ମୁହଁରେ ପକାଇଲେ ସମସ୍ତଙ୍କ ପବିତ୍ର ପଦସ୍ପର୍ଶ ଯୋଗୁଁ ସେ କୃତାର୍ଥ ହୁଏ ଏବଂ ସନ୍ତାନ ପ୍ରସବା ହୁଏ । ଏହି ଲୁଗାକୁ ପାହାଡା କୁହନ୍ତି ।

ଅନ୍ୟାନ୍ୟ ପୂଜା ପରି କୌଣସି ମୂର୍ତ୍ତି ବା ପଟ୍ଟଚିତ୍ର ଏହି ପୂଜାରେ ନିଆଯାଏ ନାହିଁ । ଶିଳ ଏବଂ ଶିଳପୁଆ ଏହାର ଦେବଦେବୀ ଅଟନ୍ତି । ପ୍ରଥମେ ଏହି ଶିଳ ଓ ଶିଳପୁଆକୁ ବଟା ଅଁଳା ପାଣି ସହ ଗଙ୍ଗାଜଳରେ ସ୍ନାନ କରଯାଏ । ତା' ପରେ ହଳଦୀ କନା ଓ ସୂତାରେ ଗୁଡାଇ ନାରୀବେଶ କରାଯାଏ, ମଥାରେ ସିନ୍ଦୂର ଏବଂ ଆଖିରେ କଜଳ ଦିଆଯାଏ । ଏବେ ଏହାର କିଛି ପରିବର୍ତ୍ତନ ହେଲାଣି । ଏହି ପରିବର୍ତ୍ତନରେ ଶିଳ-ଶିଳପୁଆ ଉପରେ ମୂର୍ତ୍ତି ତିଆରି କରାଯାଏ, ତା' ଆଖିକୁ ସୁନା ବା ରୂପାର ଚିତି ମରାଯାଏ ।

ବୁଦ୍ଧିବାମନ ଓଷା ପାଇଁ ସ୍ୱତନ୍ତ୍ର ପୁରାଣ ଅଛି । ଏଥିରେ ବୁଦ୍ଧିବାମନଙ୍କର କରାମତି ବର୍ଣ୍ଣିତ ହୋଇଅଛି । ଏହା ପାଞ୍ଚଟି କାହାଣୀକୁ ନେଇ ରଚିତ । କାହାଣୀଗୁଡିକ ହେଲେ ମଗଧର ସାଧବ ସାଧବାଣୀ, ଯଯାତି ନଗର ଶୁଣ୍ଢି-ଶୁଣ୍ଢିଆଣୀ, ଯାଜପୁରର ବନ୍ଧୁ ମହାନ୍ତି, ଗର୍ଭଶୂନ୍ୟା ବ୍ରାହ୍ମଣୀ ଏବଂ ଆଉଜଣେ ନାରୀ, ଘର




ହରିପୁର। ସଂକ୍ଷେପରେ ଏହା ହିଁ ବୁଢ଼ିବାମନ ଓଷାର ପରମ୍ପରା। ମା' ସଦାବେଳେ ସର୍ବସଂହା। ତା' ତ୍ୟାଗର ପଟାନ୍ତର ନାହିଁ। ମାତୃତ୍ୱ ପାଇଁ ସେ କେତେ ଡହଳ ବିକଳ, ସେକଥା ତା'ଛଡା ଆଉ କେହି ବୁଝିପାରିବ ନାହିଁ। ସନ୍ତାନର ମୁଖ ଚାହିଁ ମରିବା ତା' ପାଇଁ ଯେମିତି ବଡ଼ ଆତ୍ମତୃପ୍ତି। ସେଥିପାଇଁ ସନ୍ତାନ ଓ ତା'ର ଉନ୍ନତି କଳ୍ପେ ତଥା ପରିବାରର ମଙ୍ଗଳାର୍ଥେ ନାରୀର ଏହି ପୂଜା ବୁଢ଼ିବାମନ। ଧନ୍ୟ ତୁମେ ମା' ଧନ୍ୟ ତୁମ ବିଶ୍ୱାସ, ତୁମ ପଦତଳେ କୋଟି ପ୍ରଣାମ ଜଣାଉଛି ମା'।।

### ଖୁଦୁରୁକୁଣୀ ଓଷା

ଓଡ଼ିଆରେ ଜାତୀୟ ପର୍ବପର୍ବାଣି ମଧ୍ୟରୁ 'ତଅପୋଇ' ବା ଖୁଦୁରୁକୁଣୀ ଓଷା ଅନ୍ୟତମ। ଏହି ଓଷାଟି ଭାଦ୍ରବ ମାସର ପ୍ରତି ରବିବାରେ ପାଳିତ ହୁଏ ।

ଏହି ପୂଜାର ଆରାଧ୍ୟ ଦେବୀ ହେଉଛନ୍ତି ମଙ୍ଗଳା। ପୂଜିକା ହେଉଛନ୍ତି ଅନୂଢ଼ା କୁମାରୀ ଏବଂ ସଧବା ବୋହୂମାନେ ବିଶେଷକରି ଭୂଆଷୁଣୀ ବୋହୂମାନେ। ଉଦ୍ଦେଶ୍ୟ ହେଉଛି ଇଚ୍ଛାମତେ ଶୁଭ ଏବଂ ବର ମନାସିବା।

ପୂଜାର ବିଧି ତଥା ତଅପୋଇ ବା ଖୁଦୁରୁକୁଣୀ ଓଷା ସଂପର୍କରେ କୁହାଯାଇଛି । ପୂଜା ଘରଟିକୁ ପୂଜିକାମାନେ ଶୁଚି କରି ଚୂନରେ ଲେପିବେ। ପୂଜା ପରେ ମଙ୍ଗଳାଙ୍କର ଚିତ୍ର ଲେଖିବେ ଅଥବା ଆଜିକାଲିକା ପରି ଭାଲୁକୁଣୀ ମୂର୍ତ୍ତି ବସାଇବେ, ସାତସାଧବ, ସାତ ବୋହୂ ଏବଂ ତଅପୋଇ ଓ ସାତ ବୋଇତର ଛବି ଆଙ୍କିବେ। ସେଦିନ ନିଷ୍ଠାର ସହିତ ଉପବାସ କରିବେ।

ସେଦିନର କାର୍ଯ୍ୟକ୍ରମ ସଂପର୍କରେ ସୁନ୍ଦର ଚିତ୍ରଟିଏ ଲେଖକ ଗୋପିନାଥ ଦାସ ଲେଖିଛନ୍ତି:

ପ୍ରଭାତରୁ ଉଠି ବାଳିକାମାନେ
ମଙ୍ଗଳାମାତାଙ୍କୁ ସୁମରିମନେ।
ଗେଲି, ଦୁଲି ଆଉ ଚମ୍ପା ଗଉରୀ
ସୁଲୋଚନା ସହ ସକଳେ ମିଳି।
ଡାକହାକ ହୋଇ ସରବେ ଗଲେ
ଆନନ୍ଦ ମନରେ ଫୁଲ ତୋଳିଲେ,
ସ୍ନାହାନ ନିମନ୍ତେ ନଦୀକୁ ଯାଇ
ସ୍ନାନ ସାରି ମନେ ମଙ୍ଗଳାଧାୟୀ।
ଓଦାବସ୍ତ୍ରେ ନଦୀ କୂଳରେ ବସି
ବାଲୁକା ପୂଜନ୍ତି ବାଳିକା ମିଶି।।
ହସହସ ହୋଇ ଗୃହେ ଫେରିଲେ
ବସ୍ତ୍ର ପାଲଟିଣ ଫୁଲ ଗୁନ୍ଥିଲେ।
ସୁନା ଚାଙ୍ଗୁଡ଼ିରେ ଅତି ଯତନେ
ଭୋଗ ସାମଗ୍ରୀକୁ ରଖି ସୁମନେ।।
ମଙ୍ଗଳାଙ୍କ ପାଶେ ସକଳବାକି,
ମନବାଞ୍ଛା ସଙ୍ଗେ ମନରେ ଭରି।।
ଆବୋରି ବସିଲେ ପୁରଗଣ,
ପାଞ୍ଚପାଳି ଓଷା ହେଲା ସଂପୂର୍ଣ୍ଣ।।

ଅର୍ଥାତ୍ ପ୍ରତ୍ୟୁଷରୁ ଝିଅମାନେ ଫୁଲ ତୋଳନ୍ତି। ଆବଶ୍ୟକମତେ ପୁଅମାନଙ୍କ ସାହାଯ୍ୟ ନେଇ ଥାଆନ୍ତି। ତା'ପରେ ଗାଧୋଇ ବାଲୁକାର ଗୋଟେ ମୂର୍ତ୍ତି ସେ ଜଳାଶୟ ପାଖେ ତିଆରି କରନ୍ତି ଏବଂ ଯଥାବିଧି ପୂଜନ୍ତି। ତା'ପରେ ଯାହାର ଯାହା ଇଚ୍ଛା ସେକଥା ମନାସନ୍ତି । ଏମିତି ପାଞ୍ଚପାଳି ସଂପୂର୍ଣ୍ଣ ହୁଏ। ଶେଷପାଳି ରାତି ପୂଜା ପରେ ପ୍ରତ୍ୟୁଷରୁ ଦିହୁଡ଼ି ଜାଳି ନାନା ହୋହାଲ୍ଲାରେ ମା'ଙ୍କୁ ବିସର୍ଜନ କରନ୍ତି ସେହି ଜଳାଶୟରେ।

ଏହି ଓଷାରେ ମଙ୍ଗଳାଙ୍କୁ ଖୁଦ କୁଣ୍ଡାରେ ପିଠାକରି ତା' ଦେହରେ ଖୁଦ ତଣ୍ଡୁଳ ପୁର ଦେଇ ବାଡ଼ି ପୂଜା ହେଉଥିବାରୁ ଏହି ଓଷାର ଅନ୍ୟନାମ ଖୁଦୁରୁକୁଣୀ।

ଏହି ଓଷାରେ ମଙ୍ଗଳାଙ୍କର ମହିମା ଓ ସ୍ତୁତିଗାନ କରାଯାଇଛି। ଏହି କାହାଣୀଟି ଏକ ଆଖ୍ୟାନର ଉପଖ୍ୟାନ ଅଟେ। ଶ୍ରୀକୃଷ୍ଣ ତାଙ୍କ ପାଟରାଣୀ ସମେତ ଅନ୍ୟାନ୍ୟ ଦାସୀମାନଙ୍କୁ ତଅପୋଇ କାହାଣୀ ଶୁଣାଉଛନ୍ତି ଓ ତଅପୋଇ କିପରି ମଙ୍ଗଳାଙ୍କୁ ପୂଜି ମନବାଞ୍ଛା ପୂର୍ଣ୍ଣ କରିଛି ଦର୍ଶାଇଛନ୍ତି।

ତନୟ ବୋଲି ଜଣେ ସାଧବ ଥିଲେ। ତାଙ୍କର ସାତପୁଅ, ସାତ ବୋହୂ ଏବଂ ଗୋଟିଏ ବୋଲି ଗେହ୍ଲା ଝିଅ ତଅପୋଇ ଥିଲା। ସେ ପୁଣି ସବୁଠୁ ସାନ। ତା' ପ୍ରତି ସମସ୍ତଙ୍କର ବହୁ ସ୍ନେହ, ଶ୍ରଦ୍ଧା ଓ ଯତ୍ନ ଥିଲା । ସେ ଚାହିଁଲାମାତ୍ରେ ସବୁକିଛି ମିଳିଯାଉଥିଲା। ଅଭାବ ବୋଲି ତା'ପାଇଁ କିଛି ନଥିଲା।

ଏକଦା ସେ ବାଉଁଶର କୁଲେଇ ଓ ଟୋକେଇ ଧରି ଖେଳୁଥିଲାବେଳେ ଗୋଟିଏ ରାଣ୍ଡି ବ୍ରାହ୍ମଣୀ ଆସି ତାକୁ ଉସ୍‌କାଇ ଓ ପ୍ରବର୍ତ୍ତାଇ କହିଲା :

ତୋ'ପରା ହୋଇଥିଲେ ମୁହିଁ, କରନ୍ତି ସୁବର୍ଣ୍ଣ କୁଲାଇ।
ବାପ ମାଆଙ୍କୁ କରି ଦ୍ୱନ୍ଦ୍ୱ, କରାନ୍ତି ସୁବର୍ଣ୍ଣର ଚାନ୍ଦ।।

ବାସ୍, ଏତିକିରେ ତଅପୋଇ ରୁଷେ ଏବଂ ତା' ପାଇଁ ସୁନାର କୁଲେଇ ଏବଂ ଚାନ୍ଦ ତିଆରି ହୁଏ । ସାତଭାଇମାନେ ଏହାପରେ ବାଣିଜ୍ୟରେ ଯାଆନ୍ତି। ପୁନଶ୍ଚ ସେହି ରାଣ୍ଡି ବ୍ରାହ୍ମଣୀ




ଆସି ବୋହୂମାନଙ୍କ ନିକଟରେ ଚକ୍ରାନ୍ତ କରେ। ତଅପୋଇ ଛେଳି ଜଗେ । ବଡ଼ ଭାଉଜଙ୍କର ଛେଳି 'ଘରମଣି' ହଜେ ଏବଂ ମଙ୍ଗଳାଙ୍କୁ ପୂଜାକରି ସେ ଛେଳି ପାଏ। ସାନ ଭାଉଜ ବ୍ୟତୀତ ଅନ୍ୟ ଭାଉଜମାନଙ୍କଠାରୁ ନିର୍ଯ୍ୟାତନା ସହେ। ବିଶେଷକରି ବଡ଼ ଭାଉଜଙ୍କଠାରୁ ଅକଥନୀୟ ଯନ୍ତ୍ରଣା ପାଏ ଓ ସାନ ଭାଉଜ ତାଙ୍କୁ ଭାରି ଭଲପାଏ ।

ନିଳେନ୍ଦ୍ରୀ ନାମେ ସାନ ବୋହୂ,
ତଅପୋଇର ପ୍ରିୟ ସେହୁ।

ଛେଳି ଜଗାବେଳେ ସାନ ଭାଉଜ ତା' ପାଳିରେ ମୁଠାଏ ଭଲ ଖାଇବାକୁ ଦିଏ। ଅନ୍ୟମାନେ ତଳେ ମୂଷାମାଟି ଇତ୍ୟାଦି ରଖି ତା' ଉପରେ ପତର ବିଛାଇ ଗଣ୍ଡାଏ ଭାତ ଛିଞ୍ଚି ଦିଅନ୍ତି।

ତଅପୋଇ ମଙ୍ଗଳାଙ୍କୁ ପୂଜା କଲା ତା' ଭାଇମାନେ ଶୀଘ୍ର ଫେରି ଆସନ୍ତୁ ବୋଲି । ତା'ପରେ ଫେରିଆସନ୍ତି ଭାଇମାନେ। ଘୋର ବନସ୍ତରେ ଦେଖାହୁଏ ରାତ୍ରିକାଳେ ସେମାନଙ୍କ ସହିତ। ସେ ଦୁଃଖ କୁହେ। ସେମାନେ ତା'କୁ ଗୋଟାଏ ତୀକ୍ଷ୍ଣ ଛୁରୀକା ଦେଇ ବୋଇତର ଗୋଟେ କୋଣରେ ଠାକୁରାଣୀ କରି ବସାଇଲେ। ତା' ଭାଉଜମାନେ ଯେତେବେଳେ ବୋଇତ ବନ୍ଦାଇବାକୁ ଆସିଲେ, ତଅପୋଇ ଭାଇମାନଙ୍କ କହିବାମତେ ସାନ ଭାଉଜକୁ ଛାଡ଼ି ଅନ୍ୟ ଛ'ଜଣଙ୍କ ନାକର ବଉଳି କାଟିଦିଏ। ସେମାନେ ଲଜ୍ଜିତ ହୋଇ ବନସ୍ତକୁ ଯାଇ ବାଘ ହାବୁଡ଼େ ପଡ଼ନ୍ତି। ସଜ୍ଞାହୀନ ହୁଅନ୍ତି। ବିରୂପା ନାଁରେ ଜଣେ ଶବର ମହାଦେବଙ୍କ ଦୟାରୁ ତାଙ୍କୁ ଜୀବନ୍ୟାସ ଦିଏ । ସେମାନେ ବାପ ଘରକୁ ଚାଲିଯାଆନ୍ତି।

ଏପଟେ ତଅପୋଇର ବିବାହ ପାଇଁ ରତ୍ନାକର ନାମଧ୍ୟେୟ ଏକ ସୁନ୍ଦର ଏବଂ ସୁଶ୍ରୀ ସାଧବ କୁମାର ସହିତ ଠିକ୍ କରାଗଲା ଏବଂ ଯଥାବିଧି ବିବାହ ସମ୍ପନ୍ନ ହେଲା। ଅଥଚ ସେ ତଅପୋଇକୁ ଭୋଗ କରିପାରିଲା ନାହିଁ। ତଅପୋଇ ସତରେ ଜଣେ ଅପସରୀ– ଗନ୍ଧର୍ବ ପନ୍ନୀ। ପୂର୍ବ ଅଭିଶାପରୁ ଷୋଳ ବର୍ଷଯାଏ ତାକୁ ମର୍ତ୍ତ୍ୟଦଣ୍ଡ ଥିଲା ଏବଂ ଅଷ୍ଟମଙ୍ଗଳା ଦିନ ଏହା ପୂର୍ଣ୍ଣ ହେଲା। ଗନ୍ଧର୍ବ ଆସି ତଅପୋଇକୁ ନେଇଗଲେ। ତଅପୋଇର ମର ଶରୀର ଏ ପୃଥ୍ୱୀରେ ପଡ଼ିରହିଲା। ତଅପୋଇ ଯଥାର୍ଥରେ ଜଣେ ଅପସରୀ ହୋଇନଥିଲେ, ସେ କ'ଣ ମର୍ତ୍ତ୍ୟପୁରରେ ସୁନାକୁଲେଇ, ସୁନାଚାନ୍ଦ ଏବଂ ହୀରା କଣ୍ଢେଇ ମାଗିଥାନ୍ତା ?

ସାଧବ ସାତ ବୋହୂମାନେ ଫେରନ୍ତି। ସେମାନେ ମଙ୍ଗଳାଙ୍କ ମହିମା ଜାଣି ତାଙ୍କର ପୂଜା କରନ୍ତି। ଏହି କ୍ରମରେ ଆଜିଯାଏଁ ଚାଲିଛି ଖୁଦୁରୁକୁଣୀ ଓଷା।

ଓଷାଟିରେ ପିତାମାତାଙ୍କର ବାତ୍ସଲ୍ୟ ପ୍ରୀତି, ଭାଇ ଭଉଣୀମାନଙ୍କର ସ୍ନେହବନ୍ଧନ, ନଣନ୍ଦ–ଭାଉଜଙ୍କର ମଧୁର ଅଥବା ତିକ୍ତ ସଂପର୍କ, କୁଚକ୍ରୀମାନଙ୍କର ଘରଭଙ୍ଗା ନୀତି ଓ ଅସହିଷ୍ଣୁ ଭାବ ବେଶ୍ ବାରି ହୁଏ। ତା' ସହିତ ମନୋରଞ୍ଜନ ଧର୍ମୀ, ଅପସରା କାହାଣୀ, ଏହିପରି ଆଉ କିଛି ଶିକ୍ଷଣୀୟ ଉପାଦାନ ଦେବା ସହିତ ଧାର୍ମିକ ଚେତନା ସୃଷ୍ଟି କରେ, ଯାହାକି ନୈତିକ ମୂଲ୍ୟବୋଧର ପରିଚାୟକ।

କର୍ପୂର ଯାଇଛି, କନା ପଡ଼ିରହିଛି। ତଅପୋଇ ପରି ଖୁଦୁରୁକୁଣୀ ଓଷା ଏବେ ପୁରୁଣା ହୋଇଗଲାଣି। ଆଧୁନିକତାର ଚାକଚକ୍ୟ ଏବଂ ସ୍ପର୍ଶରେ ଏହା ମଉଳି ଗଲାଣି । ଏହା ଏବେ ଏକ ସ୍ୱାଦହୀନ, ସରାଗହୀନ ବିଧି ପାଲଟିଛି । ଏଥିରେ ଶିକ୍ଷଣ ବା ରସାତ୍ମକ ବିଭବ କିମ୍ବା ମନୋରଞ୍ଜନଧର୍ମୀ ଆଉ କିଛି ନାହିଁ ।

**ସୁଦଶାବ୍ରତ**

ଓଡ଼ିଶାର ହିନ୍ଦୁ ପରିବାରରେ ପାଳିତ ହେଉଥିବା ଓଷା ଏବଂ ବ୍ରତଗୁଡ଼ିକ ମଧ୍ୟରେ ଅଧିକାଂଶ ଓଡ଼ିଆମାନଙ୍କର ନିଜସ୍ୱ। ଏହି ଓଷା ବା ବ୍ରତ ପାଳନ ପଛରେ ଉଭୟ ଧାର୍ମିକ ଏବଂ ସାମାଜିକ କାରଣ ସହିତ ବୈଜ୍ଞାନିକ ସତ୍ୟତା ମଧ୍ୟ ଅଛି । ଏଗୁଡ଼ିକ ଯଦିଓ ଦେବଦେବୀଙ୍କ ନାଁକୁ ନେଇ କରାଯାଏ, ଏହା ପଛରେ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନିହିତ ଥାଏ ।

ମାଣବସା ଗୁରୁବାର ମାର୍ଗଶିର, ମାଘ ଏବଂ ଆଷାଢ଼ ମାସରେ ପାଳିତ ହୁଏ। ତେବେ ମାଣ କେବଳ ମାର୍ଗଶିର ମାସରେ ବସେ ବୋଲି ମାର୍ଗଶିର ମାଣବସା ବୋଲି କୁହାଯାଏ। ଏହା ଧନ ଏବଂ ସୌଭାଗ୍ୟର ଦେବୀ ଲକ୍ଷ୍ମୀଙ୍କ ପାଇଁ କରାଯାଏ ।

ସୁଦଶାବ୍ରତ ସେହି ଲକ୍ଷ୍ମୀଙ୍କ ଉଦ୍ଦେଶ୍ୟରେ ଗୁରୁବାରେ ପାଳିତ ହୁଏ। ଯେଉଁ ମାସର ଶୁକ୍ଳପକ୍ଷ ଦଶମୀରେ ଗୁରୁବାର ପଡ଼େ, ସେହିଦିନ ସୁଦଶାବ୍ରତ ନାରୀମାନେ ପାଳନ କରନ୍ତି । ଏହି ବ୍ରତ ପାଳନରେ ସକଳ ମନୋବାଞ୍ଛା ବିଶେଷକରି ପରିବାରର ମଙ୍ଗଳ ହୁଏ ବୋଲି ବିଶ୍ୱାସ ଅଛି । ଧନ ଜନ, ଗୋପ ଲକ୍ଷ୍ମୀରେ ସଂସାର ପରିପୂର୍ଣ୍ଣ ହୁଏ ଓ ସ୍ୱାମୀ ଏବଂ ସନ୍ତାନମାନଙ୍କର ଶୁଭହୁଏ ।

ଏହି ବ୍ରତର କିଛି ବିଧି ବିଧାନ ଅଛି । ଏକବର୍ଣ୍ଣ ଗାଈର ଗୋବର ଆଣି ପ୍ରଥମେ ଘର ଦୁଆର ଲିପିବ। ତା'ପରେ ସ୍ନାନସାରି ଆସି ତଣ୍ଡୁଳବାଟି ଝୋଟି ପକାଇବ । ଏହାପରେ ମହାଲକ୍ଷ୍ମୀଙ୍କୁ ସ୍ମରଣ କରି ଦଶବର୍ଣ୍ଣ ମୁରୁଜରେ ପିତୁଳା ଲିପିବ ଓ ଦଶ ପାଖୁଡ଼ାର ପଦ୍ମଫୁଲଟିଏ ଆଙ୍କି ତା' ଉପରେ ପୂର୍ଣ୍ଣକୁମ୍ଭରେ ଖୁଦ, ଆମ୍ବଡାଳ





ଓ ନଡ଼ିଆ ଥୋଇ ତହିଁରେ ଥାପିବ। ଏହା ପରେ ଦଶନାଡ଼ ଦୁବ, ହଳଦୀର ଚୂର୍ଣ୍ଣ, ଦଶଗୋଟି ଗୁଆ, ଦଶବର୍ଣ୍ଣର ପୁଷ୍ପ, ଶୁକ୍ଳ ପାଞ୍ଚବର୍ଣ୍ଣ ଏବଂ ରକ୍ତ ପାଞ୍ଚବର୍ଣ୍ଣ, ପାଟସୂତା ଦଶଖିଅ ତ୍ରିଗୁଣ କରିବ। ଶୁକ୍ଳ ସୂତା ଦଶଗଣ୍ଠି ପକାଇବ, ମହାଲକ୍ଷ୍ମୀଙ୍କୁ ସ୍ମରଣ କରିବ, ଗୁଆ ଘିଅରେ ଦଶମୁଖୀ ଦୀପଜାଳିବ, ଦଶଗୋଟି ମଣ୍ଡାପିଠା, ଛେନା, ନଡ଼ିଆ, କଦଳୀ, ମୁଗ, ଜୀରା, କର୍ପୂର ଦେଇ ବିଧିରେ ତିଆରି କରି ସେଠି ଥୋଇବ, ନିଜେ ଶୁକ୍ଳପାଟ ପିନ୍ଧିବ, ପୂଜାବେଦୀ ଉପରେ ଚାନ୍ଦୁଆ ଟାଣିବ । ଚଉରୀ ନାମକ ବେତ ପାଖରେ ରଖିବ ଏବଂ ଦଶମୁଠା ତଣ୍ଡୁଳ ଘଟ ଚାରିପାଖରେ ରଖିବ । ପୂର୍ଣ୍ଣ କୁମ୍ଭରେ ଦଶମୁଠାର ହଳଦୀ, ସିନ୍ଦୂର ଏବଂ କଜ୍ଜ୍ୱଳ ଦେବ ଏବଂ ଏହାପରେ ଲକ୍ଷ୍ମୀଙ୍କୁ ଖଟୁଲିରେ ଶୁକ୍ଳ ପାଟେକ ପହୁଡ଼ି ନେତର ମୁକୁଳି ଦେଇ ବିଜେ କରାଇବ। ଏଥୁ ଅନ୍ତେ ପୂଜାସାରି ବ୍ରତକୁ ଆଣିବ। ମହାଲକ୍ଷ୍ମୀଙ୍କ ନାମ ସ୍ମରଣ କରି ଏଥର ବ୍ରତ ସୂତାରେ ଦଶଗୋଟି ଗଣ୍ଠି ପକାଇ ପ୍ରଥମେ ମହାଲକ୍ଷ୍ମୀ, ଦ୍ୱିତୀୟେ କମଳା, ତୃତୀୟେ ହରିପ୍ରିୟା, ଚତୁର୍ଥେ ପଦ୍ମାଳୟା, ପଞ୍ଚମେ ଦାରିଦ୍ର୍ୟ ଭଞ୍ଜନି, ଷଷ୍ଠେ କୌମଦକୀ, ସପ୍ତମେ ଗଜ ବାହିନୀ, ଅଷ୍ଟମେ ଚଞ୍ଚଳା, ନବମେ ଲୋକମାତା, ଦଶମେ ରୁକ୍ମିଣୀ ନାମ ଧରି ଗଣ୍ଠି ପକାଇବ ଏବଂ ତାହାକୁ ନେଇ ବାମ ହାତରେ ବାନ୍ଧିବ। ଏହା ପରେ ବ୍ରାହ୍ମଣ ବା ନିଜେ ମହାଲକ୍ଷ୍ମୀଙ୍କ ସ୍ତୁତି ଗାନ କରିବ ।

ପୂଜା ଆରମ୍ଭ କଲେ, ଚଉଦବର୍ଷ ଯାଏଁ ପାଳନ କରିବ ଏବଂ ତାକୁ ଉଜାଁଇବ ବୋଲି ଲେଖାଅଛି । ଉଜେଇବା ପାଳିରେ ସୁବର୍ଣ୍ଣର ଦଶନାଡ଼ ଦୁବ, ଦଶଗୋଟି ତଣ୍ଡୁଳ, ଦଶଯୋଡ଼ା ପାତ୍ରର, ଦଶଗୋଟି ପଇତା, ବ୍ରତ ଦଶଗୋଟି, ଦଶଗୋଟି କଜ୍ଜ୍ୱଳ ଦେଇ ଦଶଗୋଟି ନୂଆ କୁମ୍ଭ କରିବ ଏବଂ ଯଥାବିଧି ପୂଜା ଉଦ୍‌ଯାପନ କରିବ । ଏହିରୂପେ କଲେ ଗୋଟିଏ ଦ୍ୱୀପର ରାଜା ହୋଇଥିଲେ ସାତଟି ଦ୍ୱୀପର ରାଜା ହେବ।

ଏହି ସତ୍ୟକୁ ପ୍ରତିପାଦନ ପାଇଁ ଦୁଇ ପ୍ରକାର ସୁଦଶାବ୍ରତ ବହି ପ୍ରଚଳିତ ଅଛି । ଗୋଟିଏ ପଦ୍ୟରେ ଓ ଅନ୍ୟଟି ଗଦ୍ୟରେ ଲିଖିତ। ପଦ୍ୟମତେ ବିଷ୍ଣୁବର ପଣ୍ଡା ନାମରେ ଜଣେ ବ୍ରାହ୍ମଣ ଥିଲେ। ତାଙ୍କ ସ୍ତ୍ରୀ ଭାଗ୍ୟବତୀ ସୁଦଶାବ୍ରତ କରନ୍ତି । ଏକଦା ସେ ବ୍ରତଟି ଥୋଇ ଗାଧୋଉଥିବା ବେଳେ ଚିଲଟିଏ ସେଇଟିକୁ ଝାମ୍ପିନେଲା। ସେ ତାକୁ ବନସ୍ତ ଭିତର ଯାଏଁ ଅନୁସରଣ କଲେ। ଚିଲଟି ଅଦୃଶ୍ୟ ହୋଇଗଲା । ସେ ଦୁଃଖରେ କାନ୍ଦୁଥିବା ବେଳେ ସେଠାରେ ନଳରାଜା ପହଞ୍ଚିଲେ। ଦୁଃଖର କାରଣ ପଚାରିବାରୁ ସେ ବ୍ରାହ୍ମଣୀ ତାଙ୍କୁ ସତ୍ୟ କରାଇଲା ଏବଂ ରାଜା ସତ୍ୟ କରିବାରୁ ସେ ମହାରାଣୀଙ୍କ ଦମୟନ୍ତୀଙ୍କଠାରୁ ବ୍ରତ ଆଣି ତାକୁ ଦେବାକୁ ଭିକ୍ଷା କଲା । ମହାରାଜା ସର୍ତ୍ତ ରକ୍ଷା ପାଇଁ ରାଣୀଙ୍କୁ ଅନୁରୂପ ସତ୍ୟ କରାଇ ବ୍ରତ ଆଣି ବ୍ରାହ୍ମଣୀକୁ ଦେଲେ। ଏବେ ବ୍ରାହ୍ମଣୀ ଖୁସିରେ ରହିଲା। ରାଜାଙ୍କ କାନ୍ଧରୁ ଲକ୍ଷ୍ମୀ ଛାଡ଼ିଗଲେ। ରାଜା ଦୁଃସ୍ୱପ୍ନ ଦେଖିଲେ ଏବଂ ନିଜର ଏକମାତ୍ର ପୁତ୍ର ସଭାଚକ୍ର ଓ ରାଣୀଙ୍କୁ ଧରି ଭୀମଙ୍କ ରାଜ୍ୟକୁ ଗଲାବେଳେ ବାଟରେ ଗୋଟିଏ ପୋଖରୀ ପଡ଼ିଲା। ସେଠାରେ ସମସ୍ତେ ସ୍ନାନ କରିସାରି କ'ଣ ଖାଇବେ ବୋଲି ଚିନ୍ତା କଲେ। ରାଜା ପୋଖରୀରୁ ଚାରୋଟି ଗଡ଼ିଶାମାଛ ଆଣି ରାଣୀଙ୍କୁ ଦେଲେ ଏବଂ ତାକୁ ପୋଡ଼ିରଖିବା ପାଇଁ କହିଲେ। ରାଜା ଭିକ ମାଗିବା ପାଇଁ ସେହି ବିଷ୍ଣୁବର ପଣ୍ଡାଙ୍କର ଘରକୁ ଯାଇ ସେଠୁ ଅନ୍ନ ମାଗି ଆଣିଲେ। ଦୁଃଖର କଥା ତାକୁ ଖାଇବାକୁ ବାଢ଼ିବା ବେଳକୁ ବାଜପକ୍ଷୀ ଝାମ୍ପ ଦେଲା। ସେତେବେଳକୁ ପୋଡ଼ା ମାଛଗୁଡିକ ଜୀଇଁ ପୋଖରୀକୁ ଡେଇଁ ପଡିଥିଲେ।

ଏହା ପରେ ସେମାନେ ଏକ ନଦୀ ପାର ବେଳେ ପୁତ୍ର ସଭାଚକ୍ରକୁ କୁମ୍ଭୀର ଗିଳିଦେଲା। ସେଠାରୁ ଯାଇ ସେମାନେ ଗୋଟେ ଭଙ୍ଗା ମନ୍ଦିରରେ ଆଶ୍ରୟ ନେଲେ। ରାଣୀ ଅଳଙ୍କାର କାଢ଼ି ଶୋଇଥିବା ବେଳେ ସେ କାନ୍ଥରେ ଥିବା ମୟୂରଚିତ୍ର ତାକୁ ଗିଳିଦେଲା। ଏବେ ରାଣୀଙ୍କ ନିଦ ନଭାଙ୍ଗୁ ରାଜା ଖସିଯାଇ ପଳାଇ ଭୀମରାଜଙ୍କ ପାଖେ ଖଣ୍ଡିଏ ଚାକିରି ମାଗିଲେ। ସେ କ'ଣ କ'ଣ କାମ ଜାଣିଛନ୍ତି ବୋଲି ପଚାରିବାରୁ, ରାଜା ନିଜର ପରିଚୟ ନଦେଇ କହିଲେ :

ନଳ ରାଜାଙ୍କ ସୁପକାର ଥିଲି ମୁହିଁ,<br>
ଗଉରି ଖଉରି ବିଧି ରାନ୍ଧଣା ଜାଣଇ।

ସେଠାରେ ସେ ରୋଷେୟା ହୋଇ ରହିଲେ। ଏହାପରେ ରାଣୀଙ୍କ ନିଦ ଭାଙ୍ଗିଲା । ସେ ଯାଇ ସେହି ରାଜ୍ୟର ମହାଦେଇଙ୍କ ପାଖରେ ପହଞ୍ଚିଲେ । ସେ ଦମୟନ୍ତୀଙ୍କ ମା' ଅଥଚ ଲକ୍ଷ୍ମୀଙ୍କ ମାୟାରୁ କେହି କାହାର ପରିଚୟ ପାଆନ୍ତି ନାହିଁ । ସେଠାରୁ ସେ ଅନ୍ତଃପୁରର ଦାସୀ ହୋଇ ରହିଲେ ।

ପୁଣି ଆସେ ସୁଦଶାବ୍ରତର ଦିନ। ସେଠି ଦମୟନ୍ତୀ ପାଳନ କରନ୍ତି ବ୍ରତ। ନିଜ ରାଜ୍ୟରୁ ମନ୍ତ୍ରୀ ସୁବୁଦ୍ଧିଙ୍କ ନିର୍ଦ୍ଦେଶରେ ପାଟହସ୍ତୀ ସୁବର୍ଣ୍ଣ କଳସୀ ଆଣି ରାଜାଙ୍କ ଶିରରେ ଢାଳିବାରୁ ରାଜା ନିଜ ରାଜ୍ୟ ଓ ସମ୍ପଦ ଫେରିପାଇଲେ ।

ଗଦ୍ୟରେ ଲେଖାଥିବା କାହାଣୀରେ କୌଣସି ରାଜ୍ୟର ରାଣୀ ଓ ମନ୍ତ୍ରୀ ପତ୍ନୀଙ୍କ କାହାଣୀ ନାମରେ ଏହିକଥା ଉପସ୍ଥାପନା କରାଯାଇଛି। ଏଥିରେ ମନ୍ତ୍ରୀଙ୍କ ପତ୍ନୀ ବ୍ରତ ହଜାନ୍ତି। ମନ୍ତ୍ରୀ ରାଜାଙ୍କ




ନାମରେ ରାଣୀଙ୍କ ବ୍ରତ ଆଣିବାକୁ ଦିଅନ୍ତି । ରାଜାଙ୍କର ପୂର୍ବବର୍ଣ୍ଣିତ ଦଶାହୁଏ । ପୁଣି ରାଣୀଙ୍କ ବ୍ରତ କାରଣରୁ ରାଜ୍ୟ ପ୍ରାପ୍ତି ଏବଂ ସମ୍ପଦ ଲାଭ ହୁଏ । କେବଳ ପାର୍ଥକ୍ୟରେ ଗୋଟିଏ ପୁଅ ଜାଗାରେ ଦୁଇଟି ପୁଅ, ଚାରୋଟି ଜିଅଁନ୍ତା ମାଛ ଜାଗାରେ ଦୁଇଟି ମଲା ମାଛ, ମୟୂର ଜାଗାରେ ପେଚା, ଭୀମ ରାଜାଙ୍କ ପରିବର୍ତ୍ତେ ସାଧବ ରତ୍ନାକର ଓ ଲକ୍ଷ୍ମୀଧର ପ୍ରଥମଟିରେ ସୁପକାର ପରିବର୍ତ୍ତେ ଏଠି ଖିରିସାପଣ ଏବଂ ପ୍ରଥମରେ ଅନ୍ତଃପୁର ଦାସୀ ହେଲାବେଳେ ଏଠାରେ ଝିଅ ପରି ରହିବା । ସେଠି ଅଞ୍ଚଳରେ ଅଳଙ୍କାର ବନ୍ଧାବେଳେ ଏଠି ଫରୁଆରେ ବନ୍ଧାହେବା । ସେଠି ମନ୍ତ୍ରୀ ସୁବୁଦ୍ଧିଙ୍କୁ ଏଠି ମନ୍ତ୍ରୀ ସୁଜାଣେଶ୍ୱର,ଏକାକଥା ସେଠି ଦମୟନ୍ତୀଙ୍କ ପିତାଙ୍କ ରାଜ୍ୟକୁ ଏଠି କମଳିନୀଙ୍କ ରାଜ୍ୟ ଲକ୍ଷ୍ମୀଙ୍କ ରାଜ୍ୟ । ଏହିପରି ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । କାହାଣୀଗୁଡ଼ିକ ପଦ୍ମପୁରାଣ ଅବଲମ୍ବନରେ ଲିଖିତ । ପାର୍ଥକ୍ୟ ଏହି ଯେ ପ୍ରଥମ କାହାଣୀରେ ବ୍ରାହ୍ମଣୀ ସୁଦଶାବ୍ରତ ପାଳନ କରୁଛି । ଦ୍ୱିତୀୟ କାହାଣୀରେ ସମୁଦ୍ର ସ୍ନାନ କରି ଦେବ କନ୍ୟାମାନେ ଗୋଟିଏ ମଣ୍ଡପ ଥାପି ଗୁଆ, ଘୃତ ଦେଇ ଗୋଷାମଣି (ମହାଲକ୍ଷ୍ମୀ)ଙ୍କୁ ପୂଜା କରୁଛନ୍ତି ଏବଂ ତାଙ୍କ ସହ ଦେଖାହୁଏ ରାଜା ବିକ୍ରମଙ୍କ ପତ୍ନୀ ରତ୍ନାବତୀ ଏବଂ ମନ୍ତ୍ରୀ ତ୍ରିବଟେଶ୍ୱରଙ୍କର ସ୍ତ୍ରୀ ପଦ୍ମାବତୀ । ଦେବକନ୍ୟାମାନେ ଏହି ବ୍ରତର ମହତ୍ୱ ସେମାନଙ୍କୁ ବୁଝାନ୍ତି ଏବଂ ମର୍ତ୍ତ୍ୟରେ ପାଳନ କରିବାକୁ କୁହନ୍ତି ।

କଥାରେ ଅଛି ମନ ପାଖରେ ଧନ ଥିଲେ ସୁଖ ଅଛି, ସବୁ ଅଛି । ଉଦ୍‌ଯୋଗୀ ପୁରୁଷ ବା ନାରୀ କାନ୍ଧରେ ଲକ୍ଷ୍ମୀ ଅର୍ଥାତ୍ ଧନ ଏଠାରେ କର୍ମ ବା ଶ୍ରମ ଉପରେ ଗୁରୁତ୍ୱ ଦିଆଯାଇଛି । ରାଜା ହେଉ ବା ରାଣୀ ହୁଅନ୍ତୁ, ଅଜ୍ଞାତ ବାସରେ ସେମାନେ କର୍ମକରି ବଞ୍ଚିଥାନ୍ତି । ତାଙ୍କୁ ପୂର୍ବରୁ କର୍ମ ଜଣାଅଛି ସେମାନଙ୍କ ରାଜପଣିଆ ସତ୍ତ୍ୱେ । ଯେତେବେଳେ ରାଜା ଯାଇ ସାଧବ ରତ୍ନାକରଙ୍କୁ ଘର ଖଣ୍ଡିଏ ମାଗିଛନ୍ତି ରହିବାକୁ ଓ ନିଜେ ଭିକମାଗି ଚଳିବେ ବୋଲି କହିଛନ୍ତି ସେଠି ସାଧବ ରତ୍ନାକର ଲକ୍ଷ୍ମୀଧର କହିଛନ୍ତି– ମୋ ରାଜ୍ୟରେ କେହି ଭିକ୍ଷା କରନ୍ତି ନାହିଁ । ତୁମେ ମୁଲ ଲାଗି ପାରିବ କି? ରାଜା ଏହାକୁ ସମ୍ମତ ପ୍ରଦାନ କରିଥିଲେ । ସାଧବାଣୀଙ୍କୁ ରାଣୀମା ଅନୁରୂପ କହିଥିଲେ ମୋତେ ଦାସୀ କର କିନ୍ତୁ କାହାର ଉଚ୍ଛିଷ୍ଟ କିମ୍ବା ପାଳଟ ନଛୁଆଁଇବ । ଏହାର କିଛି ବୈଧାନିକ କାରଣ ଅଛି । ଏଣୁ ସେ ପରିଜନ ରୂପେ ସହାୟତା ଦେଲେ ।

କିଛି ଶବ୍ଦର ପ୍ରୟୋଗ 'କର୍ମ କୁଶଳତାକୁ' ବୁଝାଏ । ଭୀମରାଜ୍ୟ ଅର୍ଥାତ୍ ଧନର ପରାକ୍ରମଶୀଳତା ଅର୍ଥକୁ ଏଠାରେ ବୁଝାଏ । କମଳିନୀଙ୍କ ରାଜ୍ୟ: ଲକ୍ଷ୍ମୀଙ୍କ ରାଜ୍ୟକୁ ବୁଝାଏ । ସାଧବ ରତ୍ନାକର ଲକ୍ଷ୍ମୀଧରରେ ରତ୍ନାକର ଏବଂ ଲକ୍ଷ୍ମୀଧର ଶବ୍ଦଦ୍ୱୟ ଉଦ୍‌ଯୋଗ ହେତୁ ବିତଶୀଳତାକୁ ବୁଝାଏ । ପରିଶ୍ରମୀ କାନ୍ଧରେ ଲକ୍ଷ୍ମୀ ଶ୍ରମର ମର୍ଯ୍ୟାଦା କଥାକୁ ବୁଝାଏ । ଏହି ବ୍ରତ କଲେ ସୁଖ ଓ ସମୃଦ୍ଧି ବୃଦ୍ଧିପାଏ । ଏକଥା ପୁସ୍ତକରେ ବେଶ୍ ସୂଚିତ ହୋଇଛି ।

ସୁଖମୟ ଦାମ୍ପତ୍ୟ ଜୀବନ ପାଇଁ ନାରୀଟିର ପୁରୁଷ ସହିତ ସମାୟୋଜନତାର ଜରୁରୀ ଅଛି । ସୁଖ ଦୁଃଖରେ ଉଭୟଙ୍କର ଉପସ୍ଥିତି କାମ୍ୟ । ଏଥିପାଇଁ ରାଜାଙ୍କ ସହିତ ରାଣୀମାନେ ମଧ୍ୟ ରାଜ୍ୟ ଛାଡୁଛନ୍ତି । ଛାଇପରି ତାଙ୍କ ସହିତ ରହୁଛନ୍ତି । ଏନେଇ ରାଜାଙ୍କ ଅନିଚ୍ଛାସତ୍ତ୍ୱେ ରାଣୀ କହୁଛନ୍ତି :

ରାଣୀ ବୋଇଲେ ଦେବ ମୋତେ ଛାଡ଼ି ନଯିବ,
ସଂଗେ ସ୍ତ୍ରୀ ଥିଲେ ଦୁଃଖସୁଖ ମଣିବଟି ।

X X X

ଭିନ୍ନ କାହାଣୀମତେ :

ଚାଲ ତୁମ ପିତା ଘର, ଯିବାହୋ ବୋଇଲେ
ଏହା ଶୁଣି ମହାଦେଈ, ସନମତ କଲେ ।

ଅଜ୍ଞାତବାସରେ ଏମାନେ ସମସ୍ତଙ୍କ ଅଜ୍ଞାତରେ ଏକତ୍ର ରହିଛନ୍ତି । କାହାଣୀର ଭିନ୍ନ ଏକ ବିଶେଷତ୍ୱ ହେଉଛି ଯେ ଲୋକମାନଙ୍କୁ ସତ୍ୟବଦ୍ଧତା ପ୍ରତି ନିଶ୍ଚିତ କରାଇବା ଏବଂ ସତ୍ୟ ରକ୍ଷା କରିବା ଯେଉଁଥି ପାଇଁ ବ୍ରାହ୍ମଣୀ ସତ୍ୟ କରାଇଛି ରାଜାଙ୍କୁ । ରଜା ସତ୍ୟ କରାଇଛନ୍ତି ରାଣୀଙ୍କୁ ଏବଂ ସମସ୍ତେ ସତ୍ୟରକ୍ଷା କରିଛନ୍ତି ।

ନାରୀ କଲ୍ୟାଣମୟୀ, ଗୃହକର୍ତ୍ତୀ ଏବଂ ଶୁଭଙ୍କରୀ । ଗୃହର ମଙ୍ଗଳାର୍ଥେ ସେ ସଦାବ୍ରତୀ । ଏଣୁ ସୁଦଶା ବ୍ରତରେ ନାରୀଶକ୍ତିର ଜୟଗାନ କରାଯାଇଛି ।

### ଭାଦ୍ରବ ଶୁକ୍ଳ ସପ୍ତମୀ: କୁକ୍‌କୁଟୀ ବ୍ରତ

ନାରୀଙ୍କ ଜୀବନ ସାର୍ଥକ ହୋଇଥାଏ ତା' ମାତୃତ୍ୱରେ । ସେ ପୁତ୍ର ସନ୍ତାନଟିଏ ଇଚ୍ଛିଥାଏ । କାରଣ ବାର୍ଦ୍ଧକ୍ୟରେ ଅସହାୟତାରେ ସହାୟତା ଓ ସେବା ଦେବାରେ ଏବଂ ଦେହାନ୍ତେ ତା' ମୋକ୍ଷମାର୍ଗ ଦର୍ଶାଇବା ପାଇଁ ତା' ପିଣ୍ଡଦାନ ଓ ତର୍ପଣଶ୍ରାଦ୍ଧକୁ ଆଶା କରେ । ଏଥିପାଇଁ ଅପୁତ୍ରିକ ନାରୀଟିଏ କେତେ ଓଷାବ୍ରତ ତଥା ଠାକୁର ପୂଜନ କରେ । ଏଥିପାଇଁ ସେ ଉପବାସ ଏବଂ ବ୍ରତ ପାଳନ କରେ । ପୁତ୍ରଲାଭ ପାଇଁ ଏକମାତ୍ର ବ୍ରତ ହେଉଛି କୁକ୍‌କୁଟୀ ବ୍ରତ । ଏହି ବ୍ରତଟି ଭାଦ୍ରବଶୁକ୍ଳ ୭ମୀ ଦିନ ପାଳନ କରାଯାଏ । ଏହି ବ୍ରତଟି ସଂପୂର୍ଣ୍ଣଭାବେ ପୁତ୍ର ଲାଭାର୍ଥେ ବିବାହିତା ନାରୀମାନଙ୍କର




ବ୍ରତ। ବ୍ରତ ସଂପର୍କରେ କୁହାଯାଇଛି ଯେ ବ୍ରତୀ ପୂଜା ସ୍ଥାନଟିକୁ ଶୁଚିକରି ଲିପା ପୋଛା କରିବ। ତହିଁ ଉତ୍ତାରୁ ତା' ଉପରେ ମୁରୁଜ ପକାଇ ମଣ୍ଡଳ କାଟିବ ଏବଂ ମଣ୍ଡଳ ପରେ ଶିବ ପାର୍ବତୀଙ୍କର ପ୍ରତିମା ସ୍ଥାପନ କରିବ। ଏହା ଉତ୍ତାରୁ ସମ୍ମୁଖରେ ବସି ସଂକଳ୍ପ ଆଚରିବ ଏବଂ ପ୍ରାର୍ଥନା କରିବ ।

ପ୍ରଥମତଃ ସ୍ୱସ୍ତିବାଚନଂ, ବରୁଣ ପୂଜା ସଂକଳ୍ପ। ଦେଶକାଳ କାବ୍ୟାନନ୍ତରଂ, ଅମୁବସ୍ୟ ଗୋତ୍ର। ଶ୍ରୀମତୀ ଅମୁକା ଦେବୀ ମମ ଜୀବ ପୁତ୍ର ପୌତ୍ରାଦି, ସନ୍ତତ୍ୟ ବିଚ୍ଛେଦାର୍ଥଂ ସକଳ ପାପ କ୍ଷୟ ପୂର୍ବକଂ ଶିବ ଲୋକ ପ୍ରାପ୍ତ୍ୟର୍ଥଂ ଲଳିତା ସପ୍ତମସ୍ୟା ଯାବଜୀବଂ ଭବିଷ୍ୟପୁରାଣୋକ୍ତଂ କୁକ୍କୁଟୀ ବ୍ରତମହଂ କୁର୍ବୀୟା ଅସ୍ମିନ୍ନିତି।....

ଏହାପରେ ବିଧିମତେ ଶିବ-ପାର୍ବତୀଙ୍କୁ ବରଣ ପୂର୍ବକ ଧୂପ ଦୀପ ଏବଂ ଅର୍ଘ୍ୟ ଇତ୍ୟାଦି ଅର୍ପଣ କରିବ। ଅନ୍ୟାନ୍ୟ ଦେବ ଦେବୀଙ୍କୁ ସ୍ମରଣ କରିବ। ଏଥିରେ ଶିବ ପାର୍ବତୀଙ୍କୁ ଆଠ ଗୋଟି ପିଠାର ନୈବେଦ୍ୟ ଅର୍ପଣ କରାଯାଏ। ରକ୍ତବର୍ଣ୍ଣର ସୂତାରେ ଆଠଗଣ୍ଠି ପକାଇ ବ୍ରତ ପୂଜା ପରେ ତାକୁ ନେଇ ଦକ୍ଷିଣ ବାହୁରେ ବାନ୍ଧିବ। ଆବଶ୍ୟକ ପଡ଼ିଲେ ଏ ପୂଜାପାଇଁ ବ୍ରାହ୍ମଣଙ୍କର ସହାୟତା ନିଆଯାଇ ପାରେ।

ଏ ବ୍ରତର ମାହାତ୍ମ୍ୟ ନେଇ ଏକ କାହାଣୀ ଅଛି। ପୂର୍ବେ ମଥୁରାରେ ମେନକା ନାମରେ ଜଣେ ରାଜ ପୁରୋହିତଙ୍କର ପତ୍ନୀ ଅପୁତ୍ରିକ ଥିଲେ। ଅନ୍ୟମାନଙ୍କ ପରାମର୍ଶରେ ସେ କୁକ୍କୁଟୀ ବ୍ରତ ପାଳନ କଲେ ଏବଂ ପୁତ୍ରବତୀ ହେଲେ। ପରବର୍ତ୍ତୀ ସମୟରେ ସେ ଏହି ବ୍ରତର ଅବମାନନା କଲେ। ତା'ପର ଜନ୍ମରେ କୁକ୍କୁଟୀ ହେଲେ। ପୁନଶ୍ଚ ଏ ବ୍ରତ ପାଳନ କଲେ ଏବଂ ପୁଣି ଭୂଷଣା ନାମରେ ରାଜ ପୁରୋହିତଙ୍କର ପତ୍ନୀ ହୋଇ ଜନ୍ମ ନେଲେ। ଖାଲି ସେତିକି ନୁହେଁ, ଆଠଟି ଯୋଗ୍ୟ ସନ୍ତାନର ମା' ହୋଇ ସୁଖ ଓ ଶାନ୍ତିରେ ରହିଲେ। ପୁତ୍ର ସନ୍ତାନ ଲାଭ ନିମନ୍ତେ ଏହା ହେଉଛି ଶିବ-ପାର୍ବତୀ ବ୍ରତ। ଏ ବ୍ରତଟିକୁ ଅବହେଳା କଲେ ଅଥବା ଏହାକୁ ପରିହାସ କଲେ ମେନ୍‌କା ପରି କୁକ୍କୁଟୀ ହେବ। ମେନକା କୁକଟୀ ହେବା ପରଠାରୁ ଏ ବ୍ରତର ନାମ ରଖାଯାଇଛି କୁକ୍କୁଟୀ ବ୍ରତ।

ଏକ ଶୃଙ୍ଖଳିତ ସମାଜ ତଥା ପରସ୍ପର ନିର୍ଭରଶୀଳତା ପାଇଁ ଆମ ସମାଜର ବ୍ରତ, ଉପାସ, ପୂଜା ଓ ପାର୍ବଣମାନଙ୍କର ନିଶ୍ଚିତ ଭାବରେ କିଛି ଯଥାର୍ଥତା ଅଛି।

**ଭାଦ୍ରବ ଶୁକ୍ଳ ଏଗାର: ପାର୍ଶ୍ୱ ପରିବର୍ତ୍ତନ ବା ରବି ନାରାୟଣ ଏକାଦଶୀ**

ସୂର୍ଯ୍ୟ ସିଦ୍ଧାନ୍ତ ଅନୁଯାୟୀ ଭାଦ୍ରବ ମାସ ଶୁକ୍ଳ ଏଗାର ଦିବସ ଅଥବା କନ୍ୟା ସଂକ୍ରାନ୍ତି ଦିନ ଜଳ ବିଷୁବ ଦିବସ ପଡେ। ଏହି ଦିବସରେ ସୂର୍ଯ୍ୟ ତାଙ୍କ ଉତ୍ତରାୟଣ ଗତି ସାରି ବିଷୁବ ବୃତ୍ତକୁ ଘେରନ୍ତି ଏବଂ ପୁନଶ୍ଚ ତାଙ୍କର ଦକ୍ଷିଣାୟନ ଗତି ଆରମ୍ଭ କରନ୍ତି। ଅର୍ଥାତ ତାଙ୍କର ପାର୍ଶ୍ୱପରିବର୍ତ୍ତନ ହୁଏ। ଏଣୁ ଭାଦ୍ର ଶୁକ୍ଳ ଏଗାର ଦିବସକୁ ପାର୍ଶ୍ୱ ପରିବର୍ତ୍ତନ ଏକାଦଶୀ ରୂପେ ଧରି ନିଆ ଯାଇଛି। ପୁନଶ୍ଚ ଏହା ସୂର୍ଯ୍ୟଙ୍କୁ ନେଇ ସଂଘଟିତ ହେଉଥିବା ହେତୁ, ଏହାର ଅନ୍ୟନାମ ମଧ୍ୟ ରବିନାରାୟଣ ଏକାଦଶୀ ରୂପେ ବିଦିତ। ଏହିଦିନ ସୂର୍ଯ୍ୟଙ୍କୁ ନେଇ ନାନା ବ୍ରତ ଓ ଉପବାସ ପାଳନ ହୁଏ। ଓଡିଶାର ସଂସ୍କୃତି ଓ ପରମ୍ପରା ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ପାଳିତ ହେଉଥିବାରୁ ଏହିଦିନ ଶ୍ରୀମନ୍ଦିରରୁ ପାର୍ଶ୍ୱପରିବର୍ତ୍ତନ ଉତ୍ସବ ପାଳନ ହୁଏ ଏବଂ ଏଥିପାଇଁ ଶ୍ରୀଜୀଉମାନଙ୍କୁ ସ୍ୱତନ୍ତ୍ର ବସ୍ତ୍ର ଆଭରଣ ଦ୍ୱାରା ସଜ୍ଜିତ କରାଯାଏ ଓ ଏକାଦଶୀ ବିଧି ପାଳିତ ହୁଏ।

ସର୍ବଭାରତୀୟ ସ୍ତରରେ ଏହାର ନାମ ବାମନ ଏକାଦଶୀ। ସଂକ୍ରାନ୍ତି ଘରର ଗଣନାରୁ ବେଳେବେଳେ ଶ୍ରୀମନ୍ଦିରେ ବାମନଜନ୍ମ ଶୁକ୍ଳ ଏକାଦଶୀରେ ପଡେ । ସେତେବେଳେ ଆମେ ଏହାକୁ ବାମନ ଏକାଦଶୀ କହୁ। ଅବଶ୍ୟ ସେଦିନ ନହେଲେ ବି ତା'ପରଦିନ ବାମନ ଜନ୍ମ ଶ୍ରୀମନ୍ଦିରରେ ପାଳିତ ହୁଏ । ବାମନ ଏକାଦଶୀରେ ଭଗବାନ ବାମନଙ୍କର ପୂଜା କରାଯାଏ। ଶାସ୍ତ୍ରମତେ ଏହିଦିନ ଭଗବାନ ବିଷ୍ଣୁ ତାଙ୍କ ଶୟନ କକ୍ଷରେ ନିଜର କଡ଼ ବା ପାର୍ଶ୍ୱ ପରିବର୍ତ୍ତନ କରିଥାନ୍ତି। ଏଣୁ ବାମନ ଏକାଦଶୀର ଭିନ୍ନ ବାମ ପରିବର୍ତ୍ତନୀ ଏକାଦଶୀ ରଖାଯାଇଛି।

ଶାସ୍ତ୍ରରେ ଅଛି ଯେ ତ୍ରେତୟା ଯୁଗରେ ଭକ୍ତ ପ୍ରହ୍ଲାଦଙ୍କର ନାତି ବଳୀ ଜଣେ ପରାକ୍ରମଶାଳୀ ରାଜା ଥିଲେ। ସେ ତାଙ୍କ ବାହୁ ବଳରେ ଦେବତାମାନଙ୍କୁ ସ୍ୱର୍ଗଚ୍ୟୁତ କରାଇ ସ୍ୱର୍ଗ ଲୋକ ଦଖଲ କରିଥିଲେ। ତାଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ ଦେବତାମାନେ ଏକଥା ବିଷ୍ଣୁଙ୍କୁ ଗୁହାରି କଲେ। ଅନ୍ୟ ପକ୍ଷରେ ବଳି ଶ୍ରୀବିଷ୍ଣୁଙ୍କର ଜଣେ ପରମ ଭକ୍ତ ଥିଲେ। ବ୍ରାହ୍ମଣମାନଙ୍କର ବିଶିଷ୍ଟ ସେବକ ତଥା ମହାଦାନୀ ରାଜା ବି ଥିଲେ। ଏଣେ ବିଷ୍ଣୁଙ୍କ ଭକ୍ତ, ସେପଟେ ଦେବତାମାନଙ୍କ ଶତ୍ରୁ ଏଥିକୁ କ'ଣ କରିବେ ପ୍ରଭୁ ?

ଭଗବାନ ବିଷ୍ଣୁ ବାବନ ଅଙ୍ଗୁଳି ଉଚ୍ଚତା ବିଶିଷ୍ଟ ବାମନ ବ୍ରାହ୍ମଣ ରୂପେ ବଳିଙ୍କ ଦୁଆରେ ଉଭା ହେଲେ ଏବଂ ତାଙ୍କୁ ତିନିପାଦ ଭୂମି ମାଗିଲେ। ବଳି ଦୁଇଟି ପାଦ ଭୂମି ସ୍ୱର୍ଗ ଓ ମର୍ତ୍ତ୍ୟକୁ ବିନା ଦ୍ୱିଧାରେ ଅର୍ପଣ କଲେ। ହେଲେ ଯେତେବେଳେ ବାମନ ବିଷ୍ଣୁ ତାଙ୍କର ତୃତୀୟ ପାଦ ସର୍ଜ୍ଜନା କରି କହିଲେ । ଏଥିପାଇଁ ଜାଗା

ଦିଅ, ବଳି ତାଙ୍କ ଶିର ଦେଖାଇ ଦେଲା। ଭଗବାନ ବାମନ ତାଙ୍କୁ ତାଙ୍କ ତୃତୀୟ ପାଦରେ ପାତାଳକୁ ଦାବି ଦେଲେ। ଏଥର ବଳି ବିଷ୍ଣୁଙ୍କ ମାୟା ବୁଝି ପାରିଲେ । ସେ ଭଗବାନଙ୍କୁ ଯୋଡ ହସ୍ତରେ ନିବେଦନ କରି କହିଲେ, ଆଉ କାହିଁକି ପ୍ରଭୁ? ଏଣିକି ମୁଁ ଆପଣଙ୍କୁ ମୋ ହୃଦୟରେ ସଦାକାଳେ ଧାରଣ କରିବି । ଏ ହୃଦସିଂହାସନ ସଦାକାଳେ ଆପଣଙ୍କର। ଏଥିରେ ଅତ୍ୟନ୍ତ ଖୁସି ହୋଇ ଭଗବାନ ବିଷ୍ଣୁ କହିଲେ ଏଣିକି ତୁ ବିଧିମତେ ଯଦି ବାମନ ଏକାଦଶୀ ପାଳନ କରୁ, ତୋ ଦୁଆରେ କୁଡିଆ କରି ମୁଁ ଦ୍ୱାରପାଳ ହୋଇ ରହିବି ।

ସେବେଠୁଁ ବଳିରାଜା ବିଧିମତେ ବାମନ ଏକାଦଶୀ ପାଳନ କଲେ ଏବଂ ସେହି କାଳରୁ ଭଗବାନ ବାମନଙ୍କର ଏକ ପ୍ରତିମା ବଳିର ଦ୍ୱାରପାଳ ଭାବେ ପାତାଳ ପୁରୀରେ ରହିଲା ଏବଂ ନିଜସ୍ୱ ଅନ୍ୟ ପ୍ରତିମାଟି କ୍ଷୀର ସାଗରରେ ଅବସ୍ଥାନ କଲା। ଦେହାନ୍ତେ ବଳି ସ୍ୱର୍ଗବାସ କଲେ । ଏହା ବାମନ ଏକାଦଶୀ ପାଳନର ଫଳ।

ଧର୍ମ ଓ ବିଜ୍ଞାନ ଏକାଦଶୀ ଉପବାସ ବା ବ୍ରତ ସହିତ ଏକମତ। ଏହା ଶରୀର ସୁସ୍ଥତା ସଂରକ୍ଷଣ ପାଇଁ ଏକ ଉତ୍ତମ ବ୍ୟବସ୍ଥା । ଏଣୁ ଏହା ପାଳନୀୟ ।

**ରାଧାଷ୍ଟମୀ**

ଭାଦ୍ରବ ମାସ କୃଷ୍ଣପକ୍ଷ ଅଷ୍ଟମୀ ଦିନ ଶ୍ରୀକୃଷ୍ଣ ଜନ୍ମ ଗ୍ରହଣ କରି ଥିବାରୁ ଏହାକୁ ଜନ୍ମାଷ୍ଟମୀ କୁହାଯାଏ। ଏହାର ଅନ୍ୟନାମ ହରି ବା କୃଷ୍ଣ ଜନ୍ମ ଦିବସ। ଶ୍ରୀକୃଷ୍ଣଙ୍କର ପ୍ରାଣପ୍ରିୟା ହେଉଛନ୍ତି ଶ୍ରୀରାଧା। ଶ୍ରୀରାଧା ଏହି ଭାଦ୍ରବ ମାସର ଶୁକ୍ଳପକ୍ଷ ଅଷ୍ଟମୀ ଦିନ ଜନ୍ମ ଗ୍ରହଣ କରିଥିବାରୁ, ଏହି ତିଥିକୁ ରାଧାଷ୍ଟମୀ କୁହାଯାଏ। ଦୁଇଟି ଯାକ ଗୌଡ଼ୀୟ ବୈଷ୍ଣବ ଧର୍ମର ପର୍ବ।

ଶ୍ରୀରାଧାଙ୍କ ଜନ୍ମ ବିଷୟରେ ଏକ ସୁନ୍ଦର କାହାଣୀ ଅଛି। ଶ୍ରୀରାଧାଙ୍କ ପିତାଙ୍କ ନାମ ବୃଷଭାନୁ। ସେ ବୈଶ୍ୟ ଥିଲେ। ଭାନୁ କହିଲେ ସୂର୍ଯ୍ୟ । ଭଗବାନ ବିଷ୍ଣୁଙ୍କର ପ୍ରତିଶ୍ରୁତି ଓ ବରଦାନ ପାଇ ସୂର୍ଯ୍ୟ ଦ୍ୱାପରରେ ହେଲେ କୃଷ୍ଣଭାନୁ। ତାଙ୍କ ବରପ୍ରାପ୍ତ କନ୍ୟା ହେଲେ ରାଧା । ତାଙ୍କ ପତ୍ନୀଙ୍କ ନାମ କୀର୍ତ୍ତିଦା। ସୂର୍ଯ୍ୟ ଭଗବାନଙ୍କୁ ଅନୁରୋଧ କରିଥିଲେ ଯେ ତାଙ୍କ କନ୍ୟା ଅତୀବ ସୁନ୍ଦରୀ ହେବ ଏବଂ ନିଜେ ଭଗବାନ ତାକୁ ସବୁଦିନ ପାଇଁ ଗ୍ରହଣ କରିବେ । ସେହି ଦ୍ୱାପର ଯୁଗରେ କୃଷ୍ଣ ଜନ୍ମ ହେଲେ ମଥୁରାରେ ବଢ଼ିଲେ ଗୋପପୁରେ। ସେଇଠି ଆରମ୍ଭ ହୁଏ ରାଧାଙ୍କ ସହିତ କୃଷ୍ଣଙ୍କର ସଂପର୍କ।

କୃଷ୍ଣଙ୍କର ଅଷ୍ଟପାଟବଂଶୀ ରାଣୀ ଥିଲେ ବି ରାଧା । ଯୁବା ବୟସ ପ୍ରାପ୍ତିରେ ରାଧା ବିବାହ କଲେ ଚନ୍ଦ୍ରସେଣାଙ୍କୁ। ସେ ନପୁଂସକ ଥିଲେ। ଏହା ବି ପୂର୍ବ ଜନ୍ମର ବ୍ୟବସ୍ଥାପିତ କଥା। ଭିନ୍ନମତେ ଶ୍ରୀକୃଷ୍ଣ ହେଉଛି ପୁରୁଷ ପୁରୁଷୋତ୍ତମ। ସେ ସବୁରି ସ୍ରଷ୍ଟା। ପ୍ରଥମେ ସେ ରାଧାଯୁକ୍ତ ନଥିଲେ। ପୁରୁଷ ପାଖରେ ପ୍ରକୃତିର ଆବଶ୍ୟକତା ପଡ଼ିଲା। ତେଣୁ ଶ୍ରୀକୃଷ୍ଣ ତାଙ୍କ ଶରୀରର ଦକ୍ଷିଣ ଭାଗରୁ ପ୍ରକୃତିଙ୍କୁ ସୃଷ୍ଟି କଲେ । ଏହି ପ୍ରକୃତି ହିଁ ରାଧା। ଶରୀରର ଦକ୍ଷିଣ ଅଂଶ ଅଧା ହେଉଛନ୍ତି ରାଧା। ରାଧାହିଁ ଶକ୍ତି। ବାମଅଧା ନିଜେ ଭଗବାନ। ତେବେ ସ୍ରଷ୍ଟା ହିସାବରେ ସେ ଏକ ଏବଂ ଅଭିନ୍ନ । ରାଧା ଓ କୃଷ୍ଣ ପ୍ରେମୀମାନେ ଉଭୟଙ୍କର ଜନ୍ମ ମହୋତ୍ସବ ପାଳନ କରନ୍ତି। ଏହା ଖାଲି ମହୋତ୍ସବ ନୁହେଁ ଏକ ବ୍ରତ।

ଅନ୍ୟାନ୍ୟ ବ୍ରତ ଉପବାସ ପରି ରାଧାଷ୍ଟମୀ ପାଳନ ଓ ପୂଜନ ପାଇଁ ଏକ ବିଧି ଅଛି। ଏହି ବିଧିରେ ଗୋଟିଏ ମାଟିର ବେଦୀ ତିଆରି ହେବ। ଚାରି କୋଣରେ ଚାରୋଟି କଦଳୀ ଗଛ ପୋତି ଦେବ ଓ ବେଦୀ ଲିପି ପୋଛି ମୁରୁଜରେ କୋଠି କଟାଯିବ। ଏହି କୋଠି ଉପରେ ଚୌକି ବା ପୀଢ଼ା ଉପରେ ଶ୍ରୀରାଧା ପ୍ରତିମା ସ୍ଥାପନ ହେବ। ଏହା ପରେ ଏକ ମାଟି ପାତ୍ରରେ ହଳଦୀ, ମେଥି ଏବଂ କୁଙ୍କୁମ ଇତ୍ୟାଦି ବାଟି ଫେଣ୍ଟିଦେବ । ଏ ପାତ୍ରକୁ ସେ ପ୍ରତିମାଙ୍କର ମଥାରେ ରଖି ପାଣି ଢ଼ାଳିବ । ଏଥିପାଇଁ ପୁରୋହିତଙ୍କ ସହାୟତା ନିଆଯାଇପାରେ। ସେ ସଂସ୍କାର କାର୍ଯ୍ୟ ତୁଲାଇବେ । ଏପରି ଭାବେ ରାଧାଙ୍କର ସ୍ନାନ କରାଇ ଏହାପରେ ନୂତନ ବସ୍ତ୍ର ପରିଧାନ କରାଇବ ଏବଂ ଯଥାରୀତି ସିନ୍ଦୂର, ଫୁଲ, ଚନ୍ଦନ, କଜ୍ଜଳ ଓ କୁଙ୍କୁମ ଇତ୍ୟାଦି ଲଗାଇ ସୁବେଶ କରାଇବ। ଏଥୁଅନ୍ତେ ଷୋଡଶ ଉପଚାର ପୂଜା କରିବ। ପୂଜାରେ ସଂଖୁଡ଼ି ଭୋଗ ନିଷେଧ। ଚୁଡ଼ାଘଷା, ଖଇ, ଫଳମୂଳ, ଅର୍ପଣ କରାଯାଇପାରେ। ସେଦିନ ବ୍ରତୀମାନେ ଏହି ଭୋଗଖାଇ ଉପବାସ ପାଳନ କରନ୍ତି। ଆମ ଓଡ଼ିଶାରେ ଶ୍ରୀମନ୍ଦିର ଓ ସାକ୍ଷୀଗୋପାଳ ମନ୍ଦିରରେ ଏହା ଯଥାବିଧି ପାଳିତ ହୁଏ। ଏହା ଏକ ବୈଷ୍ଣବ ପରମ୍ପରାଭିତ୍ତିକ ପର୍ବ।

ପ୍ରତିଟି ଓଷା ଓ ପର୍ବପର୍ବାଣି ପଛରେ ଏକ ନିହିତ ଉଦ୍ଦେଶ୍ୟ ଅଛି । ଧାର୍ମିକ ଚେତନା, ସାମାଜିକ ଜୀବନଯାପନ ପାଇଁ ଏକତା ମୈତ୍ରୀ ଭାବ । ଆମେ ଆଜି କେତେ ଦୂରେଇ ଯାଇଛେ ଏମାନଙ୍କ ଠାରୁ ! ଆମେ କ'ଣ ଆମ ପରମ୍ପରାକୁ ସତରେ ବୁଡ଼େଇ ଦେବା !

---

ଓଡ଼ିଶା ଭାଷା ସଂରକ୍ଷଣ ଏବଂ ଗବେଷଣା ପ୍ରତିଷ୍ଠାନ
ବିକାଶ ନଗର, ଜଟଣୀ, ଖୋର୍ଦ୍ଧା

# ଦଶ ମହାବିଦ୍ୟା

ନିରଞ୍ଜନ ପ୍ରଧାନ

କାଳୀ ତାରା ମହାବିଦ୍ୟା ଷୋଡ଼ଶୀ ଭୁବନେଶ୍ୱରୀ
ଭୈରବୀ ଛିନ୍ନମସ୍ତା ଚ ବିଦ୍ୟା ଧୂମାବତୀ ତଥା
ବିମଳା ସିଦ୍ଧ ବିଦ୍ୟା ଚ ମାତଙ୍ଗୀ କମଳାତ୍ମିକା
ଏତା ଦଶମହାବିଦ୍ୟାଃ ସିଦ୍ଧ ବିଦ୍ୟା ପ୍ରକ୍ଷର୍ତ୍ତିତା ॥

ସତୀଙ୍କର ଏହି ଦଶବିଧ ରୂପ ଦଶମହାବିଦ୍ୟା ରୂପେ ପରିଚିତ । ଏହି ଦଶମହାବିଦ୍ୟା ପୃଥକ ଭାବରେ ଦଶଗୋଟି ରୂପ ହୋଇଥିଲେ ମଧ୍ୟ ମୂଳତଃ ଗୋଟିଏ । ଚାମୁଣ୍ଡା ତନ୍ତ୍ର ଅନୁସାରେ– କାଳୀ ଏବଂ ତାରା ମହାବିଦ୍ୟା । ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା ଏବଂ ଧୂମାବତୀ ବିଦ୍ୟା ଏବଂ ବଗଳା, ମାତଙ୍ଗୀ ଓ କମଳା ସିଦ୍ଧ ବିଦ୍ୟା ନାମରେ ଖ୍ୟାତ । ଏହି ଦଶ ମହାଶକ୍ତି ହିଁ ଯଥାକ୍ରମେ ଦଶମହାବିଦ୍ୟା । କେହି କେହି ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ଦଶାବତାର ବୋଲି ମଧ୍ୟ କହି ଥାଆନ୍ତି ।



ଦଶମହାବିଦ୍ୟାର ପ୍ରଥମ ମହାବିଦ୍ୟା ହେଉଛନ୍ତି କାଳୀ । ତନ୍ତ୍ର ଶାସ୍ତ୍ରରେ କାଳୀଙ୍କୁ ସର୍ବଶ୍ରେଷ୍ଠ ରୂପେ ଗଣନା କରାଯାଏ । ସେ ହେଉଛନ୍ତି ବ୍ରହ୍ମ ସ୍ୱରୂପା । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଆଦି ତାଙ୍କଠାରୁ ସୃଷ୍ଟି ଓ ତାଙ୍କ ଦେହରେ ଲୀନ ହୁଅନ୍ତି । ମହାନିର୍ବାଣ ତନ୍ତ୍ରରେ ବର୍ଣ୍ଣିତ ଅଛି ଯେ– ମହାଦେବୀ ନିର୍ଗୁଣା ହେଲେ ମଧ୍ୟ ଭକ୍ତମାନଙ୍କ ପାଇଁ ବସ୍ତୁଜଗତ ସହିତ ମିଳିତ ହୋଇ ସତ୍ୱ, ରଜ, ତମ ଆଦି ତ୍ରିଗୁଣରେ ପ୍ରକାଶମାନ ହୁଅନ୍ତି । ଏହି ତ୍ରିଗୁଣ ହିଁ ମହାବିଦ୍ୟା ରୂପେ ପ୍ରକାଶମାନ । ମହାପ୍ରଳୟ ସମୟରେ ସମଗ୍ର ବ୍ରହ୍ମାଣ୍ଡ 'କାଳ' ଦ୍ୱାରା ହିଁ କବଳିତ ହୋଇଥାଏ । ସେ କାଳକୁ କବଳିତ କରିଥିବାରୁ 'କାଳୀ' ନାମରେ ପରିଚିତା ।

**କାଳୀ–** କଳି ଯୁଗରେ କାଳୀ ହିଁ ଭକ୍ତି, ମୁକ୍ତି ପ୍ରଦାୟିନୀ ଏବଂ ଏକମାତ୍ର ଆରାଧ୍ୟା ଦେବୀ । ମା' ପାର୍ବତୀ ଦେବ ଦେବ ମହାଦେବଙ୍କୁ ପଚାରିଛନ୍ତି– କଳିଯୁଗରେ ମାନବମାନଙ୍କର କଲ୍ୟାଣ ପାଇଁ ଉପାୟ କ'ଣ ? ଶିବ ପାର୍ବତୀଙ୍କୁ କହିଛନ୍ତି– ତନ୍ତ୍ର ହିଁ କେବଳମ୍ । ତନ୍ତ୍ରାଧୀନ ଦେବତାଃ । ତ୍ରେତୟା ଯୁଗରେ ମହାପରାକ୍ରମୀ ରାବଣ ତନ୍ତ୍ର ବଳରେ ଦେବତାମାନଙ୍କୁ ବଶ କରି ପାରିଥିଲା । ବହୁ ପୁରାଣ, ଶାସ୍ତ୍ରରେ ଏବଂ ତନ୍ତ୍ରରେ କାଳୀଙ୍କର ତ୍ରିବିଧ ସ୍ୱରୂପ ବର୍ଣ୍ଣନା ହୋଇଛି । ସେହି ତ୍ରିବିଧ ସ୍ୱରୂପ ହେଉଛି ବ୍ରାହ୍ମଣୀ, ବୈଷ୍ଣବୀ ଏବଂ ମାହେଶ୍ୱରୀ । ଏହି ତିନି ସ୍ୱରୂପ ଶିବମାୟା ରୂପେ ପରିକଳ୍ପିତା ।

ତନ୍ତ୍ର ଶାସ୍ତ୍ରରେ କାଳୀଙ୍କର ବିଭିନ୍ନ ରୂପର ବର୍ଣ୍ଣନା ରହିଛି । ଯଥା – ଦକ୍ଷିଣ କାଳୀ, ଭଦ୍ରକାଳୀ, ଶ୍ମଶାନ କାଳୀ, ଶ୍ୟାମା କାଳୀ,

କମଳା କାଳୀ, ଧନକାଳୀ ଏବଂ ସିଦ୍ଧି କାଳୀ ପ୍ରଭୃତି । ସାଧକମାନେ ନିଜ ନିଜର କଳ୍ପନା ଅନୁଯାୟୀ ନାମ ଭେଦରେ କାଳୀଙ୍କର ଉପାସନା କରୁଥିଲେ ହେଁ ସ୍ୱରୂପତଃ କାଳୀ ଏକ । କାଳୀ ପୂର୍ଣ୍ଣ ବ୍ରହ୍ମମୟୀ ମାୟାବତୀ ହୋଇ ଥିବାରୁ ଆବରଣ ଶୂନ୍ୟ । ତେଣୁ ସେ ହେଉଛନ୍ତି ଦିଗମ୍ବରା । କାଳୀ ମାୟା ହୋଇଥିଲେ ମଧ୍ୟ ସମସ୍ତ ଜୀବ ଜଗତକୁ ମାୟା ପାଶରେ ବନ୍ଧନ କରିଛନ୍ତି । ଦେବୀ ଅମୃତ ତତ୍ତ୍ୱ ପ୍ରଦାନ କରି ଥାଆନ୍ତି ବୋଲି ତାଙ୍କ ଲଲାଟରେ ଅର୍ଦ୍ଧଚନ୍ଦ୍ର ଶୋଭା ପାଉଥାଏ । କାଳୀଙ୍କ ଗଳାରେ ଶୋଭିତ ମୁଣ୍ଡମାଳା, ମାତୃକା ବର୍ଣ୍ଣର ପ୍ରତୀକ । କାଳୀ, ଶବରୂପୀ ଶିବଙ୍କ ବକ୍ଷ ଉପରେ ଅବସ୍ଥିତା । ଏଠାରେ ଶିବ ନିର୍ଗୁଣ, ନିଷ୍କ୍ରିୟ । ଦେବୀ ସଗୁଣ ଓ ସକ୍ରିୟ ଭୂମିକା ଗ୍ରହଣ କରିଥାନ୍ତି ।

**ତାରା–** ଜୀବଜଗତକୁ ତ୍ରାଣ କରୁଥିବାରୁ ସେ ହେଉଛନ୍ତି ତାରା । ସେ ନୀଳବର୍ଣ୍ଣା ଓ ନୟନା । ସେ ଭୟଙ୍କରୀ ହେଲେ ମଧ୍ୟ ବରଦା । ସୁଖ ଓ ମୋକ୍ଷ ପ୍ରଦାନକାରିଣୀ ଦେବୀ ରୂପେ ପୂଜିତା । କାଳୀଙ୍କ ପରି ତାରା ମଧ୍ୟ ସର୍ବସିଦ୍ଧି ପ୍ରଦାୟିନୀ । ତାଙ୍କର ତିନୋଟି ରୂପ । ଯଥା– ଏକଜଟା ତାରା, ନୀଳସରସ୍ୱତୀ, ଉଗ୍ରତାରା ନାମରେ ପରିଲକ୍ଷିତ ।

ତାରା ହେଉଛନ୍ତି ଦେବଗୁରୁ ବୃହସ୍ପତିଙ୍କ ଆରାଧ୍ୟା ଦେବୀ । ଶତ୍ରୁନାଶ, ବାକ୍‌ଶକ୍ତିର ପ୍ରାପ୍ତି ତଥା ଭୋଗ, ମୋକ୍ଷର ଉପଲବ୍ଧି ପାଇଁ ତାରା ଅଥବା ଉଗ୍ରତାରାଙ୍କ ସାଧନା କରାଯାଇଥାଏ । ତାରାଙ୍କୁ ମହାବିଦ୍ୟାମାନଙ୍କରେ ଅଦ୍‌ଭୁତ ପ୍ରଭାବଶାଳୀ ତଥା ସର୍ବ କାର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀ ଭାବରେ ପୂଜା କରାଯାଇଥାଏ ।

ଭାରତରେ ସର୍ବପ୍ରଥମ ମହର୍ଷି ବଶିଷ୍ଠ ତାରାଙ୍କୁ ବୈଦିକ ରୀତିରେ ଆରାଧନା କରିବା ଆରମ୍ଭ କଲେ । ଏହି ବୈଦିକ ରୀତିରେ ୩ଥର ଆରାଧନା କଲା ପରେ ବି ତାହା ସଫଳ ହୋଇପାରିଲା ନାହିଁ । ଶେଷରେ ବଶିଷ୍ଠଙ୍କୁ ଅଦୃଶ୍ୟ ଶକ୍ତିରୁ ଶୂନ୍ୟବାଣୀ ହେଲା ଯେ ସେ ତାନ୍ତ୍ରିକ ପଦ୍ଧତି ଦ୍ୱାରା ତାରାଙ୍କୁ ଆରାଧନା କରନ୍ତୁ । ଯେତେବେଳେ ବଶିଷ୍ଠ ବୈଦିକ ରୀତି ତ୍ୟାଗ କରି ତାନ୍ତ୍ରିକ ପଦ୍ଧତି ଦ୍ୱାରା ତାରାଙ୍କୁ ଆରାଧନା କଲେ ସେତେବେଳେ ତାଙ୍କୁ ସିଦ୍ଧି ମିଳିଲା । ରାଜଶ୍ରୀ ବଶିଷ୍ଠରୁ ବ୍ରହ୍ମଶ୍ରୀ ବଶିଷ୍ଠ ହୋଇ ପାରିଥିଲେ । ଏହି ବିଷୟ ଆଚାର ତନ୍ତ୍ରରେ ବଶିଷ୍ଠ ମୁନିଙ୍କ ଆରାଧନା ଉପାଖ୍ୟାନରେ ବର୍ଣ୍ଣିତ ହୋଇଛି । ଏଥିରୁ ପ୍ରମାଣିତ ହେଉଛି ଯେ–ମାନବ ନିଜର ଆଶୁ କଲ୍ୟାଣ ପାଇଁ ବୈଦିକ ରୀତି ଅପେକ୍ଷା ତନ୍ତ୍ର ପଦ୍ଧତିରେ ଉପାସନା କଲେ ତାହା ଶୀଘ୍ର ଫଳବତୀ ହୋଇଥାଏ । ଏହା ମା' ପାର୍ବତୀଙ୍କୁ ଶିବ କହିଥିଲେ । ଏଥିରୁ ଏହା ପ୍ରମାଣିତ ଯେ– ପ୍ରଥମେ ଚୀନ୍, ତିବ୍ବତ ଏବଂ ଲଦାଖ ଆଦି ଅଞ୍ଚଳରେ ଅଦ୍ୟାବଧି ତାରାଙ୍କ ଉପାସନା ତନ୍ତ୍ର ପଦ୍ଧତିରେ ପ୍ରଚଳିତ ହୋଇ ଆସୁଛି । ବିହାରର ସହରସା ଜିଲ୍ଲାର ପ୍ରସିଦ୍ଧ ମହିଷା ଗ୍ରାମରେ ଉଗ୍ରତାରାଙ୍କ ସିଦ୍ଧ ପୀଠ ରହିଛି । କୁହାଯାଏ ଯେ, ମହର୍ଷି ବଶିଷ୍ଠ ଏହିଠାରେ ତପସ୍ୟା କରି ସିଦ୍ଧିପ୍ରାପ୍ତ ହୋଇଥିଲେ ।

**ଛିନ୍ନମସ୍ତା–** ପରିବର୍ତ୍ତନଶୀଳ ଜଗତର ଅଧିପତି କବନ୍ଧ ଏବଂ ତାଙ୍କର ଶକ୍ତି ହେଉଛନ୍ତି ଛିନ୍ନମସ୍ତା । ଦେବୀ ଛିନ୍ନମସ୍ତା କୋଟି ସୂର୍ଯ୍ୟର ପ୍ରଭା ଧାରଣ କରି ବିରାଜିତା । ତାଙ୍କ ବାମ ଭାଗରେ ଜୟା ଏବଂ ଦକ୍ଷିଣ ଭାଗରେ ବିଜୟା ଦୁଇ ସହଚରୀ । ବାମ ହସ୍ତରେ କପାଳ, ଦକ୍ଷିଣ ହସ୍ତରେ ଖଡ଼ଗ । ଯଜ୍ଞୋପବିତ୍ ଭାବରେ ବକ୍ଷ ଦେଶରେ ନାଗରାଜ ଶୋଭିତ । ନାରଦ ପଞ୍ଚରତ୍ନ ବର୍ଣ୍ଣନା ଅନୁଯାୟୀ, ଦେବୀଙ୍କର ଦୁଇ ସଖୀ କ୍ଷୁଧାରେ ଆତୁର ହୋଇ କିଛି ଖାଦ୍ୟ ପାଇଁ ଦେବୀ ପାର୍ବତୀଙ୍କୁ ଅନୁରୋଧ କଲେ । ଦୁଇ ସଖୀଙ୍କ କ୍ଷୁଧା କଷ୍ଟ ସହି ନପାରି, ଦେବୀ ପାର୍ବତୀ ନିଜର ବାମ ନଖ ଦ୍ୱାରା ନିଜ ମସ୍ତକକୁ ଛେଦନ କରି ଦୁଇ ସଖୀ ଜୟା ଓ ବିଜୟାଙ୍କ କ୍ଷୁଧା ଶାନ୍ତ କରିଥିଲେ । ଛିନ୍ନମସ୍ତକ ଦେବୀଙ୍କର ବାମ ହସ୍ତରେ ପଡିଲା । ତାଙ୍କ ଗ୍ରୀବାରୁ ନିସୃତ ତିନି ରକ୍ତଧାର ବାମରେ ଜୟା ଓ ଦକ୍ଷିଣରେ ବିଜୟା ଏବଂ ମଧ୍ୟ ଧାର ନିଜ ମୁଖରେ ପଡ଼ିଲା । ଦେବୀଙ୍କର ମସ୍ତକ ଛିନ୍ନ ହୋଇ ଥିବାରୁ ସେ ଛିନ୍ନମସ୍ତା ନାମରେ ପରିଚିତା । ଦେବୀ ରକ୍ତବର୍ଣ୍ଣା, ତ୍ରିନୟନା, ତ୍ରିଦୀପ୍ତି, ଚନ୍ଦ୍ର ସୂର୍ଯ୍ୟ ଓ ଅଗ୍ନିର ତେଜ ଧରି ସେ ହେଉଛନ୍ତି ତେଜୋମୟୀ ।

ଦେବୀ ଛିନ୍ନମସ୍ତାଙ୍କ ସ୍ୱରୂପ ଅତ୍ୟନ୍ତ ଗୋପନୀୟ । ଏହାକୁ କୌଣସି ସାଧକ ହିଁ ଜାଣିପାରିବ । ଦଶମହାବିଦ୍ୟାରେ ଛିନ୍ନମସ୍ତାଙ୍କ ସ୍ଥାନ ତୃତୀୟ । ଏପରି ବିଧାନ ରହିଛି ଯେ– ଅର୍ଦ୍ଧରାତ୍ରିରେ ଅର୍ଥାତ ଚତୁର୍ଥ ପ୍ରହରରେ ଛିନ୍ନମସ୍ତାଙ୍କୁ ଉପାସନା କଲେ ସାଧକ ସର୍ବ କାର୍ଯ୍ୟରେ ସିଦ୍ଧିଲାଭ କରିଥାଏ । ଶତ୍ରୁ ବିଜୟ, ସ୍ତମ୍ଭନ, ମାରଣ, ରାଜ୍ୟପ୍ରାପ୍ତି ତଥା ଦୁର୍ଲଭ ମୋକ୍ଷ ପ୍ରାପ୍ତି ପାଇଁ ଛିନ୍ନମସ୍ତାଙ୍କ ଅମୋଘ ଫଳ ମିଳିଥାଏ । ଦେବୀ ଶ୍ୱେତ କମଳ ଉପରେ ଦଣ୍ଡାୟମାନ । ଚାରିଦିଗ ହେଉଛି ଦେବୀଙ୍କର ବସ୍ତ୍ର । ତାଙ୍କର ନାଭିରେ ଯୋନି ଚକ୍ରଥାଏ । ତମ ଏବଂ ରଜୋଗୁଣର ଦେବୀମାନେ ହେଉଛନ୍ତି ଏହାଙ୍କ ସହଚରୀ । ଯୋଗ ଶାସ୍ତ୍ରରେ ତିନୋଟି ଗ୍ରନ୍ଥ କଥା କୁହାଯାଏ । ଏହି ତିନୋଟି ଗ୍ରନ୍ଥକୁ ଭେଦକଲେ ଯୋଗୀଙ୍କୁ ପୂର୍ଣ୍ଣସିଦ୍ଧି ମିଳିଥାଏ । ଏହାକୁ ବିଷ୍ଣୁଗ୍ରନ୍ଥ, ବ୍ରହ୍ମଗ୍ରନ୍ଥ ଏବଂ ରୁଦ୍ରଗ୍ରନ୍ଥ କୁହାଯାଏ । ଏହା ଉପରେ ମହାଶକ୍ତି ଛିନ୍ନମସ୍ତା ଆରୂଢ଼ ହୋଇଛନ୍ତି । ଛିନ୍ନମସ୍ତାଙ୍କ ବଜ୍ର ବୈରୋଚନୀ ନାମ– ଶାକ୍ତ, ବୌଦ୍ଧ ତଥା ଜୈନଙ୍କ ମଧ୍ୟରେ ସମାନ ରୂପରେ ପ୍ରଚଳିତ ଅଛି । ହିରଣ୍ୟ କଶ୍ୟପ, ବୈଲୋଚନ

ଆଦି ଛିନ୍ନମସ୍ତାଙ୍କୁ ଆରାଧନା କରି ମହାଶକ୍ତିଶାଳୀ ହୋଇପାରି ଥିଲେ । ଦେବୀଙ୍କ କୃପା ଦୃଷ୍ଟିରେ ସମଗ୍ର ବିଶ୍ୱ ଆନନ୍ଦିତ ।

**ବଗଳା–** ମହାବିଦ୍ୟା ବଗଳା ହେଉଛନ୍ତି ପୀତବର୍ଣ୍ଣା, ତ୍ରିନୟନା, କମଳ ଆସନରେ ଉପବିଷ୍ଟା । ଦେବୀଙ୍କର ଦକ୍ଷିଣ ହସ୍ତରେ ମୁଦ୍‌ଗର ଓ ବାମ ହସ୍ତରେ ଶତ୍ରୁର ଜିହ୍ୱା ଓ ଚକ୍ର । ଲଲାଟରେ ଅର୍ଦ୍ଧଚନ୍ଦ୍ର । ଦେବୀ ବଗଳାଙ୍କୁ ସନ୍ତୁଷ୍ଟ କରି ପାରିଲେ ଅସମ୍ଭବ କାର୍ଯ୍ୟ ସମ୍ଭବ ହୋଇ ପାରିଥାଏ । ଦେବୀ ଗମ୍ଭୀରା, ତପ୍ତକାଞ୍ଚନ ଭଳି ତାଙ୍କର ବର୍ଣ୍ଣ ।

ବଗଳାଙ୍କ ସାଧନା ଅତି କଷ୍ଟ । ଏହା ବିନା ଗୁରୁରେ ସାଧନା କରିବା ଅନୁଚିତ । ଥରେ ମାତ୍ର ବଗଳା ସାଧନାରେ ଉତ୍ତୀର୍ଣ୍ଣ ହୋଇଗଲେ ସାଧକ ଅତୀବ ବିସ୍ମୟକର ଭାବେ ଅସାଧ୍ୟ କାର୍ଯ୍ୟରେ ଫଳବତୀ ହୋଇପାରିଥାଏ । ବଗଳାଙ୍କ ଧ୍ୟାନ –

ମଧ୍ୟେ ସୁଧାବିଧି ମଣି ମଣ୍ଡପ ରତ୍ନ ବେଦୀ
ସିଂହାସନ ପରିଗତାଂ ପରିପୀତ ବର୍ଣ୍ଣାମ୍ ॥
ପିତାମ୍ବରାଂ କନକ ଭୂଷଣ ମାଲ୍ୟ ଶୋଭାଂ
ଦେବୀ ଭଜାମି ଧୃତ ମୁଜଦ୍‌ଗର ବୈରିଜିହ୍ୱାମ୍ ॥

**ଷୋଡ଼ଶୀ–** ଦେବୀ ଷୋଡ଼ଶୀ ହେଉଛନ୍ତି ମାହେଶ୍ୱରୀ । ଶକ୍ତିଙ୍କ ସର୍ବଶ୍ରେଷ୍ଠ ମନୋହର ଶ୍ରୀବିଗ୍ରହ । ଦେବୀ ହେଉଛନ୍ତି ରକ୍ତବର୍ଣ୍ଣା, ତ୍ରିନୟନା ଓ ଚତୁର୍ଭୁଜା । କେହି କେହି ତାଙ୍କୁ ଲଳିତା ବୋଲି ମଧ୍ୟ କୁହନ୍ତି । ବ୍ରହ୍ମା, ବିଷ୍ଣୁ, ରୁଦ୍ର ଓ ଇନ୍ଦ୍ର ଏହି ଷୋଡ଼ଶୀଙ୍କର ପଲଙ୍କରେ ପାଦ ରୂପେ ରହିଛନ୍ତି । କୁବ୍‌ଜିକା ତନ୍ତ୍ର ଅନୁସାରେ – ଦେବୀ ସର୍ବଦା ଶ୍ରୀ ପ୍ରଦାନ କରନ୍ତି ବୋଲି ଷୋଡ଼ଶୀ ରୂପେ ବର୍ଣ୍ଣିତା । ଏହାଙ୍କର ଚାରିଭୁଜ । ସେ ଶାନ୍ତି ମୁଦ୍ରାରେ ଶୋଇଥିବା ସଦାଶିବଙ୍କ ଉପରେ କମଳ ଆସନରେ ଆସୀନ ଅଟନ୍ତି । ଏହାଙ୍କ ଚାରି ହାତରେ ପାଶ, ଅଙ୍କୁଶ ତଥା ବାଣ ସୁଶୋଭିତ । ଭକ୍ତକୁ ବର ଦେବା ପାଇଁ ଦେବୀ ସର୍ବଦା ତତ୍ପର ଏବଂ ହୃଦୟ ଦୟାରେ ପରିପୂର୍ଣ୍ଣ । ଯିଏ ଏହାଙ୍କ ଆଶ୍ରୟ ନିଅନ୍ତି, ଭକ୍ତକୁ ସବୁକିଛି ଦେଇ ଦିଅନ୍ତି, ଶିବ ହେଉଛନ୍ତି ହିରଣ୍ୟଗର୍ଭ ଏବଂ ଷୋଡ଼ଶୀ ହେଉଛନ୍ତି ଏହାଙ୍କ ଶକ୍ତି । ଦେବୀଙ୍କ ମଧ୍ୟରେ ଷୋଡ଼ଶ କଳା ପୂର୍ଣ୍ଣତଃ ବିକଶିତ ହୋଇ ରହିଛି, ତେଣୁ ଦେବୀ ଷୋଡ଼ଶୀ ରୂପେ ଖ୍ୟାତ । ଯେଉଁ ଭକ୍ତମାନେ ଦେବୀଙ୍କର କରୁଣା ଲାଭ କରି ପାରନ୍ତି, ସେମାନେ କନ୍ଦର୍ପ ପରି ସୌଭାଗ୍ୟ ପ୍ରାପ୍ତ ହୋଇ ତ୍ରିଭୁବନରେ ତରୁଣୀମାନଙ୍କର ମନମୁଗ୍ଧ କରି ପାରନ୍ତି ।

**ଧୂମାବତୀ–** ଧୂମାବତୀ ଅତ୍ୟନ୍ତ ବୃଦ୍ଧା, ବିଧବା ବେଶ, ଧୂମ ବର୍ଣ୍ଣା, ଏବଂ କଳହ ପ୍ରିୟା। ତାଙ୍କର ଦୁଇଟି ହସ୍ତ ସର୍ପ ଓ ବରଦ ମୁଦ୍ରାରେ ଶୋଭିତ । ଦେବୀ ସତୀ–କ୍ରୁଦ୍ଧା ହୋଇ ଦକ୍ଷ ପ୍ରଜାପତିଙ୍କର ଯଜ୍ଞ ଅଗ୍ନିରେ ସ୍ୱଦେହ ନିକ୍ଷେପ କଲେ । ଯଜ୍ଞ କୁଣ୍ଡରୁ ଉତ୍ପନ୍ନ ହୋଇଥିବା ଧୂମରାଶିରୁ ଧୂମାବତୀଙ୍କର ଉଦ୍ଭବ । ଫେଙ୍କୋରିଣୀ ତନ୍ତ୍ର ଅନୁସାରେ ଧୂମାବତୀ ହେଉଛନ୍ତି କେତୁ ଗ୍ରହଙ୍କର ଆରାଧ୍ୟା ଦେବୀ ।

**ମାତଙ୍ଗୀ–** ଦେବୀ ମାତଙ୍ଗୀ ହେଉଛନ୍ତି ଶ୍ୟାମବର୍ଣ୍ଣା, ତ୍ରିନୟନା, ଲଲାଟରେ ଅର୍ଦ୍ଧଚନ୍ଦ୍ର। ଦେବୀ ହାସ୍ୟମୟୀ, ହସ୍ତରେ ଅଙ୍କୁଶ, ପାଶ ଧାରଣ କରି ଥାଆନ୍ତି । କୁବ୍‌ଜିକା ତନ୍ତ୍ରରେ ବର୍ଣ୍ଣିତ– ଦେବୀ ମତଙ୍ଗାସୁରକୁ ବଧ କରିଥିବାରୁ ମାତଙ୍ଗୀ ନାମରେ ପରିଚିତା । ଦେବୀ ଭକ୍ତକୁ ସମସ୍ତ ବିପଦରୁ ପରିତ୍ରାଣ କରି ଥାଆନ୍ତି । ପୁରାକାଳରେ ନାନା ବୃକ୍ଷ ଶୋଭିତ କଦମ୍ବ କାନନରେ ସମସ୍ତ ପ୍ରାଣୀମାନଙ୍କୁ ବଶୀଭୂତ କରିବା ପାଇଁ ମାତଙ୍ଗ ମୁନି ଏକଶତ ହଜାର ବର୍ଷ ତପସ୍ୟାରତ ଥିଲେ । ତାଙ୍କର ତପସ୍ୟା ଫଳରେ ଦେବୀ ମାତଙ୍ଗୀଙ୍କ ନେତ୍ରରୁ ତେଜ ଉତ୍ପନ୍ନ ହେଲା । ସେହି ତେଜରାଶିରୁ ଶ୍ୟାମଳ ରୂପିଣୀ ରାଜମାତଙ୍ଗୀ ଉତ୍ପନ୍ନ ହେଲେ । ଦେବୀ–ମାତଙ୍ଗିନୀ, ଉଚ୍ଛିଷ୍ଟା ମାତଙ୍ଗୀ, ସୁର୍ମୁଖୀ ମାତଙ୍ଗୀ, ବଶ୍ୟ ମାତଙ୍ଗୀ ଏବଂ କର୍ଣ୍ଣମାତଙ୍ଗୀ ନାମରେ ପୂଜିତା । ସାଧକ ନିଜର କାର୍ଯ୍ୟ ସାଧନ ପାଇଁ ବିଭିନ୍ନ ମାତଙ୍ଗୀଙ୍କୁ ଆରାଧନା କରିଥାଏ । ଯଥା– ସର୍ବକାର୍ଯ୍ୟ ସିଦ୍ଧି ପାଇଁ ଉଚ୍ଛିଷ୍ଟ ମାତଙ୍ଗୀ, ବଶୀକରଣ ପାଇଁ ବଶ୍ୟମାତଙ୍ଗୀ, କର୍ଣ୍ଣରେ ଶୁଣିବା ପାଇଁ କର୍ଣ୍ଣମାତଙ୍ଗୀ ପ୍ରଭୃତି ସାଧନା କରାଯାଏ ।

**ଭୈରବୀ–** ଦେବୀ ଭୈରବୀ ହେଉଛନ୍ତି କାଳଭୈରବଙ୍କ ପତ୍ନୀ । ଏହି ଭୈରବୀ, ତ୍ରିପୁର ଭୈରବୀ, ଚୈତନ୍ୟ ଭୈରବୀ, ଭୁବନେଶ୍ୱର ଭୈରବୀ, ଷଟକୁଟ ଭୈରବୀ, ସମ୍ପ୍ରଦା ଭୈରବୀ, ଅନ୍ନପୂର୍ଣ୍ଣା ଭୈରବୀ ପ୍ରଭୃତି ନାମରେ ପୂଜିତା ।

**ଭୁବନେଶ୍ୱରୀ–** ଦେବୀଙ୍କ ଉତ୍ପତ୍ତି ସମ୍ପର୍କରେ ଲିଙ୍ଗପୁରାଣରେ ବର୍ଣ୍ଣିତ ଅଛି ଯେ– ଭାରତବର୍ଷରେ ତିନୋଟି ଅଚଳ (ପର୍ବତ) ହେଉଛି ଦେବାଦେବୀଙ୍କର କ୍ରୀଡାସ୍ଥଳ । ସେଗୁଡ଼ିକ ହେଉଛି ସ୍ୱର୍ଣ୍ଣାଚଳ– ଭୁବନେଶ୍ୱର, ନୀଳାଚଳ– ପୁରୀ, ଭେଙ୍କଟାଚଳ– ତିରୁପତି । ସ୍ୱର୍ଣ୍ଣାଦି ମହୋଦୟରେ ବର୍ଣ୍ଣିତ ଅଛି ଯେ, ଭୁବନେଶ୍ୱର ଦେବାଦେବୀଙ୍କର ପ୍ରାଚୀନ କ୍ରୀଡାସ୍ଥଳୀ ଥିଲା । ଏହି କ୍ଷେତ୍ରରେ ମଧ୍ୟଭାଗରେ ଏକ ବିରାଟ ଆମ୍ବଗଛ ଥିଲା । ତେଣୁ ଏହି କ୍ଷେତ୍ରକୁ ଏକାମ୍ର କ୍ଷେତ୍ର ବା ଏକାମ୍ର କାନନ କୁହାଯାଉଥିଲା । ଏହି କ୍ଷେତ୍ରଟି ଶିବଙ୍କର ଅତ୍ୟନ୍ତ ପ୍ରିୟସ୍ଥଳ । ଗିରିରାଜସୁତା ପାର୍ବତୀ ଏକାମ୍ର କ୍ଷେତ୍ରରେ ପହଞ୍ଚି ଦେଖିବାକୁ

ପାଇଥିଲେ ଯେ ହଜାର ହଜାର ଧେନୁ ଆସି ଲିଙ୍ଗ ଉପରେ ନିଜସ୍ତନର କ୍ଷୀର ଦ୍ୱାରା ଶିବଲିଙ୍ଗକୁ ଅଭିଷେକ କରି ନିଜ ନିଜ ପୁରକୁ ଫେରିଯାଉଛନ୍ତି । ଦେବୀ ଗୋପାଳୁଣୀ ବେଶରେ ଧେନୁମାନଙ୍କୁ ଚରାଉଥିବା ବେଳେ ଦେବୀଙ୍କର ରୂପ ଲାବଣ୍ୟରେ ମୁଗ୍ଧ ହୋଇ ଦିନେ କୀର୍ତ୍ତି ଓ ବାସ ନାମକ ଦୁଇ ରାକ୍ଷସ ନିଜର କାମ ବାସନା ପୂର୍ଣ୍ଣ କରିବା ଲାଗି ଅନୁରୋଧ କଲେ । ଏହି ସମୟରେ ଦେବୀ ଅତ୍ୟନ୍ତ କୁପିତା ହୋଇ ତାଙ୍କ ପାଦରେ ଅସୁର ଦ୍ୱୟଙ୍କୁ ଭୂ–ଗର୍ଭକୁ ଚାପି ଦେଲେ । ଏହି ସ୍ଥାନଟି ବର୍ତ୍ତମାନ ଦେବୀ ପାଦହରା ପୁଷ୍କରିଣୀ ନାମରେ ପରିଚିତ । 'ହ୍ରୀଂ' ବୀଜମନ୍ତ୍ରରେ ଦେବୀ ଭୁବନେଶ୍ୱରୀଙ୍କୁ ପୂଜା କରାଯାଏ । ଦେବୀଙ୍କ ନିକଟରେ ହୋମ ପୂଜାର୍ଚ୍ଚନା ପ୍ରଭୃତି କଲେ ଅସାଧ୍ୟ କାର୍ଯ୍ୟ ସହଜରେ ସାଧ୍ୟ ହୋଇ ଯାଏ ।

**ଲକ୍ଷ୍ମୀ–** ଦଶମହାବିଦ୍ୟାର ଶେଷ ମହାବିଦ୍ୟା ହେଉଛନ୍ତି କମଳା ବା ଲକ୍ଷ୍ମୀ । ମା' ହେଉଛନ୍ତି ରକ୍ତବର୍ଣ୍ଣା ଏବଂ ସମୁଜ୍ଜ୍ୱଳା । ପଦ୍ମପୁଷ୍ପ ଉପରେ ଆସୀନା । ତାଙ୍କ ବାମ ପାଖରେ ସରସ୍ୱତୀ ଏବଂ ଡ଼ାହାଣ ପାଖରେ ଦେବୀ ସାବିତ୍ରୀ । କୁବ୍‌ଜିକା ତନ୍ତ୍ର ଅନୁସାରେ– ଦେବୀ ବୈକୁଣ୍ଠ ବାସିନୀ କମଳା ନାମରେ ଏବଂ ପାତାଳ ବାସିନୀ ହେଲେ ଲକ୍ଷ୍ମୀ ନାମରେ ନାମିତ ହୁଅନ୍ତି । ମା' ଲକ୍ଷ୍ମୀ ପୂର୍ବେ ସମୁଦ୍ର ମନ୍ଥନରୁ ଉଦ୍‌ଭୁତା ହୋଇଥିଲେ । ସତ୍ୟ ଯୁଗରେ କୁଶଧ୍ୱଜଙ୍କର କନ୍ୟା ବେଦମତୀ ରୂପେ ଜନ୍ମ ଗ୍ରହଣ କରିଥିଲେ । ତ୍ରେତୟା ଯୁଗରେ ଜନକଙ୍କ କନ୍ୟା ସୀତା ପ୍ରଭୁ ଶ୍ରୀରାମଙ୍କର ପତ୍ନୀ ରୂପରେ ଏବଂ ଦ୍ୱାପର ଯୁଗରେ ରୁକ୍ମିଣୀ ନାମରେ ଶ୍ରୀକୃଷ୍ଣଙ୍କର ଅଷ୍ଟପାଟବଂଶୀ ଭିତରେ ରହିଲେ । ଏହି ତିନି ଯୁଗରେ ଆବିର୍ଭୁତା ହୋଇଥିବାରୁ ସେ ତ୍ରିଦାୟଣୀ ନାମରେ ଖ୍ୟାତ । ମା' ଲକ୍ଷ୍ମୀ ସବୁ ଲାବଣ୍ୟର ଆବାସ, ବିକ୍ରମ ସୌନ୍ଦର୍ଯ୍ୟର ଭବନ ଏବଂ ସମସ୍ତ ତେଜର ଜନ୍ମଭୂମି ।

ଦଶମହାବିଦ୍ୟାର ବିଭିନ୍ନ ଦେବୀ ଓଡ଼ିଶାର ପୁରୀ, କଟକ, ଭଦ୍ରକ, ଭବାନୀପାଟଣା ପ୍ରଭୃତି ପ୍ରମୁଖ ସ୍ଥାନମାନଙ୍କରେ ଅବସ୍ଥାନ କରି ଥିବାର ଜଣାଯାଏ । ତନ୍ମଧ୍ୟରୁ ଭୁଷଣ୍ଡପୁରସ୍ଥିତ ଉଗ୍ରତାରା, ଭୁବନେଶ୍ୱର ଓ ପୁରୀ ବିମଳାହିଁ ଭୈରବୀ । ଭୁବନେଶ୍ୱରର ବୈତାଳ ମନ୍ଦିରର ଚାମୁଣ୍ଡା ଏବଂ ପୁରୀର ବିମଳା ପ୍ରଭୃତି ଦଶମହାବିଦ୍ୟା ରୂପରେ ଅବସ୍ଥାନ କରି ଥିବାର ପ୍ରମାଣ ମିଳିଥାଏ । ଦେବୀଙ୍କ ନିକଟରେ ଚଣ୍ଡୀପାଠ, ସହସ୍ରନାମ ପଠନ, ହୋମ, ପୂଜାର୍ଚ୍ଚନା ପ୍ରଭୃତି କଲେ ଅସାଧ୍ୟ କାର୍ଯ୍ୟ ମଧ୍ୟ ସହଜରେ ଲାଭ ହୋଇଥାଏ । ଦେବୀଙ୍କ ମହିମା ସମ୍ବନ୍ଧୀୟ ଅନେକ ଜନଶ୍ରୁତି ଅଛି, ତାହା ବର୍ଣ୍ଣନା କରିବା ଅସମ୍ଭବ ।

ପ୍ଲଟ୍ ନଂ – ୧୧୨/୨୫୦୦
ଖଣ୍ଡଗିରି ବିହାର, ଭୁବନେଶ୍ୱର



## ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

## ସ୍ୱର୍ଗତ ବ୍ରଜ ପାଇକରାୟ



# ତନ୍ତ୍ରର ଦେବୀ ବିରଜା

ଡକ୍ଟର ତ୍ରିନାଥ ପଟ୍ଟନାୟକ

ଶକ୍ତି ଉପାସନାର ପରମ୍ପରା ଆମ ଦେଶରେ ସ୍ମରଣାତୀତ କାଳରୁ ଚଳି ଆସୁଅଛି । ଆମ ସଭ୍ୟତା ଯେମିତି ପୁରୁଣା ଶକ୍ତି ଉପାସନା ମଧ୍ୟ ସେତିକି ପ୍ରାଚୀନ । ଏହାର ନିର୍ଦ୍ଦିଷ୍ଟ ସମୟ ନିରୂପଣ କରିବା ଅତୀବ କଠିନ । ପ୍ରକାଶ୍ୟମାନ ଜୀବନ ଓ ଜଡ ଜଗତର ପ୍ରତ୍ୟକ୍ଷ ଓ ପରୋକ୍ଷ ବିନାଶର ମୂଳ ଉତ୍ସ ହେଉଛି 'ଶକ୍ତି' । ଶକ୍ତିର ପ୍ରକାଶ୍ୟମାନ ଅବସ୍ଥା ହିଁ ହେଉଛି ସୃଷ୍ଟି ।

ଓଡିଶା ସମଗ୍ର ଦେଶରେ ପ୍ରଥମ ଶକ୍ତି ଆରାଧନାର କ୍ଷେତ୍ର । ଶକ୍ତି ସାଧନାରୁ ହିଁ ତନ୍ତ୍ରର ପ୍ରୟୋଗ ଓ ପ୍ରାମାଣିକତା ସାର୍ଥକ ହୋଇଛି । ତନ୍ତ୍ରରେ ଉଲ୍ଲେଖ ଅଛି ଯେ ଉଡ୍‌ଡୀୟାନ ପୀଠ ହେଉଛି ଶକ୍ତି ପୂଜା ଓ ତନ୍ତ୍ର ଆରାଧନାର ପ୍ରଥମ ପୀଠ । ଆଉ ତନ୍ତ୍ରର ଆରାଧ୍ୟ ଦେବତା ଓଡ୍ରେଶ– ଶ୍ରୀଜଗନ୍ନାଥଙ୍କୁ ଏଠାରେ ପୂଜା କରାଯାଏ ।

ଓଡ୍ରାଖ୍ୟଂ ପ୍ରଥମ ପୀଠଂ ଦ୍ୱିତୀୟ ଜାଳ ଶୈଳକମ୍<br>
ତୃତୀୟ ପୂର୍ଣ୍ଣପୀଠଂ ତୁ କାମରୂପ ଚତୁର୍ଥକମ୍<br>
କାତ୍ୟାୟନୀଂ ଜଗନ୍ନାଥଂ ଓଡ୍ରେଶଂ ଚ ପ୍ରପୂଜୟେତ୍ ॥

ଶକ୍ତି ଉପାସନା ତଥା ତନ୍ତ୍ର ପୀଠ ରୂପେ ଓଡିଶାରେ ବିଭିନ୍ନ ସ୍ଥାନ ଅଛି ଓ ଏ ପର୍ଯ୍ୟନ୍ତ ସେହି ସ୍ଥାନଗୁଡିକର ମହତ୍ୱ ଏବେ ବି ଉପଲବ୍ଧ ହେଉଛି । ଯାଜପୁରର ବିରଜା ଓ ସପ୍ତମାତୃକା, ଭୁବନେଶ୍ୱରର ମୋହିନୀ, ବାରାହୀ, କାପାଳିନୀ, ଗୌରୀ ଓ ଭୂବାସିନୀ ଆଦି । ହୀରାପୁର ଓ ରାଣୀପୁର ଝରିଆଳର ଚୌଷଠି ଯୋଗିନୀ ଏହା ବ୍ୟତୀତ ମଙ୍ଗଳା, ଭଗବତୀ, ସାରଳା, ସମଲେଶ୍ୱର, ଚର୍ଚ୍ଚିକା, ଉଗ୍ରତାରା, ତାରାତାରିଣୀ ଓ ତାରିଣୀ ପ୍ରଭୃତି ପୀଠର ଗୁରୁତ୍ୱ ତଥା ବିଶେଷତ୍ୱ ଏବେ ବି ରହିଛି ।

ଓଡିଶାର ଆଠଗୋଟି ସ୍ଥାନରେ ଚଣ୍ଡୀଙ୍କର ପ୍ରଧାନ ବିଗ୍ରହମାନ ଅଛି ।

ବାଣପୁରେ ଭଗବତୀ, ଶ୍ରୀକ୍ଷେତ୍ରେ ବିମଳା<br>
କାକଟପୁରେ ରହିଲୁ ନାମ ତୋ ମଙ୍ଗଳା ।<br>
ଝଙ୍କଡେ ସାରଳା ନାମ ଅଟଇ ତୋହର<br>
ବିରଜାଇ ନାମେ ବିଜେ କଲୁ ଯାଜପୁର ।<br>
ବାଙ୍କିରେ ନାମ ତୋହର ଅଟେ ଚର୍ଚ୍ଚିକାଇ<br>
ସମ୍ବଲପୁରରେ ନାମ ବହିଲୁ ସମଲାଇ ।<br>
ତାଳଚେରରେ ହେଙ୍ଗୁଳା ନାମ ତୋର ମାଆ<br>
ଏହିଭଳି ଉତ୍କଳରେ ଶକ୍ତି ଆଠ ନାଆଁ ।

ଉତ୍କଳ ଶକ୍ତିପୀଠ ଓ ତନ୍ତ୍ର ପୀଠ । ଆଉ ଏକ ପୀଠର ପୀଠେଶ୍ୱରୀ ହିଁ ବିରଜା । ବିରଜା ଯାଜପୁରରେ ପୀଠାସୀନ ହେଲେ ସୁଦ୍ଧା ଉତ୍କଳର ଶକ୍ତିମୟୀ ଦେବୀ । ଅଷ୍ଟାଦଶପୀଠ ବର୍ଣ୍ଣନାରେ ଶ୍ରୀଶଙ୍କରାଚାର୍ଯ୍ୟ ପୀଠେଶ୍ୱରୀ ରୂପେ ବିରଜାଙ୍କୁ ଗ୍ରହଣ କରିଛନ୍ତି– ଉତ୍କଳେ ବିରଜା ଦେବୀ ମାଣିକ୍ୟାଂ ଚକ୍ରକୋଟିନୀ । ବୃହତନୀଳ ତନ୍ତ୍ରରେ ଉଲ୍ଲେଖ ଅଛି–

ବିରଜା ଯାଗପୁର୍ଯ୍ୟାଂ ତୁ ଭଦ୍ରେଶ୍ୱପି ଭଦ୍ରକର୍ଣ୍ଣିକା ।

ଏହି ସବୁ ଆଲୋଚନାରୁ ଜଣାଯାଏ ଯେ ପ୍ରାଚୀନ ତନ୍ତ୍ରମାନଙ୍କରେ ଓଡିଶାର ଶ୍ରୀକ୍ଷେତ୍ର, ଏକାମ୍ର ଓ ଯାଜପୁର ତାନ୍ତ୍ରିକ ପୀଠ ରୂପେ ସାରା ଭାରତବର୍ଷରେ ବିଖ୍ୟାତ ଥିଲା ଓ ଏବେବି ଅଛି ମଧ୍ୟ । ଏହି ଉଡ୍‌ଡୀୟାନ ପୀଠ ବା ଉଡ୍ର ଦେଶରେ ଶ୍ରୀଜଗନ୍ନାଥ ହେଉଛନ୍ତି ଭୈରବ ବିରଜା ତଥା ବିମଳା ଭୈରବୀ ରୂପେ ତନ୍ତ୍ର ଜଗତରେ ପରିଚିତା । ଦେବୀ ସତୀଙ୍କର ୫୧ ଖଣ୍ଡ ଦେହାଂଶରୁ ନାଭିଦେଶ ଉତ୍କଳର ବିରଜା କ୍ଷେତ୍ରରେ ପଡିଥିଲା । ତେଣୁ ବିରଜା ହେଲେ ଭୈରବୀ ଓ ଜଗନ୍ନାଥ ହେଲେ ଭୈରବ । ସେହି ବିରଜା ହିଁ ବିମଳା ଅଟନ୍ତି ।





ଉତ୍କଳେ ନାଭିଦେଶଂଚ ବିରଜାକ୍ଷେତ୍ରମଚ୍ୟୁତେ
ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ ।

'ଯୋଗିନୀତନ୍ତ୍ର'ରେ ଦେବୀଙ୍କର ମାହାତ୍ମ୍ୟ ତ୍ରିଲୋକରେ ବ୍ୟାପ୍ତ ବୋଲି ଉଲ୍ଲେଖ କରାଯାଇଛି –

ବିରଜନ୍ ତ୍ୱମଦଂ ତୋୟଂ ତ୍ରିଷୁ ଲୋକେଷୁ ବିଶ୍ରୁତମ୍
ବ୍ରହ୍ମଲୋକସ୍ୟ ଯତ୍‌ସ୍ଥାନଂ ଧନ୍ୟାଃ ପଶ୍ୟନ୍ତି ତୀର୍ଥକମ୍ ।

ନାରଦୀୟ ସଂହିତାରେ ପୀଠାଧିଶ୍ୱରୀ ବିରଜାଙ୍କୁ କଳାମୟୀ ଶକ୍ତି ରୂପେ ନିରୂପଣ କରାଯାଇଛି ଓ ବିରଜାଙ୍କୁ ପ୍ରଥମ କଳା ରୂପେ ସ୍ୱୀକୃତି ଦିଆଯାଇଛି । 'ରୁଦ୍ର ଯାମଳ' ତନ୍ତ୍ରରେ ବିରଜାଙ୍କୁ ଯୋଗିନୀ ରୂପେ ସ୍ୱୀକାର କରାଯାଇଛି । ତା'ପରେ ପରେ ବିରଜାଙ୍କୁ ନେଇ ଯନ୍ତ୍ର ଓ ତନ୍ତ୍ରର ବିକାଶ ଘଟିଛି । ତନ୍ତ୍ରବିତ୍‌ମାନେ ବିରଜାଙ୍କୁ ତନ୍ତ୍ରର ଦେବୀ ରୂପେ ଗ୍ରହଣ କରିଛନ୍ତି ଓ ବହୁ ସାଧକ ସାଧିକା ବିରଜାଙ୍କୁ ଆରାଧନା କରି ତନ୍ତ୍ରଶାସ୍ତ୍ରର ବହୁବିଧ ପ୍ରୟୋଗରେ ସଫଳ କାମ ହୋଇଛନ୍ତି ।



ବିରଜାଙ୍କ ଆବିର୍ଭାବ ବିଷୟରେ କୁହାଯାଏ ଭଗବାନଙ୍କ ଆଦେଶ ପାଇ ସୃଷ୍ଟିକର୍ତ୍ତା ବ୍ରହ୍ମା ଯାଜନଗ୍ର ବା ଯାଜପୁରଠାରେ ଯଜ୍ଞ ଆରମ୍ଭ କଲେ । ଯଜ୍ଞରେ କାନ୍ୟକୁବ୍ଜର ଦଶହଜାର ନୈଷ୍ଠିକ ବ୍ରାହ୍ମଣ ଯୋଗଦାନ କରି ଯଜ୍ଞ କର୍ମ ସମାପନ କରିଥିଲେ । ବୈତରଣୀ ନଦୀର ଦଶାଶ୍ୱମେଧ ଘାଟଠାରେ ବ୍ରହ୍ମକୁଣ୍ଡ ସ୍ଥାପନ କରାଯାଇ ଯଜ୍ଞ କରାଯାଇଥିଲା । ଯଜ୍ଞର ଆହୂତିରୁ ଶକ୍ତି ରୂପିଣୀ ମା' ବିରଜା ଆବିର୍ଭୂତା ହୋଇଥିଲେ, ମାତ୍ର ଦେବୀ ଥିଲେ ଦୁଇଭୁଜା । ଦେବୀଙ୍କର ଦକ୍ଷିଣ ହସ୍ତରେ ବର୍ଚ୍ଛା, ବାମ ହସ୍ତରେ ଥିଲା ମହିଷୀ ରୂପୀ ମହିଷାସୁରର ଲାଙ୍ଗୁଳ । ମହିଷା ପିଠିରେ ଦେବୀଙ୍କର ବର୍ଚ୍ଛା ବିଦ୍ଧ ହୋଇଥିଲା । ବିରଜାଙ୍କର ଏହି ମୂର୍ତ୍ତିକୁ ଧ୍ୟାନ କରାଯାଏ । ଯେଉଁଦିନ ଦେବୀ ଏହି ପୀଠରେ ଆବିର୍ଭୂତା ହେଲେ ସେଦିନ ଥିଲା ମାଘମାସ ଅମାବାସ୍ୟା ତିଥି ଶ୍ରବଣା ନକ୍ଷତ୍ରଯୁକ୍ତ ମକର ଚନ୍ଦ୍ରରେ ଓ ମଧ୍ୟାହ୍ନ ସମୟରେ । ସେହି ତିଥିରେ ପ୍ରତିବର୍ଷ ମା'ଙ୍କର ସ୍ୱନକ୍ଷତ୍ର ପାଳନ କରାଯାଏ । ଦ୍ୱାଦଶ ଶତାବ୍ଦୀ ବେଳକୁ ଓଡିଶାରେ ତନ୍ତ୍ର ସାଧନାର ଉନ୍ମେଷ ଘଟିଗଲାଣି । ପଶ୍ଚିମ ଓଡିଶାରେ ଶାବର ତନ୍ତ୍ରର ଚର୍ଚ୍ଚା ଓ ପ୍ରୟୋଗ ଚାଲିଥାଏ । ଦକ୍ଷିଣ କୋଶଳ ବା ପାଟଣାଗଡ ତନ୍ତ୍ର ଚର୍ଚ୍ଚାର ମୁଖ୍ୟ ପୀଠ ଥିବାବେଳେ ପାଟଣେଶ୍ୱରୀ, କୋଶଳଶ୍ୱରୀ, ସମଲେଶ୍ୱର, ମାଣିକେଶ୍ୱର, ସ୍ତମ୍ଭେଶ୍ୱରୀ ବା ଖମ୍ଭେଶ୍ୱରୀଙ୍କର ପୂଜାର୍ଚ୍ଚନା ଚାଲିଥାଏ । ତନ୍ତ୍ର ବିଶାରଦ ଧନ୍ୱନ୍ତରୀ ଗୁରୁ ରୂପେ ସାଧକ ସାଧିକାମାନଙ୍କୁ ତନ୍ତ୍ର ଶିକ୍ଷା ଦେଉଥାନ୍ତି । ସେହି ସମୟରେ ଓଡିଶାରେ ସାତଜଣ ସାଧିକା ଥିଲେ । ଜ୍ଞାନଦେଈ ମାଲୁଣୀ, ନିତେଇଧୋବଣୀ, ଲୁହୁକୁଟି ଲୁହୁରାଣୀ, ସକୁଟି ଚମାରୁଣୀ, ପତରସଉରୁଣୀ, ଗାଙ୍ଗୀ ଗଉଡୁଣୀ ଓ ଶୁଆ ତେଲୁଣୀ ।

ଯାଜପୁରର ନିତେଇ ଧୋବଣୀ ବୋଧହୁଏ ସେଠାରୁ ଶିକ୍ଷା ପାଇ ଦେବୀ ବିରଜାଙ୍କୁ ସାଧନାରେ ସିଦ୍ଧି କରାଇ ବହୁ ଅଲୌକିକ ସିଦ୍ଧିର ଅଧିକାରିଣୀ ହୋଇଥାନ୍ତି । ପ୍ରବାଦ ଅଛି କାଉଁରୀ କାମଚଣ୍ଡୀ ଦେଶର କାମିଆଁ (ଗାରେଡିବିଦ୍ୟା) ଜାଣିଥିବା ଟିକେଇ ବା ପିତେଇ ପତର ସଉରୁଣୀ ନାମକ ଜଣେ ସ୍ତ୍ରୀଲୋକ ଗୋଟିଏ ବରଗଛରେ ଚଢି ମନ୍ତ୍ର ବଳରେ ଉଡି ଉଡି ଆସୁଥାଏ । ତାର ଉଦ୍ଦେଶ୍ୟ ତନ୍ତ୍ରର ଦେବତା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବ । ପୁରୀ ନିକଟସ୍ଥ ଚାରିନଳା ଗ୍ରାମ ନିକଟରେ ସେ ବରଗଛ ଉଡିଯିବା ଯୋଗୁଁ ତା'ର ଛାଇ ପୋଖରୀ ଭିତରେ ପଡିଲା । ନିତେଇ ଧୋବଣୀ ସେତେବେଳକୁ ଯାଜପୁର ଛାଡି ସେହି ଗାଁରେ ରହି ଶ୍ରୀଜଗନ୍ନାଥଙ୍କ ଦର୍ଶନ କରୁଥାଏ । ନିଜର କୌଳିକ ବୃତ୍ତି ଅନୁଯାୟୀ ଗାଁ ଲୋକଙ୍କର ଲୁଟାପଟା ଆଣି ସେଇ ପୋଖରୀରେ କାଚୁଥାଏ । ବିରଜାଙ୍କ ଦୟାରୁ ସେ ତନ୍ତ୍ର ବିଦ୍ୟାରେ ପାରଙ୍ଗମ ହୋଇଯାଇଛି । ଛାଇ ଦେଖି କିମିଆଁ ବଳରେ ଉକ୍ତ ଗଛକୁ ବନ୍ଧନ କରିଦେଲା । ଗଛ ସେଇଠି ତଳକୁ ଓହ୍ଲାଇ ଅଟକି ଗଲା । ଲୋକେ ସେହିଦିନୁ ବରଗଛକୁ କାଉଁରୀ ବରଗଛ ବୋଲି କୁହନ୍ତି । ନିତେଇ ହାରିଯାଇ ପିତେଇର ଶରଣ ନେଇଥିଲା । ଦୁହେଁ ସଙ୍ଗାତ ବସିଲେ । ପରେ




ନିତେଇ ଧୋବଣୀ ସାଥୀରେ ପିତେଇ ଯାଜପୁର ଆସି ବସବାସ କରୁଥିଲା ବୋଲି ଜନଶ୍ରୁତି ଅଛି ।

ମନ୍ତ୍ରୀ ବାସୁଦେବ ବାହିନୀପତି କେଶରୀ ବଂଶର ରାଜାମାନଙ୍କ ପ୍ରତି ବୀତସ୍ପୃହ ହୋଇ ଉଠିଥିଲେ । ଦାକ୍ଷିଣାତ୍ୟରୁ ଚୋଡଗଙ୍ଗ ଦେବଙ୍କୁ ଓଡିଶା ଜୟ କରିବା ନିମନ୍ତେ ଡାକି ଆଣିଲେ । ଚୋଡଗଙ୍ଗ ଦେବ ଥିଲେ ବୀର ଓ ଉତ୍ସାହୀ ଯୁବକ । ତାଙ୍କର ବିଭିନ୍ନ ଶାସ୍ତ୍ରରେ ପାଣ୍ଡିତ୍ୟ ମଧ୍ୟ ଥିଲା । ତଥାପି ତନ୍ତ୍ର ଶାସ୍ତ୍ରରେ ଥିଲା ତାଙ୍କର ବିଶେଷ ଆଗ୍ରହ । ସେ ଓଡିଶା ଆସିବା ନିମନ୍ତେ ନିଜ ମା' ରାଜସୁନ୍ଦରୀଙ୍କର ଅନୁମତି ଚାହିଁଲେ । ରାଣୀ ରାଜସୁନ୍ଦରୀଙ୍କର ପୁରୀଠାରେ ନିତେଇ ଧୋବଣୀଙ୍କ ସହିତ ସାକ୍ଷାତ ହୋଇଥିଲା । ନିତେଇଙ୍କର ତନ୍ତ୍ର ବିଦ୍ୟା ସାଧନ ପ୍ରତି ରାଣୀ ରାଜସୁନ୍ଦରୀ ଆକୃଷ୍ଟ ହୋଇ ଉଠିଥିଲେ ଓ ଦୁହେଁ ସଙ୍ଗାତ ବସିଥିଲେ । ଚୋଡଗଙ୍ଗଦେବ ମାତାଙ୍କଠାରୁ ଚିଠି ଧରି ଯାଜପୁରଠାରେ ମନ୍ତ୍ରୀ ବାସୁଦେବଙ୍କର ମାଧମରେ ଉପସ୍ଥିତି ହେଲେ ।

ନିତେଇ ଧୋବଣୀ ସହିତ ଚୋଡଗଙ୍ଗ ଦେବଙ୍କ ପ୍ରଥମ ସାକ୍ଷାତ କଥା ମାଦଳାପାଞ୍ଜିରେ ବର୍ଣ୍ଣିତ ହୋଇଛି – 'ଏଥକୁ ସେ ନେତେଇ ଧୋବଣୀକୁ ଦେଖିଲା ଭାତରାନ୍ଧୁ ଅଛି । ଗୋଡ ଗୋଟାଏ ଜାଳୁ ଅଛି । ଏହା ଡାକ ଶୁଣି କୋଡପୁଅକୁ ଚୁଲିରେ ଦେଇ ଏହାକୁ କଥା କହିଲା ।'

ଚୋଡଗଙ୍ଗଦେବ ଏଭଳି ଅଲୌକିକ ଶକ୍ତି ସମ୍ପନ୍ନା ତାନ୍ତ୍ରିକାକୁ ଆଗରୁ କେବେ ଭେଟି ନଥିଲେ । ସେ ମା' ପଠାଇଥିବା ଚିଠିଟି ଦେଇ ନିଜର ପରିଚୟ ଦେଲେ । ନିତେଇ ସଙ୍ଗାତର ପତ୍ର ପଢି ଖୁସି ହେଲା । କହିଲା– 'ପୁଅ ! ତୁ ନିଶ୍ଚୟ ଓଡିଶା ଖଣ୍ଡରେ ରାଜ୍ୟ କରିବୁ । କେଶରୀ ବଂଶ ଧ୍ୱଂସ ପାଇବ । ମାତ୍ର ପ୍ରଥମେ ତୁ ବେତାଳ ସାଧନା କର । ମା' ବିରଜାଙ୍କ କୃପାରୁ ତୁ ବେତାଳ ସିଦ୍ଧି ପାଇବୁ । ବେତାଳମାନେ ତୋ ବୋଲରେ ରହିଲେ, କେଶରୀମାନଙ୍କର ସୈନ୍ୟ ସାମନ୍ତ ପରାସ୍ତ ହୋଇଯିବେ । ବେତାଳମାନେ ରାତାରାତି ଶହ ଶହ ସୈନ୍ୟଙ୍କୁ କେଉଁଆଡେ ଉଡାଇ ନେବେ । ଚୋଡଗଙ୍ଗ ଦେବ ନିତେଇ ଧୋବଣୀଙ୍କୁ ଗୁରୁ ରୂପେ ଗ୍ରହଣ କଲେ । ଶାବର ବିଦ୍ୟା ଶିକ୍ଷା ଓ ପ୍ରୟୋଗ କରିବା ସହିତ ମା' ବିରଜାଙ୍କ କୃପା ଲାଭ କରି ବେତାଳ ସାଧ କଲେ । ମାଦଳାପାଞ୍ଜିରେ ଉଲ୍ଲେଖ ଅଛି–

ଏ ଚୋଡଗଙ୍ଗଦେବ ବେତାଳ ସାଧ । ନିତେଇ ମା ନଗ୍ରଦେବୀ କିଳତା ମହାପଶୁ ମନିନ୍ତ କେଶରୀ ବଂଶ ରାଜା । ସିଦ୍ଧ ରାଜାଙ୍କୁ ଉଚ୍ଛନ୍ନ କରାଇ ରାଜା କଲା । ଏ ରାଜା ଶାବର ବିଦ୍ୟାରେ ପରିପୂର୍ଣ୍ଣ । ଏହାଙ୍କୁ ଆଗେ ଚଢାଇ ଉଡି ନଯାଇପାରେ ।

ଚୋଡଗଙ୍ଗଦେବ ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ସୁବର୍ଣ୍ଣ କେଶରୀଙ୍କୁ ହରାଇ ଓଡିଶା ଅଧିକାର କଲେ । ବାସୁଦେବ ବାହିନୀପତି ଚୋଡଗଙ୍ଗ ଦେବଙ୍କୁ ସମସ୍ତ ପ୍ରକାର ରାଜକୀୟ ସାହାଯ୍ୟ ପ୍ରଦାନ କରିଥିଲେ ବୋଲି ଇତିହାସ କୁହେ । ସୁବର୍ଣ୍ଣ କେଶରୀ ଅପୁତ୍ରିକ ଥିଲେ । ନିଜର ଏକମାତ୍ର କନ୍ୟା ନନ୍ଦିକା ଚୋଡଗଙ୍ଗ ଦେବଙ୍କୁ ପତି ରୂପେ ନପାଇ ଆତ୍ମହତ୍ୟା କରିଥିଲେ । ସୁବର୍ଣ୍ଣ କେଶରୀ ଶେଷରେ ତପସ୍ୱୀ ଜୀବନ ଯାପନ କରିଥିଲେ ।

ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି– ଏ ରାଜା (ଚୋଡଗଙ୍ଗଦେବ) ବହୁତ ମନ୍ତ୍ର ଯନ୍ତ୍ର ଜାଣନ୍ତି । ଚୋଡଗଙ୍ଗଦେବ ଯାଜପୁର କଟକରେ ରାଜା ହୋଇ ବାସୁଦେବ ବାହିନୀପତିଙ୍କୁ ମନ୍ତ୍ରୀ କରାଇଥିଲେ ।

ପରବର୍ତ୍ତୀ ସମୟରେ ତନ୍ତ୍ର ସାଧିକା ନିତେଇ ଧୋବଣୀକୁ ରାଜା ଉଚିତ୍ ମର୍ଯ୍ୟାଦା ପ୍ରଦାନ କରିଥିଲେ । ନିଜର ତନ୍ତ୍ର ସାଧନା ବଳରେ ଯାଜପୁରର ବିଭିନ୍ନ ଶକ୍ତିପୀଠକୁ ସହାୟତା ପ୍ରଦାନ ସହିତ ପୁନଃ ସଂସ୍କାର କରାଇ ଥିଲେ । ବିରଜାମଣ୍ଡଳ ଯାଜପୁର ତଥା ଦେବୀ ବିରଜା ହେଉଛନ୍ତି ଓଡିଶାର ପ୍ରଥମ ଶାକ୍ତ ଉପାସନାର ପ୍ରତୀକ ।

ଆଲୋକ ନଗର, ନିଆଳୀ
ଜି–କଟକ







# ହୀରାପୁରର ଚଉଷଠି ଯୋଗିନୀ ପୀଠ

**ଶ୍ରୀନିବାସ ଆଚାର୍ଯ୍ୟ**

ଭାରତରେ ଆଧ୍ୟାତ୍ମିକ ଶକ୍ତିର ପରିସର ବ୍ୟାପକ। ଏହି ଶକ୍ତି ମଧ୍ୟରେ ହିନ୍ଦୁ ତତ୍ତ୍ୱ ଦ୍ୱାରା ଆଧାରିତ ସନାତନ ଧର୍ମ ସବୁଠାରୁ ଅଧିକ ଗୁରୁତ୍ୱ ବହନ କରିଅଛି। କାଳକ୍ରମେ ଜୈନ, ବୌଦ୍ଧ ଓ ବ୍ରହ୍ମଣ୍ୟ ଧର୍ମ ଅଭ୍ୟୁଦୟ ହୋଇ ପ୍ରସାର ଲାଭ କରିଥିଲା। ଏହା ପରେ ପଞ୍ଚୋପାସନା ପଦ୍ଧତି ଦ୍ରୁତ ଗତିରେ ପ୍ରସାର ଲାଭ କରିଥିଲା। ଏହି ପଞ୍ଚୋପାସନା ପଦ୍ଧତି ହେଲା– ଶୈବ, ବୈଷ୍ଣବ, ଶାକ୍ତ, ସୌର ଓ ଗାଣପତ୍ୟ। ଶଙ୍କରାଚାର୍ଯ୍ୟଙ୍କ ସମୟରୁ ଶୈବ ଓ ବୈଷ୍ଣବ ଧର୍ମର ମତବାଦରୁ ବହୁଳ ଭାବରେ ଶାକ୍ତ ଉପାସନା ପଦ୍ଧତି ସୃଷ୍ଟି ହୋଇଥିଲା। ସେହି ଶୈବ ମତବାଦର ଏକ ମୁଖ୍ୟ ଶାଖା ରୂପେ ଶାକ୍ତ ଉପାସନା ପ୍ରଭାବିତ ହୋଇ କ୍ରମବିକାଶ ଲାଭ କରିଥିଲା। ଖ୍ରୀଷ୍ଟୀୟ ସପ୍ତମ ଓ ଅଷ୍ଟମ ଶତାବ୍ଦୀରେ ତନ୍ତ୍ର ଓ ଯୋଗମାର୍ଗକୁ ପାଥେୟ କରି ଶକ୍ତି ଉପାସନାର ମାତୃକା, ବିଦ୍ୟା ଓ ମହାବିଦ୍ୟାର ମିଶ୍ରଣରେ ଚତୁଃଷଷ୍ଟୀ ଯୋଗିନୀଙ୍କ ଆରମ୍ଭ ହୋଇଥିଲା। କାଳିକା ପୁରାଣକୁ ଆଲୋଚନା କଲେ ଜଣାଯାଏ ଭାରତରେ ସର୍ବପ୍ରଥମ ତନ୍ତ୍ରପୀଠ ରୂପେ ହୀରାପୁରର ଚଉଷଠି ଯୋଗିନୀ ପୀଠ ବିଦ୍ୟମାନ। ତନ୍ତ୍ର ସଂସ୍କୃତିରେ ଯୋଗିନୀମାନଙ୍କ ସମ୍ପର୍କରେ ବିଶେଷ ଭୂମିକା ଅନ୍ତର୍ନିହିତ ଅଛି। ତେଣୁ ହୀରାପୁରର ଚଉଷଠୀ ଯୋଗିନୀ ପୀଠକୁ ତନ୍ତ୍ରପୀଠ କୁହାଯାଏ।



ବେଦ, ବେଦାନ୍ତ, ଉପନିଷଦ, ମହାଭାରତ, ରାମାୟଣ ଓ ବିଭିନ୍ନ ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ଅଛି ଯେ, ଓଡ଼ିଶାରେ ଶାକ୍ତଧର୍ମ ପ୍ରସାର ଓ ପ୍ରଚାର ଅତି ପ୍ରାଚୀନ। ବିଭିନ୍ନ ଯୁଗରେ ଶକ୍ତିମାନେ ଆବିର୍ଭାବ ହୋଇ ମହାପ୍ରତାପୀ ଦାନବମାନଙ୍କୁ ନିହତ କରି ଧରାପୃଷ୍ଠରେ ସାଧୁସନ୍ଥ ଜନସମାଜ ମଧ୍ୟରେ ଶାନ୍ତି ପ୍ରଦାନ କରିଛନ୍ତି । କିନ୍ତୁ ତନ୍ତ୍ର ସଂସ୍କୃତି ତଥା ଯୋଗିନୀମାନଙ୍କର ଅଭ୍ୟୁଦୟର ଆଜି ପର୍ଯ୍ୟନ୍ତ ଜଣା ନଥିଲେ ମଧ୍ୟ ବେଦ ସଂସ୍କୃତି ପୂର୍ବରୁ ସୃଷ୍ଟି ବୋଲି ଗବେଷକମାନେ ମତ ପ୍ରଦାନ କରିଛନ୍ତି। କେହି କେହି ଏହି ଉପାସନା ହରପ୍ପା ଓ ମହେଞ୍ଜୋଦାରୋ ସଭ୍ୟତାରୁ ଅଭ୍ୟୁଦୟ ବୋଲି କହିଥିଲେ ମଧ୍ୟ ଓଡ଼ିଶା ହେଉଛି ଏହାର ଆଦିପୀଠ। କେଉଁ ଆବହମାନ କାଳରୁ ଓଡ଼ିଶାର କୋଣ ଅଣୁକୋଣରେ ଶକ୍ତିମାନଙ୍କର ଉପାସନା ପ୍ରସିଦ୍ଧି ଲାଭ କରିଛି। ଏପରିକି ଗ୍ରାମଗୁଡ଼ିକରେ ଗ୍ରାମଦେବୀ ଓ ପ୍ରତ୍ୟେକ ପରିବାରରେ ଗୃହଦେବୀ ରୂପେ ପୂଜା ପାଇବାର ବିଧିବିଧାନ ଆଜି ମଧ୍ୟ ଦେଖିବାକୁ ମିଳେ । କାକଟପୁରର ମା' ମଙ୍ଗଳା, ଝଙ୍କଡର ମା' ସାରଳା, ଯାଜପୁରର ମା' ବିରଜା, ବାଙ୍କୀର ମା' ଚର୍ଚ୍ଚିକା ପୂଜା ପାଉଛନ୍ତି । କିନ୍ତୁ ଚଉଷଠି ଯୋଗିନୀମାନଙ୍କର ଉପାସନା ଓଡ଼ିଶା କାହିଁକି ପବିତ୍ର ଭାରତ ଭୂମିରେ ସମସ୍ତ ଦେବୀମାନଙ୍କ ମଧ୍ୟରେ ସ୍ୱତନ୍ତ୍ର ଗୁରୁତ୍ୱ ବହନ




କରିଅଛି । କାରଣ ଏହାର ସଂସ୍କୃତି ଯୋଗ ଓ ତନ୍ତ୍ର ଦ୍ୱାରା ଆଧାରିତ । ସର୍ବଭାରତୀୟ ସ୍ତରରେ ଏହି ପୀଠ ଚାରୋଟି ସ୍ଥାନରେ ଥିବାବେଳେ, ସେଥିମଧ୍ୟରୁ ଓଡ଼ିଶାରେ ଦୁଇଟି ସ୍ଥାନରେ ଅଛି । ସେହି ପୀଠ ଦୁଇଟି ହେଲା ଅବିଭକ୍ତ ପୁରୀ ଜିଲ୍ଲାର ତଥା ବର୍ତ୍ତମାନ ଖୋର୍ଦ୍ଧା ଜିଲ୍ଲାର ହୀରାପୁର ଓ ବଲାଙ୍ଗୀର ଜିଲ୍ଲାର ରାଣୀପୁର ଝରିଆଲ । ଅନ୍ୟ ଦୁଇଟି ପୀଠ ମଧ୍ୟପ୍ରଦେଶର ଖଜୁରାହୋ ଓ ଭେରାଘାଟ । ଭାରତରେ ଥିବା ଏହି ଚାରୋଟି ଯୋଗିନୀ ପୀଠ ତଥା ତନ୍ତ୍ରପୀଠ ମଧ୍ୟରେ ହୀରାପୁରର ଚଉଷଠି ଯୋଗିନୀ ପୀଠ ପ୍ରାଚୀନ । ତେଣୁ ଏହି ପୀଠର ଗୁରୁତ୍ୱ ଓ ମହତ୍ୱ ସର୍ବବ୍ୟାପୀ ।

ଚଣ୍ଡୀ ପୁରାଣ ଓ ଦେବୀ ପୁରାଣରେ ଚଉଷଠି ଯୋଗିନୀମାନଙ୍କର ଆବିର୍ଭାବ ସମ୍ପର୍କରେ ଉଲ୍ଲେଖ ଅଛି । ମହାନ ପ୍ରତାପୀ ଦାନବ ମହିଷାସୁରର ଅକଥନୀୟ ଅତ୍ୟାଚାରରେ ତ୍ରିଭୁବନ ପ୍ରକମ୍ପିତ ହେବା ସଙ୍ଗେ ସଙ୍ଗେ ଦେବତାମାନଙ୍କର ଆସନ ଟଳମଳ ହୋଇଥିଲା । ସର୍ବଦେବଙ୍କର ଶକ୍ତି ବଳରେ ମା' ଦେବୀ ଦୁର୍ଗା ଆବିର୍ଭୂତା ହୋଇଥିଲେ । ସର୍ବଶକ୍ତିଦାୟିନୀ ଦୁର୍ଗା ଦେବୀ ମହିଁଷାସୁର ଅସୁର ସହିତ ଯୁଦ୍ଧ କରିବା ଅବସରରେ ରକ୍ତବୀର୍ଯ୍ୟ ନାମକ ଏକ ପ୍ରତାପୀ ଦାନବର ରକ୍ତବିନ୍ଦୁମାନ ତଳେ (ମାଟି) ପଡି ସେଥିରୁ ସହସ୍ର ସହସ୍ର ଦାନବ ସୃଷ୍ଟି ହୋଇ ଦୁର୍ଗାଙ୍କ ସହିତ ଯୁଦ୍ଧ କରିଥିଲେ । ଏହିସବୁ ଦାନବଙ୍କୁ ନିହତ କରିବା ପାଇଁ ମା' ଦୁର୍ଗା ଦେବୀ ତାଙ୍କ ପ୍ରଖର ବିଶ୍ୱାସରୁ ଯୋଗିନୀମାନ ସୃଷ୍ଟି କରିଥିଲେ । ସେହି ଯୋଗିନୀମାନେ ରକ୍ତବୀର୍ଯ୍ୟ ଅସୁରର ଶରୀରରୁ ନିର୍ଗତ ହେଉଥିବା ରକ୍ତବିନ୍ଦୁକୁ ତଳେ ପକାଇ ନଦେଇ ପିଇଦେଲେ । ଫଳରେ ଆଉ ଦାନବଗଣ ସୃଷ୍ଟି ହେଲେ ନାହିଁ । ତେଣୁ ମା' ଦୁର୍ଗା ରକ୍ତବୀର୍ଯ୍ୟ ସହିତ ସମସ୍ତ ଅସୁରଙ୍କୁ ନିହତ କରିଥିଲେ । ଏହା ଫଳରେ ଧରାପୃଷ୍ଠରେ ଶାନ୍ତି ପ୍ରତିଷ୍ଠା ହୋଇଥିଲା । କାଳକ୍ରମେ ସେହି ଯୋଗିନୀମାନେ ବିଭିନ୍ନ ପୀଠରେ ପୂଜା ପାଉଛନ୍ତି । ସେହି ଯୋଗିନୀମାନଙ୍କ ମଧ୍ୟରୁ ହୀରାପୁରଠାରେ ଚଉଷଠି ଯୋଗିନୀ ରୂପେ ପୂଜା ପାଉଛନ୍ତି, ଯାହାକି ଆଜି ସେହି ଯୋଗିନୀ ପୀଠ ହୀରାପୁର ରୂପେ ବିଦ୍ୟମାନ । ହିନ୍ଦୁ ତନ୍ତ୍ରରେ ଚଉଷଠି ଯୋଗିନୀମାନଙ୍କର ଉତ୍ପତ୍ତି ସମ୍ପର୍କରେ ସ୍କନ୍ଦ ପୁରାଣ ଓ କାଳିକା ପୁରାଣରେ ଉଲ୍ଲେଖ ଅଛି । ସେହି ଆଠଟି ଆଦିଶକ୍ତି ହେଲେ– ଉଗ୍ରଚଣ୍ଡୀ, ଭଦ୍ରକାଳୀ, ଦୁର୍ଗା, ଉଗ୍ରତାରା, କୌଶିକା, କାଳୀ, ଶିବଦୂତୀ ଓ ଚଣ୍ଡିକା ।

ହୀରାପୁର ଚଉଷଠି ଯୋଗିନୀ ପୀଠର ଅନତି ଦୂରରେ ପୁରାତନ ଉତ୍କଳର ରାଜଧାନୀ ଶିଶୁପାଳଗଡ ଅବସ୍ଥିତ । ଖ୍ରୀଷ୍ଟୀୟ ସପ୍ତମ ଓ ଅଷ୍ଟମ ଶତାବ୍ଦୀରେ ଭୌମ୍ୟ ବଂଶୀୟ ଶାନ୍ତା ନାମକ ଜଣେ ରାଜା ଏଠାରେ ରାଜୁତି କରୁଥିଲେ । ତାଙ୍କର ହୀରାବତୀ ନାମକ ଜଣେ ପାଟରାଣୀ ଥିଲେ । ରାଣୀଙ୍କ ନାମାନୁସାରେ ଏହି ଗ୍ରାମର ନାମ ହୀରାପୁର ହୋଇଅଛି ବୋଲି କିମ୍ବଦନ୍ତୀ କୁହେ । ରାଣୀ ହୀରାବତୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଚଉଷଠି ଯୋଗିନୀ ପୀଠ ହୋଇଥିଲା । ଦେବୀ ମହାମାୟା ଏହି ପୀଠ ଓ ଗ୍ରାମର ଅଧିଷ୍ଠାତ୍ରୀ ଦେବୀ ରୂପେ ପୂଜିତା । ଏହି ପୀଠଟି ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରୁ ପ୍ରାୟ ୧୦ କି.ମି ଦୂରରେ ବାଲିଅନ୍ତା ଥାନା ଓ ପଞ୍ଚାୟତ ସମିତି ଅନ୍ତର୍ଗତ ବାଳକାଟିଠାରୁ ୨/୩ କି.ମି ଦୂରରେ ପୁଣ୍ୟତୋୟା ଭାର୍ଗବୀ ନଦୀ ତଟ ଦେଶରେ ହୀରାପୁର ଗ୍ରାମର ଦକ୍ଷିଣ ଓ ପୂର୍ବ ଦିଗରେ ବିଦ୍ୟମାନ । ଏହି ପୀଠର ସମ୍ମୁଖରେ ଗୋଟିଏ ପୁଷ୍କରିଣୀ ଅବସ୍ଥିତ । ପୁଷ୍କରିଣୀର ମଧ୍ୟଭାଗରେ ଏକ ଦୀପଦାଣ୍ଡି ରହି ଏହି ସ୍ଥାନର ପରିବେଶକୁ ସୁଶୋଭିତ କରୁଅଛି । କେହି କେହି କୁହନ୍ତି ଏହି ଦୀପଦଣ୍ଡିରେ ୨୧/୨ ଦଣ୍ଡ ସୁବର୍ଣ୍ଣ ବୃଷ୍ଟି ହୋଇଥିଲା । ବାସ୍ତବିକ୍ ହୀରାପୁର ନାମ ଅନୁସାରେ ଏହି ପୀଠର ମହିମା, ଗୁଣ ଗାରିମା, ପ୍ରାକୃତିକ ସୌନ୍ଦର୍ଯ୍ୟ, ପରିବେଶ ଇତ୍ୟାଦିର ମହତ୍ୱ ପ୍ରତିପାଦନର ଯଥାର୍ଥତା ଅଟେ । ପ୍ରକାଶ ଥାଉକି ହୀରପୁର ଶବ୍ଦକୁ ବାଖ୍ୟା କଲେ ଜଣାଯାଏ ହୀରାରେ ପୂର୍ଣ୍ଣ ତଥା ହୀରାପୁର । ଏହି ପୀଠର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ପରିବେଶ ଐଶ୍ୱର୍ଯ୍ୟପୁରୀ ପରି ଶୋଭା ବହନ କରି ପ୍ରସିଦ୍ଧି ଲାଭ କରି ପାରିଛି । ନଦୀ, ନାଳ ଘେରା ଶସ୍ୟ ଶାମଳା କ୍ଷେତ୍ର ମଧ୍ୟରେ ପୁଷ୍ପ, ଫଳ, ଗୁଳ୍ମ ଓ ତରୁଲତାରେ ପରିପୂର୍ଣ୍ଣ ଶୋଭାର ଭଣ୍ଡାର ଆକର୍ଷିତ କରି ପାରିଛି ଶତଶତ ଭକ୍ତଙ୍କୁ । ସର୍ବୋପରି ଅଧିକ ବିମୋହିତ କରିପାରିଛି ସେଠାରେ ଥିବା ପୁଷ୍କରିଣୀର କାଚକେନ୍ଦୁ ପରି ଜଳରାଶୀ, କଇଁ ଓ ପଦ୍ମଫୁଲର ସୌନ୍ଦର୍ଯ୍ୟ ମାଧୁରୀ । ଆଉ ମଧ୍ୟ ସୁପ୍ରଭାତ ଓ ସନ୍ଧ୍ୟା ସମୟରେ ଶୀତଳ ମଳୟରେ ଫୁଲଗୁଡିକର ସୁବାସିତ କରି ପାରୁଛି ଏହି ପୀଠର ପରିବେଶକୁ ।

ମନ୍ଦିରଟିର ଗଠନଶୈଳୀ ବୈଚିତ୍ର୍ୟମୟ, ଯାହାକି ନଦେଖିଲେ ବର୍ଣ୍ଣନା କରିବା ଅସମ୍ଭବ । ଅଧିଷ୍ଠାତ୍ରୀ ଦେବୀ ମହାମାୟା ଓ ଯୋଗିନୀମାନେ ଏକ ପୁରାତନ ପଥରରେ ନିର୍ମିତ ମନ୍ଦିରରେ ପୂଜା ପାଉଛନ୍ତି । ମନ୍ଦିରର ଆକାର ଗୋଲାକାର କିନ୍ତୁ ଛାତ ଶୂନ୍ୟ । ମନ୍ଦିରର ପ୍ରବେଶ ପଥର ଦ୍ୱାରଦେଶଟି ଏକ ତୋରଣ ପରି ପଥରରେ ନିର୍ମିତ । ଏହାର ଦୁଇ ପାର୍ଶ୍ୱରେ ଦୁଇଟି ଭୈରବ ମୂର୍ତ୍ତି ବିଦ୍ୟମାନ । ସେହି ଦୁଇଟି ମୂର୍ତ୍ତିର ନାମ କାଳ ଓ ବିକାଳ । ଏହି ତୋରଣର ଉପର ଅଂଶରେ ଦୁଇଟି ଦ୍ୱାରପାଳ ମୂର୍ତ୍ତି ବିଦ୍ୟମାନ ।




ମନ୍ଦିରର ବାହାର କାନ୍ଥରେ ନଅଟି କାତାୟନୀ ମୂର୍ତ୍ତି ବିଦ୍ୟମାନ। ସେମାନେ ହସ୍ତରେ ପାନପତ୍ର ଆୟୁଧ ଧରି ଦଣ୍ଡାୟମାନ। ପୀଠର ମଧ୍ୟଭାଗରେ ଚତୁଃଷ୍କୋଣ ବିଶିଷ୍ଟ କୃତି। ଚାରି କୋଣରେ ଚାରୋଟି ପ୍ରତିମା ଦଣ୍ଡାୟମାନ। ସେଥିମଧ୍ୟରୁ ଗୋଟିଏ ସ୍ଥାନରେ ମୂର୍ତ୍ତି ଶୂନ୍ୟ। ବର୍ତ୍ତମାନ ତିନୋଟି ପ୍ରତିମାର ମଧ୍ୟଭାଗରେ ଅର୍ଦ୍ଧେକ ପାଦ ଭୈରବ। କ୍ରୋଟର ଚକ୍ଷୁ, ନୃମୁଣ୍ଡମାଳୀ ଓ ଖଡ଼୍‌ଗଧାରୀ ଅଟନ୍ତି। ଅଧିଷ୍ଠାତ୍ରୀ ମହାମାୟାଙ୍କ ଦୁଇ ପାର୍ଶ୍ୱରେ ଅନ୍ୟ ସମସ୍ତ ମା' ଯୋଗିନୀ ଦେବୀ ସେମାନଙ୍କର ବାହନମାନଙ୍କ ଉପରେ ଆସ୍ଥାନ ବିମଣ୍ଡିତ। ଏହି ପ୍ରତିମାଗୁଡ଼ିକ କଳା ମୁଗୁନି ପଥରରେ ନିର୍ମିତ।

ବେଳେ ବେଳେ ମନରେ ପ୍ରଶ୍ନ ଆସେ କାହିଁକି ଚଉଷଠି ଯୋଗିନୀ ପରିବର୍ତ୍ତେ ଅଧିକ କିମ୍ବା କମ୍ ସଂଖ୍ୟାରେ ଯୋଗିନୀ ପୂଜା ହେବାର ବିଧିବିଧାନ ହୋଇନାହିଁ। ଏଥିରୁ ଅନୁମେୟ ଚଉଷଠି ସଂଖ୍ୟାଟି ଏକ ତତ୍ତ୍ୱଭିତ୍ତିକ ଗୁଣାତ୍ମକ ଆଧ୍ୟାତ୍ମିକ ସଂଖ୍ୟା, ଯାହାକି ସମ୍ପୂର୍ଣ୍ଣ ଯୋଗ ଓ ତନ୍ତ୍ରଦ୍ୱାରା ପର୍ଯ୍ୟବସିତ। ତେଣୁ ବହୁ ବିଦ୍ୱାନ ପଣ୍ଡିତମଣ୍ଡଳୀ ବିଭିନ୍ନ ଶାସ୍ତ୍ରରେ ଏହାର ଗୁରୁତ୍ୱ ଓ ମହତ୍ୱ ପ୍ରତିପାଦନ କରିଛନ୍ତି। ୧–ଚଉଷଠି କଳାର ପ୍ରତୀକ ରୂପେ ଚଉଷଠି ଯୋଗିନୀ ଅବସ୍ଥାପିତ। ୨–ସେହିପରି ଚଉଷଠି ଭୋଗର ପ୍ରତୀକ। ୩–ଚଉଷଠି ଗାୟତ୍ରୀର ପ୍ରତୀକ । (୪) ଚଉଷଠି କାମ ଶାସ୍ତ୍ରର ପ୍ରତୀକ। (୫) ଚଉଷଠି ସିଦ୍ଧି ମହାପୁରୁଷର ପ୍ରତୀକ ଇତ୍ୟାଦି ଚଉଷଠି ସଂଖ୍ୟାର ପ୍ରତୀକ ରୂପେ ଗୃହୀତ। ଯୋଗସ୍ଥା ନାରୀ ହିଁ ଯୋଗିନୀ ରୂପେ ପରିଚିତା। ତେଣୁ ଧାର୍ମିକ ଦୃଷ୍ଟିକୋଣରୁ ଚଉଷଠି ସଂଖ୍ୟାର ପବିତ୍ରତାର ପଟାନ୍ତର ନାହିଁ।

ଚଉଷଠି ଯୋଗିନୀ ଉପାସନା କରିବା ଦ୍ୱାରା ଭକ୍ତମାନଙ୍କର ଅଶେଷ ଉପକାର ସାଧିତ ହୋଇଥାଏ। କୁହାଯାଏ ଚଉଷଠି ଯୋଗିନୀଙ୍କ ନାମ ଜପ କଲେ ଶରୀରରୁ ସର୍ବବ୍ୟାଧି ଦୂର ହୋଇଥାଏ। ଶିଶୁମାନଙ୍କର ରୋଗ ନାଶ ହୋଇଥାଏ। ଗର୍ଭବତୀ ନାରୀଙ୍କର ଗର୍ଭ ସମୟର ବେଦନା ଦୂର ହୋଇଥାଏ। ସର୍ବୋପରି ଭକ୍ତମାନଙ୍କର ମାନସିକ ପୂରଣ ହୋଇଥାଏ। ସିଦ୍ଧ ମହାପୁରୁଷମାନେ ଏହି ପୀଠରେ ସାଧନା କରି ସିଦ୍ଧି ଲାଭ କରିଥିଲେ। ସେମାନେ ଯୋଗିନୀମାନଙ୍କ ଦ୍ୱାରା ଆଶୀର୍ବାଦ ଲାଭ କରି ଦେଶମାତୃକାର ହିତ ସାଧନ କରୁଛନ୍ତି। ଲୋକାଚାରରେ ଅତୀତରେ ଏହି ପୀଠରେ ଶହ ଶହ ରୋଗୀ ହବିଷ ପାଳନ ପୂର୍ବକ ଦୀର୍ଘ ଦିନ ଧରି ଗୁହାରିଆ ପଡ଼ି ସେମାନଙ୍କର ରୋଗ ନିରାକରଣ ପରେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି।

ମନ୍ଦିରର ଦୈନନ୍ଦିନ ପୂଜା ପଦ୍ଧତି ପାଇଁ ଗ୍ରାମର ଦୁଇଟି ବ୍ରାହ୍ମଣ ପରିବାର ବହୁ କାଳରୁ ସେବାୟତ ରୂପେ କାର୍ଯ୍ୟ କରି ଆସୁଛନ୍ତି। ସେହିପରି ମାଳି, ବାରିକ ଇତ୍ୟାଦି ଗ୍ରାମର ସେବାୟତମାନେ ସେମାନଙ୍କର କାର୍ଯ୍ୟ ଯଥା ସମୟରେ କରିବାର ସୁବନ୍ଦୋବସ୍ତ ହୋଇଅଛି। କିନ୍ତୁ ବଡ଼ ବଡ଼ ମେଳା ମହୋତ୍ସବ, ହୋମ ଯଜ୍ଞ ଇତ୍ୟାଦି ସମୟରେ ଅନ୍ୟ ପୂଜକଙ୍କ ସହଯୋଗରେ କାର୍ଯ୍ୟ ସମ୍ପାଦନ ହୋଇଥାଏ। ଅତୀତରେ ପୁଷ୍କରିଣୀର ଜଳ ଠାକୁରାଣୀଙ୍କର ନୀତି କାର୍ଯ୍ୟରେ ବ୍ୟବହାର ହେଉଥିଲା। କିନ୍ତୁ ଜଳ ଦୂଷିତ ହୋଇଯିବାରୁ କୂଅ ଓ ନଳକୂଅର ଜଳ ବ୍ୟବହାର ହେଉଅଛି। ବଡ଼ ବଡ଼ ହୋମ ଓ ମେଳା ମହୋତ୍ସବରେ ଏଠାରେ ରନ୍ଧନ ବ୍ୟବସ୍ଥାମାନ ମଧ୍ୟ ଅଛି। ଏହି ପୀଠରେ ବିବାହ, ବ୍ରତ ଇତ୍ୟାଦି ପବିତ୍ର କାର୍ଯ୍ୟମାନ ମଧ୍ୟ ହୋଇଥାଏ। ମନ୍ଦିରର ପ୍ରାଙ୍ଗଣରେ ଥିବା ଫୁଲ ଠାକୁରାଣୀଙ୍କ ନିକଟରେ ଲାଗି ହୋଇଥାଏ। ବଡ଼ ବଡ଼ ପର୍ବପର୍ବାଣି ତଥା ଦଶହରା, କାର୍ତ୍ତିକ ପୂର୍ଣ୍ଣିମା ଇତ୍ୟାଦି କାର୍ଯ୍ୟଗୁଡ଼ିକ ଗ୍ରାମବାସୀମାନଙ୍କ ତତ୍ତ୍ୱାବଧାନରେ ସୁରୁଖୁରୁରେ ସମ୍ପାଦନା ହୋଇଥାଏ। ପ୍ରତିଦିନ ଦେବୀମାନଙ୍କୁ ସ୍ନାନ କରାଯାଇ ଧୂପ, ଦୀପ ସହିତ ନୈବେଦ୍ୟ ଅର୍ପଣ ହୋଇଥାଏ। ମଧ୍ୟାହ୍ନରେ ରନ୍ଧା ଖାଦ୍ୟ ଓ ସନ୍ଧ୍ୟା ସମୟରେ ଆଳତୀ ସହ ଶୁଖିଲା ଭୋଗ ଲାଗି ହୋଇ ପହୁଡ଼ ପଡ଼ିଥାଏ। ଏଠାରେ ବର୍ଷକ ବାର ମାସ ଗ୍ରାମବାସୀଙ୍କର ଶୁଭକାର୍ଯ୍ୟଗୁଡ଼ିକର ଅନୁକୂଳ ହୋଇଥାଏ। ସନ୍ଧ୍ୟା ସମୟରେ ଏଠାରେ ଭାଗବତ, ଗୀତା, ପୁରାଣ ଇତ୍ୟାଦି ପାଠ ହୋଇଥାଏ।

ନିତ୍ୟ ପୂଜା ବ୍ୟତୀତ ଏହି ପୀଠରେ ବଡ଼ ବଡ଼ ପର୍ବ ପର୍ବାଣିରେ ଦେବୀମାନଙ୍କ ଗହଣା, ହାର, ମାଳ, ମୁକୁଟ ସମେତ ନୂତନ ବସ୍ତ୍ର ବା ପାଟ ଇତ୍ୟାଦି ପରିଧାନ କରାଯାଇଥାଏ। ଦଶହରା ପର୍ବରେ ଦୀର୍ଘ ଷୋହଳ ଦିନ ଗ୍ରାମବାସୀଙ୍କ ତରଫରୁ ମାର୍ଜନା ହୋଇଥାଏ। ଦେବୀଙ୍କୁ ବିଭିନ୍ନ ବେଶରେ ଭୂଷିତ କରାଯାଇ ହୋମ, ଯଜ୍ଞ ସହିତ ଚଣ୍ଡୀପାଠ କରାଯାଇଥାଏ। ଦୋଳ ପୂର୍ଣ୍ଣିମାରେ ଦୋଳ ଯାତ୍ରା ହେଲା ଦେବୀଙ୍କର ପ୍ରଧାନ ପର୍ବ। ଶ୍ରୀପଞ୍ଚମୀ ସମୟରେ ଦୀର୍ଘ ୩ଦିନ ଧରି ଏଠାରେ ମହାଯଜ୍ଞ ହୋଇଥାଏ। ଚୈତ୍ର ପର୍ବ ଅବସରରେ ଦେବୀଙ୍କ ପାଖରେ ଘୃତ ଅନ୍ନ ସହ ଗୋଟା ମାଛ ପୋଡ଼ା ହୋଇ ଭୋଗ ହେବାର ବ୍ୟବସ୍ଥା ଅଛି। ଏହାକୁ ଅମୁହାଁ ଭୋଗ କୁହାଯାଇଥାଏ। ଏହି ଭୋଗ ତା'ପରଦିନ ଗ୍ରାମର ପ୍ରତ୍ୟେକ ଘରେ ବିତରଣ ହୋଇଥାଏ। ଏହିସବୁ ପ୍ରଧାନ ବାର୍ଷିକ ପର୍ବଗୁଡ଼ିକରେ ଗ୍ରାମ ଓ ପଡ଼ୋଶୀ ଗ୍ରାମର ଶହ ଶହ ଭକ୍ତ ସମବେତ ହୋଇ ଯେ ଯାହାର କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଶୁଦ୍ଧପୂତ ମନରେ ଦେବୀଙ୍କୁ ଆଶୀର୍ବାଦ ଭିକ୍ଷା ମାଗିଥାନ୍ତି। ଏହିସବୁ ପ୍ରଧାନ ପର୍ବ ବ୍ୟତୀତ ଅନ୍ୟସବୁ ପର୍ବମାନ ମଧ୍ୟ ପାଳନ ହୋଇଥାଏ। ସେଗୁଡ଼ିକ




ହେଲା ରଜପର୍ବ, ସାବିତ୍ରୀ ଅମାବାସ୍ୟା, ଚିତାଲାଗୀ ଅମାବାସ୍ୟା, ରାକ୍ଷୀ ପୂର୍ଣ୍ଣିମା, ରାଧାଷ୍ଟମୀ, ଜନ୍ମାଷ୍ଟମୀ, ଦୀପାବଳୀ, ଅକ୍ଷୟ ତୃତୀୟା, ମାନସା ପଞ୍ଚମୀ, ସୁଦଶାବ୍ରତ ଇତ୍ୟାଦି । ଆଉ ମଧ ମା' ଯୋଗିନୀଙ୍କ ମଙ୍ଗଳା, କାଳିକା ଓ ଲକ୍ଷ୍ମୀ ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ବହୁ ପ୍ରକାର ଓଷା, ପର୍ବପର୍ବାଣି ପାଳିତ ହୋଇଥାଏ ।

ଅତୀତରେ ଏହି ପୀଠର ପରିବେଶ ଭଲ ନଥିଲା । କାରଣ ଗମନାଗମନ, ଯୋଗାଯୋଗ, ପ୍ରସାର ଓ ପ୍ରଚାରର ଓ ପରିଚାଳନା ବ୍ୟବସ୍ଥା ଇତ୍ୟାଦି ଅତ୍ୟନ୍ତ ଅବହେଳିତ ହୋଇଥିଲା । ସର୍ବୋପରି ଅସ୍ୱାସ୍ଥ୍ୟକର ତଥା ଅପରିଷ୍କାର ପରିବେଶ ଘେରି ରହିଥିବାରୁ ଏହା ଶ୍ରୀହୀନ ଦେଖାଯାଉଥିଲା । ଦେଶ ସ୍ୱାଧୀନତା ପ୍ରାପ୍ତ ପରେ କ୍ରମଶଃ ଏହି ପୀଠର ଅବସ୍ଥା ଉନ୍ନତି ସାଧନ ହୋଇପାରିଛି । ବର୍ତ୍ତମାନ ଏହି ପୀଠକୁ ଭାରତ ସରକାରଙ୍କର ପ୍ରତ୍ନତତ୍ତ୍ୱ ବିଭାଗ ହାତକୁ ନେଇ ସର୍ବାଙ୍ଗୀନ ଉନ୍ନତି ପାଇଁ ଉଦ୍ୟମ ଜାରି ରଖିଛନ୍ତି । ସରକାରୀ ସ୍ତରରେ ଏହି ପୀଠକୁ ଏକ ପର୍ଯ୍ୟଟନସ୍ଥଳୀର ମାନ୍ୟତା ପ୍ରଦାନ କରାଯାଇଛି । ଏହି ପୀଠଟି ପୁରୀ, କୋଣାର୍କ ଓ ଭୁବନେଶ୍ୱର ସ୍ୱର୍ଣ୍ଣ ତ୍ରିଭୁଜ ଶକ୍ତି ମଣ୍ଡଳ ମଧ୍ୟରେ ଅବସ୍ଥିତ । ଏହି ସ୍ୱର୍ଣ୍ଣ ତ୍ରିଭୁଜ ମଣ୍ଡଳୀ ପୀଠକୁ ପୃଥିବୀର ବିଭିନ୍ନ ପ୍ରାନ୍ତରୁ ବାର୍ଷିକ ହଜାର ହଜାର ପର୍ଯ୍ୟଟକ ଓ ଭକ୍ତମାନେ ଭ୍ରମଣରେ ଆସିଥାନ୍ତି । ଏହି ପୀଠରେ ଲୁକ୍କାୟିତ ହୋଇ ରହିଥିବା ସୌନ୍ଦର୍ଯ୍ୟ ମାଧୁରୀ, ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ପରିବେଶ ଇତ୍ୟାଦିକୁ ଆଧୁନିକ ପ୍ରଣାଳୀର ରୂପ ଦେଲେ ନିଶ୍ଚୟ ଏହି ପୀଠ ପ୍ରତି ପର୍ଯ୍ୟଟକ ଆକୃଷ୍ଟ ହେବେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଏହି ପୀଠକୁ ଭାରତୀୟ ସ୍ତରରେ ସୁବିଦିତ କରାଇବା ପାଇଁ ସ୍ଥାନୀୟ ବାସିନ୍ଦା ତଥା ଯୁବପିଢ଼ିମାନଙ୍କର ପ୍ରଗାଢ଼ ଇଚ୍ଛାଶକ୍ତି ଓ ଉଦ୍ୟମ ଏକାନ୍ତ ଆବଶ୍ୟକ । ସର୍ବୋପରି ଏହି ପୀଠର ମହିମା ଓ ଗୁଣ ଗାରିମାକୁ ଲୋକଲୋଚନକୁ ଆଣିବା ପାଇଁ ପ୍ରଚାର ଓ ପ୍ରସାର ଜରୁରୀ ଅଟେ । ଏହି ପୀଠର ସର୍ବାଙ୍ଗୀନ ଉନ୍ନତି କରିବା ଓ ଏହି ପୀଠର ନାମକୁ ସୁବିସ୍ତୃତ କରିବା ପାଇଁ ୨୦୦୭ ମସିହାରୁ ନୃତ୍ୟ ପ୍ରତିଭା ନାମକ ଭୁବନେଶ୍ୱରର ଏକ ଅନୁଷ୍ଠାନ ରାଜ୍ୟ ସରକାରଙ୍କର ପର୍ଯ୍ୟଟନ ବିଭାଗ, ଜିଲ୍ଲାସ୍ତରୀୟ ବାଲିଅନ୍ତା ପଞ୍ଚାୟତ ସମିତି ଓ ସ୍ଥାନୀୟ ଯୁବକମାନଙ୍କ ଉଦ୍ୟମରେ ଚଉଷଠି ଯୋଗିନୀ ମହୋତ୍ସବ ପାଳିତ ହୋଇ ଆସୁଅଛି । ସେହି ବର୍ଷଠାରୁ ପ୍ରତିବର୍ଷ ଡିସେମ୍ବର ମାସରେ ଏହି ମହୋତ୍ସବ ପାଳନ ହୋଇ ଆଜି ସପ୍ତମ ମହୋତ୍ସବରେ ଉପନୀତ ହୋଇ ପାରିଛି । ଏହି ଉତ୍ସବ ମା' ଯୋଗିନୀଙ୍କ ପୀଠରେ ଦୀର୍ଘ ତିନି ଦିନ ଧରି ମହାସମାରୋହରେ ଓ ଆଲୋକ ସଜାସଜି ହୋଇ ନୃତ୍ୟ ଓ ନାଚ ପରିବେଷଣ ହୋଇଥାଏ । ଓଡ଼ିଶାର ସୁନାମଧନ୍ୟ ନୃତ୍ୟଶିଳ୍ପୀମାନଙ୍କର ନିପୁଣ ନୃତ୍ୟ କଳା ପରିବେଷଣ ମାଧ୍ୟମରେ ପୁରସ୍କାର ପ୍ରଦାନ କରାଯାଇଥାଏ । ପ୍ରତିଦିନ ଓଡ଼ିଶାର ମନ୍ତ୍ରୀ, ବିଧାୟକ ଓ ଶିକ୍ଷାବିତ୍ ଓ କଳାଶିଳ୍ପୀରେ ନିପୁଣତା ଥିବା ଭଦ୍ରବ୍ୟକ୍ତିମାନେ ଅତିଥି ରୂପେ ଯୋଗଦେଇ ପୁରସ୍କାର ବିତରଣ କରିଥାନ୍ତି । ଆଉ ମଧ ପ୍ରତିବର୍ଷ ଏକ ସ୍ମରଣିକା ଉନ୍ମୋଚନ ହୋଇଥାଏ । ଏହାଫଳରେ ଦୈନିକ ପତ୍ର ପତ୍ରିକା ଓ ଗଣମାଧ୍ୟମ ମାଧ୍ୟମରେ ଏହି ପୀଠର ପ୍ରସାର ଓ ପ୍ରଚାର ହୋଇ ପାରୁଛି । ସର୍ବୋପରି ଏହି ଉତ୍ସବର ଶେଷ ଦିବସରେ ନିପୁଣ ପାରଦର୍ଶିତା ଲାଭ କରିଥିବା ନୃତ୍ୟଶିଳ୍ପୀମାନଙ୍କୁ ଚଉଷଠି ଯୋଗିନୀ ନୃତ୍ୟକଳା ମହୋତ୍ସବ ଉପାଧିରେ ସମ୍ମାନିତ କରାଯାଇଥାଏ । ପ୍ରତ୍ନତତ୍ତ୍ୱ ବିଭାଗ ଏହାକୁ ନବୀକରଣ କରାଇବା ପାଇଁ ଗମନାଗମନ ଠାରୁ ନୂତନ ଗୃହ ନିର୍ମାଣ କାମ ଜାରି ରଖିଛନ୍ତି ।

ଏହି ପୀଠର ପବିତ୍ରତା ଅତୀବ ମହାନ ଓ ଗରିୟସୀ । କାରଣ ଏହି ପୀଠ ସର୍ବଧର୍ମର ଯୋଗ, ତନ୍ତ୍ର ଓ ସଂସ୍କୃତିର କେନ୍ଦ୍ରସ୍ଥଳୀ ରୂପେ ଶାସ୍ତ୍ରାନୁମୋଦିତ । ତେଣୁ ଏହି ପୀଠ ଶ୍ରୀଜଗନ୍ନାଥଙ୍କ ସଂସ୍କୃତିର କର୍ମଶାଳା ଅର୍ଥାତ୍ ମୂଳ ସାଧନା ପୀଠ ।

ପ୍ଲଟ୍ ନମ୍ବର–୭୮୫/୧୨୪୦
ଦୁର୍ଗାମାଧବ ନଗର, ସାମପୁର,
ଭୁବନେଶ୍ୱର



# ଶାକ୍ତପୀଠର ଉନ୍ମେଷ ଓ ବିକାଶ

**ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର**

ଶାକ୍ତପୀଠର ଉନ୍ମେଷ ସମ୍ପର୍କରେ ଏକ ବହୁ ଚର୍ଚ୍ଚିତ କିମ୍ବଦନ୍ତୀ ପୁରାଣାଦି ବିଭିନ୍ନ ଧର୍ମ ଗ୍ରନ୍ଥରେ ପରିଦୃଷ୍ଟ ହୋଇଥାଏ । ଉକ୍ତ କିମ୍ବଦନ୍ତୀରେ କୁହାଯାଇଛି– 'ଦକ୍ଷ ପ୍ରଜାପତି ଏକ ମହାଯଜ୍ଞର ଆୟୋଜନ କରି ସେଥିରେ ସମସ୍ତ ଦେବତା, ମୁନି, ଋଷି ଓ ରାଜା ମହାରାଜାମାନଙ୍କୁ ନିମନ୍ତ୍ରଣ କରିଥିଲେ ମଧ୍ୟ ନିଜର କନ୍ୟା ସତୀ ଓ ଜାମାତା ଦେବଦେବ ମହାଦେବଙ୍କୁ ଆମନ୍ତ୍ରଣ କରି ନଥିଲେ । ପିତାଙ୍କର ଏଭଳି କାର୍ଯ୍ୟ ଦ୍ୱାରା ଦୁଃଖରେ ମ୍ରିୟମାଣା ସତୀ ବିନା ନିମନ୍ତ୍ରଣରେ ଉକ୍ତ ଯଜ୍ଞସ୍ଥଳରେ ପହଞ୍ଚି ଥିଲେ ଓ ଶେଷରେ ପିତାଙ୍କ ଦ୍ୱାରା ଅପମାନିତା ହେବା ସହ ନିଜ ପତିଙ୍କ ନିନ୍ଦା ଶ୍ରବଣ କରି ଉକ୍ତ ଯଜ୍ଞାନଳରେ ଆତ୍ମବିସର୍ଜନ କରିବା ନିମିତ୍ତ ବାଧ୍ୟ ହୋଇଥିଲେ । ସତୀଙ୍କର ଏହି ଦାରୁଣ ବିୟୋଗ କଥା ଦେବଦେବ ମହାଦେବ ନିଜ ଅନୁଚରଙ୍କଠାରୁ ଶ୍ରବଣ କରି କ୍ରୋଧାଗ୍ନିରେ ପ୍ରଜ୍ୱଳିତ ହେବା ସହ ଅନୁଚରମାନଙ୍କୁ ସଙ୍ଗରେ ନେଇ ଯଜ୍ଞ ସ୍ଥଳରେ ପ୍ରବେଶ କରି ଯଜ୍ଞରେ ବିଘ୍ନ ସୃଷ୍ଟି କରିଥିଲେ । ଏହା ପରେ ସତୀଙ୍କର ଅର୍ଦ୍ଧଦଗ୍ଧ ଶରୀରକୁ ଧାରଣ କରି ସେ ପ୍ରଳୟକାଳୀନ ତାଣ୍ଡବ ନୃତ୍ୟାରମ୍ଭ କରିଥିଲେ । ଶିବଙ୍କର ଏଭଳି ଉଦ୍ଦଣ୍ଡ ନୃତ୍ୟ ଦେଖି ଦେବତାମାନେ ପ୍ରମାଦ ଗଣିବା ସହିତ ସତୀଙ୍କ ପ୍ରତି ଶିବଙ୍କର ଥିବା ଆସକ୍ତି ମୋଚନ ନିମିତ୍ତ ବୈକୁଣ୍ଠ ନିବାସୀ ବିଷ୍ଣୁଙ୍କୁ ଆକୁଳ ନିବେଦନ ଜଣାଇଥିଲେ । ଦେବତାମାନଙ୍କ ଆକୁଳ ନିବେଦନ କ୍ରମେ ସ୍ୱୟଂ ବିଷ୍ଣୁ ନିଜର ଚକ୍ରରାଜ ସୁଦର୍ଶନଙ୍କ ଦ୍ୱାରା ସତୀଙ୍କ ଅଙ୍ଗକୁ ଖଣ୍ଡ ଖଣ୍ଡ କରି ଦେଇଥିଲେ । ସତୀଙ୍କ ଶରୀରର ଖଣ୍ଡିତାଂଶ ଯେଉଁ ଯେଉଁ ସ୍ଥାନରେ ପତିତ ହୋଇଥିଲା, ତାହା ପରବର୍ତ୍ତୀ ସମୟରେ ଗୋଟିଏ ଗୋଟିଏ ଶାକ୍ତପୀଠ ରୂପେ ପରିଣତ ହେଲା । କାଳକ୍ରମେ ଉକ୍ତ ଶାକ୍ତପୀଠଗୁଡ଼ିକ ଦେବୀଙ୍କର ମୁଖ୍ୟ ଆସ୍ଥାନରେ ପରିଣତ ହେବା ସହିତ ନିଜର ସ୍ୱାମୀ ଶିବଙ୍କର ଗୋଟିଏ ରୂପ ଭୈରବ ସହ ମଧ୍ୟ ପୂଜା ପାଇଲେ ।

ଏହି ଉପାଖ୍ୟାନଟିରେ ବୌଦ୍ଧ ଧର୍ମର ପ୍ରବର୍ତ୍ତକ ଗୌତମ ବୁଦ୍ଧଙ୍କ ମହାନିର୍ବାଣ ପରେ ତାଙ୍କର ନଖ, କେଶ, ଦନ୍ତ ଓ ଅସ୍ଥି ଆଦି ଶରୀରର ଅବଶେଷାଂଶକୁ ବିଭିନ୍ନ ସ୍ଥାନରେ ସ୍ତୂପ ନିର୍ମାଣ କରି ତନ୍ମଧ୍ୟରେ ରଖି ପୂଜା କରିବା ସହ ସାମଞ୍ଜସ୍ୟ ଥିବା ବିଷୟରେ କେତେକ ଆଲୋଚକ ମତବ୍ୟକ୍ତ କରିଥାନ୍ତି । ଏପରିକି ଇଜିପ୍ଟର ଓରିସିସ୍ କିମ୍ବଦନ୍ତୀ ସହିତ ଏହାର ସାମଞ୍ଜସ୍ୟକୁ ତୁଳନାତ୍ମକ ଦୃଷ୍ଟିରୁ ମଧ୍ୟ ବିଚାର କରାଯାଇପାରେ । ଅନ୍ୟ କେତେକଙ୍କ ମତରେ କୌଣସି ଦେବତା ବା ତାଙ୍କର ମାନବ ଶରୀରକୁ ଟିକିଟିକି କରି କାଟି ଜମିରେ ପକାଇଲେ ତାହା ଜମିର ଉର୍ବରତା ବୃଦ୍ଧି କରୁଥିବା ଆଦିମ ମାନବର ପ୍ରାଚୀନ ଧାରଣାରୁ ଦେବୀଙ୍କ ଶରୀରର ଖଣ୍ଡିତାଂଶ ଦେଶର ବିଭିନ୍ନ ସ୍ଥାନରେ ପଡ଼ିବାର ଚିନ୍ତାଧାରା ସୃଷ୍ଟି ହେବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ ।

ସତୀଙ୍କ ଶରୀରାଂଶରୁ ସୃଷ୍ଟ ଶାକ୍ତପୀଠର ସଂଖ୍ୟା ବିଭିନ୍ନ ଗ୍ରନ୍ଥରେ ଭିନ୍ନ ଭିନ୍ନ ଭାବରେ ଥିବାର ପରିଲକ୍ଷିତ ହୋଇଥାଏ । 'ମହାଭାରତ'ର ବନ ପର୍ବରେ ଥିବା ତୀର୍ଥଯାତ୍ରା ପ୍ରସଙ୍ଗ (୩/୮୨–୮୪, ୯୩–୯୫, ଓ ୧୫୧–୧୫୩)ରେ ତିନୋଟି ଶାକ୍ତପୀଠର ସୂଚନା ମିଳେ । ଏହି ତିନୋଟି ଶାକ୍ତପୀଠ ହେଉଛି ଯୋନି କୁଣ୍ଡ, ସ୍ତନ କୁଣ୍ଡ ଓ ଗୌରୀ ଶିଖର । ପଞ୍ଜାବର ପଞ୍ଚନଦ ନିକଟସ୍ଥ ଭୀମସ୍ଥାନକୁ ଯୋନିକୁଣ୍ଡ ରୂପେ ଗ୍ରହଣ କରାଯିବା ବେଳେ ସ୍ତନକୁଣ୍ଡ ରୂପେ ଉଦ୍ୟତ ପର୍ବତର ଶିଖର ଦେଶକୁ ଗ୍ରହଣ କରାଯାଏ । କେତେକଙ୍କ ମତରେ ସ୍ତନ କୁଣ୍ଡର ଶିଖର ଦେଶକୁ ଗୌରୀ ଶିଖର କୁହାଯିବା ବେଳେ ଅନ୍ୟ କେତେକଙ୍କ ମତରେ ଏହା ହିମାଳୟ ଶିଖର ବା ଗୟା ନିକଟରେ ଥିବା ଏକ ସ୍ଥାନ ।

'କାଳିକା ପୁରାଣ (୬୪/୪୩–୪୫)'ରେ ଓଡ୍ରାଖ୍ୟ, ଜାଳଶୈଳକ, ପୂର୍ଣ୍ଣପୀଠ ଓ କାମରୂପ ପ୍ରଭୃତି ଚାରିଗୋଟି ପୀଠ





କଥା କୁହାଯିବା ବେଳେ ଏହାର ୧୮ଶ ଅଧ୍ୟାୟର ୪୨ରୁ ୫୧ ଶ୍ଳୋକରେ ଦେବୀକୂଟ, ଉଡ୍ଡୀୟାନ, କାମଗିରି, କାମରୂପ, ଜାଳନ୍ଧର, ପୂର୍ଣ୍ଣଗିରି ଓ କାମରୂପାଦି ସାତୋଟି ଶାକ୍ତପୀଠର ବର୍ଣ୍ଣନା କରାଯାଇଛି । ଉକ୍ତ ପୀଠମାନଙ୍କର ଶକ୍ତି ରୂପେ ଯଥାକ୍ରମେ ମହାଭାଗା, କାତ୍ୟାୟନୀ, କାମାକ୍ଷା, ଦିକ୍କାରବାସିନୀ, ଚଣ୍ଡୀ, ପୂର୍ଣ୍ଣେଶ୍ୱରୀ ଓ ଲଳିତକାନ୍ତା ବିରାଜମାନ । ଏହି ପୀଠମାନଙ୍କ ମଧ୍ୟରେ ଓଡ୍ରାଖ୍ୟ ବା ଉଡ୍ଡୀୟାନ ପ୍ରଥମପୀଠ ରୂପେ ସ୍ୱୀକୃତ ।

ପୁରାଣ ଗ୍ରନ୍ଥକୁ ବାଦ୍ ଦେଲେ କେତେକ ତନ୍ତ୍ର ଗ୍ରନ୍ଥରେ ଶାକ୍ତ ପୀଠ ସମ୍ପର୍କରେ ସୂଚନା ଉପଲବ୍ଧ ହୋଇଥାଏ । ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଙ୍କ ଦ୍ୱାରା ନେପାଳ ଦରବାର ପାଠାଗାରରୁ ସଂଗୃହୀତ ସହଜଯାନର 'ଚତୁଷ୍ପୀଠ ତନ୍ତ୍ର' ନାମକ ଗ୍ରନ୍ଥରେ ଥିବା ଆତ୍ମପୀଠ, ପରାପୀଠ, ଯୋଗପୀଠ, ଗୁହ୍ୟପୀଠ ଚିନ୍ତାଧାରାରୁ ପରବର୍ତ୍ତୀ ସମୟରେ ଏହି ଚାରିପୀଠର କଳ୍ପନାକୁ କେତେକ ଆଲୋଚକ ସ୍ୱୀକାର କରନ୍ତି । ସେମାନଙ୍କ ମତରେ ବୌଦ୍ଧ ଧର୍ମରେ ଆତ୍ମିକ ଆନନ୍ଦର ପ୍ରାପ୍ତି ନିମିତ୍ତ ଦୈହିକ ସୁଖର ଊର୍ଦ୍ଧ୍ୱକୁ ଉଠିବା ନିମନ୍ତେ ଏହା ହେଉଛି ଚାରୋଟି ସୋପାନ ମାତ୍ର ।

ସପ୍ତମ ଶତାବ୍ଦୀର ପୂର୍ବରୁ ବୌଦ୍ଧ ଧର୍ମର ପଦ୍ମବଜ୍ରଙ୍କ ଦ୍ୱାରା ରଚିତ 'ହେବଜ୍ର ତନ୍ତ୍ର'ର ୭ମ ପଟଳରେ ଯେଉଁ ଚାରିଗୋଟି ପୀଠର ଉଲ୍ଲେଖ ଦେଖିବାକୁ ମିଳେ ତାହା ହେଉଛି–

ପୀଠଂ ଜାଳନ୍ଧରଂ ଖ୍ୟାତଂ ଓଡ୍ଡିୟାନ ତଥୈବ ଚ,
ପୀଠଂ ପୂର୍ଣ୍ଣଗିରିଂ କାମରୂପନ୍ତଥୈବ ଚ ।

ଅର୍ଥାତ୍ ଜାଳନ୍ଧର, ଓଡ୍ଡିୟାନ, ପୂର୍ଣ୍ଣଗିରି ଓ କାମରୂପ ପୀଠ ।

କିନ୍ତୁ 'ସାଧନମାଳା' ନାମକ ବୌଦ୍ଧ ଗ୍ରନ୍ଥରେ ଚାରିପୀଠ ଭାବରେ ଓଡ଼ିୟାନ ବା ଉଡ୍ଡୀୟାନ, ପୂର୍ଣ୍ଣଗିରି, କାମରୂପ ବା କାମାକ୍ଷା ଓ ଶ୍ରୀହଟ୍ଟ ବା ଶିରିହଟ୍ଟର ନାମ ଉପଲବ୍ଧ ହୁଏ । 'ସମୟାଚାର ତନ୍ତ୍ର'ରେ ଏହି ଚାରିପୀଠର କ୍ରମକୁ ଯଥାକ୍ରମେ ପୂର୍ଣ୍ଣଗିରି, ଉଡ୍ଡୀୟାନ, ଜାଳନ୍ଧର ଓ କାମରୂପ ବୋଲି ଦର୍ଶାଯାଇଛି । 'ରୁଦ୍ରଯାମଳ' ଗ୍ରନ୍ଥରେ ଅଙ୍ଗନ୍ୟାସ ସମୟରେ ଯେଉଁ ୧୦ଟି ପୀଠର ଅବତାରଣା କରାଯାଇଛି, ତାହା ହେଉଛି କାମରୂପ, ଜାଳନ୍ଧର, ପୂର୍ଣ୍ଣଗିରି, ଉଡ୍ଡୀୟାନ, ବାରାଣସୀ, ଜ୍ୱଳନ୍ତୀ, ମାୟାବତୀ, ମଧୁପୁରୀ, ଅଯୋଧ୍ୟା ଓ କାଞ୍ଚି ।

ଏତଦ୍‌ବ୍ୟତୀତ ଉକ୍ତ ଗ୍ରନ୍ଥରେ ମହାବିଦ୍ୟା ପୂଜା ପାଉଥିବା ୪୨ଗୋଟି ଶାକ୍ତପୀଠ ମଧ୍ୟରେ ମଧୁପୁରୀ, ମାୟାବତୀ, ବାରାଣସୀ, ଜ୍ୱାଳାମୁଖୀ, ଜ୍ୱଳନ୍ତ, ପୂର୍ଣ୍ଣଗିରି, କୁରୁକ୍ଷେତ୍ର, ଉଡ୍ଡୀୟାନ, କମଳା, ହରିଦ୍ୱାର, ବଦରୀ, ବ୍ୟାସ, ନାରଦ, ବଡ଼ବାନଳ, ହିଙ୍ଗୁଳାଦ, ଲଙ୍କା, ସାରଦା, ରତି, ଲିଙ୍ଗ, କଳା, ଦ୍ୱାରକା, କପାଳ, ହରି, ବରଦା, କାଳୀ, ତାରା, ଉଗ୍ରତାରା, ମହୋଗ୍ରା, ନୀଳସରସ୍ୱତୀ, ଜରା, ଗଗନା, ଖେଚରୀ, ତାରିଣୀ, କର୍ତ୍ତ୍ରୀ, ଦେବୀ, ରାଜରାଜେଶ୍ୱରୀ, ଷୋଡ଼ଶୀ, ସହସ୍ରଦଳରେ ସହସ୍ରପୀଠ, ଏକଜଟା, କର୍ତ୍ତ୍ରିତୀର ପ୍ରଭୃତିର ନାମୋଲ୍ଲେଖ କରାଯାଇଛି ।

କିନ୍ତୁ 'ଜ୍ଞାନାର୍ଣ୍ଣବ ତନ୍ତ୍ର' ଗ୍ରନ୍ଥର ଗୋଟିଏ ସ୍ଥାନରେ କାମରୂପ, ମଳୟ, କୌଲଗିରି, କୁଳାନ୍ତକ, ଚୌହାର, ଜାଳନ୍ଧର, ଉଡ୍ଡୀୟାନ, ଦେବକୂଟାଦି ୮ଟି ଶାକ୍ତପୀଠ କ୍ରମର ସୂଚନା ଦେବା ବେଳେ ଚତୁର୍ଦ୍ଦଶ ପଟଳରେ କାମରୂପ, ବାରାଣସୀ, ନେପାଳ, ପୌଣ୍ଡ୍ରବର୍ଦ୍ଧନ, କାଶ୍ମୀର, କାନ୍ୟକୁବ୍ଜ, ପୁରସ୍ଥିତା ବା ପୁରସ୍ଥିରା, ଚରସ୍ଥିତା ବା ଚନ୍ଦ୍ରସ୍ଥିରା, ପୂର୍ଣ୍ଣ ଶୈଳ, ଅର୍ବୁଦ, ଅମ୍ରାତକେଶ୍ୱର, ଏକାମ୍ର, ତ୍ରିସ୍ରୋତ, କାମକୋଟ୍ଟ, କୈଳାସ, ଭୃଗୁ, କେଦାର, ଚନ୍ଦ୍ରପୁରା, ଶ୍ରୀପୀଠ ବା ଶ୍ରୀହଟ୍ଟ, ଓଁକାର, ଜାଳନ୍ଧର, ମାଲଓ୍ୱାର, କୁଳାନ୍ତ ବା କୁପାନ୍ତ, ଦେବକୋଟ୍ଟ, ଗୋକର୍ଣ୍ଣ, ମାରୁତେଶ୍ୱର, ଅଟ୍ଟହସ, ବିରଜା, ରାଜଗୃହ, କୋଲ୍ଲଗିରି ବା କୌଳଗିରି, ଏଲାପୁର ବା ଏଲୋରା, କାଳେଶ୍ୱର ବା କାମେଶ୍ୱର, ଜୟନ୍ତୀକା ବା ଜୟନ୍ତୀ, ଉଜ୍ଜୟିନୀ, କ୍ଷିରିକା ବା କ୍ଷୀରଗ୍ରାମ, ହସ୍ତିନାପୁର, ଉଡ୍ଡିଶା, ପ୍ରୟାଗ, ବିନ୍ଧ୍ୟା, ମାୟାପୁର, ଜଳେଶ୍ୱର (ଓଡ଼ିଶା), ମାଳୟ, ଶ୍ରୀଶୈଳ, ମେରୁଗିରି, ମହେନ୍ଦ୍ର, ବାମନ, ହିରଣ୍ୟପୁର, ମହାଲକ୍ଷ୍ମୀ, ଉଡ୍ଡୀୟାନ ଓ ଛାୟାଛତ୍ରପୁର ପ୍ରଭୃତି ୫୦ଟି ପୀଠର ନାମୋଲ୍ଲେଖ କରାଯାଇଅଛି । ଉକ୍ତ ପୀଠର ଏକ ତାଲିକା ରୟାଲ ଏସିଆଟିକ୍ ସୋସାଇଟିର ପାଠାଗାରରେ ଥିବା 'ବୃହନ୍ନୀଳ ତନ୍ତ୍ର' ପୋଥିରେ ଓ ବ୍ରହ୍ମାନନ୍ଦଙ୍କ 'ଶାକ୍ତାନନ୍ଦ ତରଙ୍ଗିଣୀ'ରେ ମଧ୍ୟ ଉଦ୍ଧାର କରାଯାଇ ଥିବାର ଦେଖିବାକୁ ମିଳେ ।

'କୁଳାର୍ଣ୍ଣବ ତନ୍ତ୍ର'ରେ ଅଷ୍ଟାଦଶ ପୀଠ ମଧ୍ୟରେ ଉଡ୍ଡୀୟାନ, ଦେବୀକୋଟ୍ଟା, ହିଙ୍ଗୁଳା, କୋଟିମୁଦ୍ରା, ଜାଳନ୍ଧର, ବାରାଣସୀ, ଅନ୍ତର୍ବେଦୀ, ପ୍ରୟାଗ, ମିଥିଳା, ମାଗଧ, ମେଖଳା, ଅଙ୍ଗ, ବଙ୍ଗ, କଳିଙ୍ଗ, ସିଂହଳ, ସ୍ତ୍ରୀରାଜ୍ୟ, ରାଧା ଓ ଗୌଡ଼ ଅନ୍ୟତମ । ବଙ୍ଗଳାର 'ତାରାରହସ୍ୟ ବୃତ୍ତିକା'ର ଲେଖକ ଆଗମାଚାର୍ଯ୍ୟ (ଖ୍ରୀ.୧୬୬୧) ଅଷ୍ଟାଦଶ ପୀଠର ଯେଉଁ ବିବରଣୀଟିଏ ଦେଇଛନ୍ତି, ସେଥିରେ ଥିବା କେତେକ ନାମ ପ୍ରମାଦପୂର୍ଣ୍ଣ ତଥା ଆଞ୍ଚଳିକ ପ୍ରୀତିର ନିଦର୍ଶନ ବୋଲି ଆଲୋଚକମାନେ ମତ ପ୍ରକାଶ କରିଛନ୍ତି । ପୁନଶ୍ଚ ୧୮୦୬ ମସିହାରେ ବୈତରଣୀ କୂଳସ୍ଥ ଜହାଜ ପୁର (ଯାଜପୁର) ନିବାସୀ ଶମ୍ଭୁକର ନାମକ ଜନୈକ ଉତ୍କଳୀୟ ବ୍ରାହ୍ମଣ ଅଷ୍ଟାଦଶ ପୀଠର ଏକ ତାଲିକା ଦେବାକୁ ଯାଇ ଲେଖିଛନ୍ତି–

ମହାକାଲ୍ୟୈ ନମଃ । ଅଷ୍ଟାଦଶ ପୀଠାନି ଲିଖ୍ୟନ୍ତେ ।
ଲଙ୍କାୟାଂ ଶଙ୍କରୀ ଦେବୀ କାମାକ୍ଷାଂ କାଞ୍ଚିକାପୁରୀ ।
ପ୍ରଦ୍ୟୁମ୍ନେ ସିଂଗ(ହ)ଳ ଦ୍ୱୀପେ ଚାମୁଣ୍ଡା କ୍ରୌଞ୍ଚପତ୍ତନେ ॥
ଆଲାପୁରେ ଯୁଗଳା ଦେବୀ ଶ୍ରୀଶୈଳେ ଭ୍ରମରାମ୍ବିକା ।
ଉଜ୍ଜୟିନ୍ୟାଂ ମହାକାଳୀ ମାଙ୍କରେ ଏକବୀରକା ॥
ଉତ୍କଳେ ବିରଜା ଦେବୀ ମାଣିକ୍ୟାଂ ଚକ୍ରକୋଟିଲୀ ।
ଦ୍ୱୟ କ୍ଷେତ୍ରେ କାମରୂପୀ ପ୍ରୟାଗେ ମାଧବେଶ୍ୱରୀ ॥
ଜ୍ୱାଳାୟାଂ ବୈଷ୍ଣବୀ ଦେବୀ ଗୟା ମାଙ୍ଗଲ୍ୟକୋଟିକା ।
ବାରାଣସ୍ୟାଂ ବିଶାଳାକ୍ଷୀଂ କାଶ୍ମୀରେ ତୁ ସରସ୍ୱତୀ ॥
ଅଷ୍ଟାଦଶାନି ପୀଠାନି ଯୋଗିନାଂ ଧ୍ୟାନ ନିର୍ମିତମ୍ ।
ତେଷାଂ ପଠନ ମାତ୍ରେଣ ଜ୍ୱରଦାରିଘ୍ନନାଶନମ୍ ॥

ଏତଦ୍‌ବ୍ୟତୀତ 'କୁବ୍ଜିକା ତନ୍ତ୍ର'ର ୭ମ ପଟଳରେ ମାୟାବତୀ, ମଧୁପୁରୀ, କାଶୀ, ଗୋରକ୍ଷ କାରିଣୀ, ହିଙ୍ଗୁଳା, ଜାଳନ୍ଧର, ଜ୍ୱାଳାମୁଖୀ, ନାଗର ସମ୍ଭବ, ରାମଗିରି, ଗୋଦାବରୀ, ନେପାଳ, କର୍ଣ୍ଣସୂତ୍ର, ଅଯୋଧ୍ୟା, ମହାକର୍ଣ୍ଣ, କୁରୁକ୍ଷେତ୍ର, ସିଂହନାଦ ବା ସିଂହଳ, ମଣିପୁର, ହୃଷୀକେଶ, ପ୍ରୟାଗ, ବଦ୍ରୀ, ଅମ୍ବିକା, ବର୍ଦ୍ଧମାନ ବା ଅର୍ଦ୍ଧନାଳକ, ତ୍ରିବେଣୀ, ଗଙ୍ଗାସାଗର ସଙ୍ଗମ, ନାରିକେଳ, ବିରଜା, ଉଡ୍ଡୀୟାନ, କମଳା, ବିମଳା, ମାହିଷ୍ମତୀ, ବାରାହୀ, ତ୍ରିପୁରା, ବାଗମତୀ, ନୀଳବାହିନୀ, ବିନ୍ଧ୍ୟଗିରି, କାମରୂପା, ଘଣ୍ଟାକର୍ଣ୍ଣ, ହୟଗ୍ରୀବ ବା ଅକ୍ଷଗ୍ରୀବ, ମାଧବ, କ୍ଷୀରଗ୍ରାମ ଓ ବୈଦ୍ୟନାଥ ପ୍ରଭୃତି ୪୨ ଗୋଟି ଶାକ୍ତପୀଠକୁ ଗ୍ରହଣ କରି ଦର୍ଶାଇଛନ୍ତି ।

'ତନ୍ତ୍ର ଚୂଡ଼ାମଣି' ଓ 'ମହାପୀଠ ନିରୂପଣ'ରେ ୫୧ଟି ଶାକ୍ତ ପୀଠର ସୂଚନା ପରିଲକ୍ଷିତ ହୋଇଥାଏ । ମହାପୀଠ ନିରୂପଣରେ ଥିବା ୫୧ଟି ପୀଠ ମଧ୍ୟରେ ହିଙ୍ଗୁଳା ବା ହିଙ୍ଗୁଲାତ, କରବୀର, ସୁଗନ୍ଧା, କାଶ୍ମୀର, ଜ୍ୱାଳାମୁଖୀ, ଜାଳନ୍ଧର, ବୈଦ୍ୟନାଥ, ନେପାଳ, ମାନସ, ଉତ୍କଳର ବିରଜା କ୍ଷେତ୍ର, ଗଣ୍ଡକୀ, ବହୁଳା, ଉଜ୍ଜୟିନୀ, ଚଉଳ ବା ଚନ୍ଦ୍ରଶେଖର, ତ୍ରିପୁରା, ତ୍ରିସ୍ରୋତା, କାମଗିରି, ଯୁଗାଦୟା, କାଳୀପୀଠ, ପ୍ରୟାଗ, ଜୟନ୍ତୀ, କିରୀଟାକୋଣା, ବାରାଣସୀ, କନ୍ୟାଶ୍ରମା, କୁରୁକ୍ଷେତ୍ର, ମଣିଭେଦିକା, ଶ୍ରୀଶୈଳ, କାଞ୍ଚି, ନର୍ମଦା, ରାମଗିରି, ବୃନ୍ଦାବନ, ସୂଚୀ, ପଞ୍ଚସାଗର, କରତୋୟା ତଟ, ଶ୍ରୀପର୍ବତ, ବିଭାସ, ପ୍ରଭାସ, ଭୈରବ ପର୍ବତ, ଜନସ୍ଥାନ, ଗୋଦାବରୀ ତୀର, ରତ୍ନାବଳୀ ବା ରତ୍ନବେଦୀ, ମିଥିଳା, ନଳାହାଟୀ, କାଳୀଘାଟ ବା କାଳୀପୀଠ, ବକ୍ରେଶ୍ୱର, ଯଶୋରା, ଅଟ୍ଟହାସ, ନନ୍ଦୀପୁର, ଲଙ୍କା ଓ ବିରାଟ ଅନ୍ୟତମ । 'ଶାରଦା ତିଳକ' ଗ୍ରନ୍ଥର ପ୍ରଥମ ପଟଳରେ ମଧ୍ୟ ୬୪ଟି ଶାକ୍ତ ପୀଠର ସୂଚନା ଦେଖିବାକୁ ମିଳିଥାଏ ।

ପରବର୍ତ୍ତୀ ସମୟରେ ଶାକ୍ତଧର୍ମର ସାମ୍ପ୍ରଦାୟିକ ଉପାସକମାନେ ନିଜ ନିଜର ଇଷ୍ଟଦେବୀଙ୍କୁ ନେଇ ଏହି ପୀଠର ସଂଖ୍ୟାକୁ କ୍ରମଶଃ ୧୦୮ ପର୍ଯ୍ୟନ୍ତ ବୃଦ୍ଧି କରାଇଥିବାର ପରିଲକ୍ଷିତ ହୋଇଥାଏ । 'ମତ୍ସ୍ୟ ପୁରାଣର ୧୩ଶ ଅଧ୍ୟାୟ'ରେ ପ୍ରଥମେ ଦେବୀଙ୍କର ୧୦୮ ନାମ ଉପଲବ୍ଧ ହେବା ସହ 'ବୃହନ୍ନୀଳ ତନ୍ତ୍ର'ର ୫ମ ପଟଳ ଓ 'ପ୍ରାଣତୋଷିଣୀ ତନ୍ତ୍ର'ରେ ମଧ୍ୟ ୧୦୮ଟି ଶାକ୍ତପୀଠର ସୂଚନା ଦେଖିବାକୁ ମିଳିଥାଏ ।

ପରିଶେଷରେ ଏତିକି କୁହାଯାଇପାରେ ଯେ ଦକ୍ଷଯଜ୍ଞ ପ୍ରସଙ୍ଗ ଓ ସତୀଙ୍କ ଆତ୍ମ ବିସର୍ଜନ ପ୍ରସଙ୍ଗକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ସତୀଙ୍କ ଶରୀରାଂଶରୁ ସୃଷ୍ଟ ବିଭିନ୍ନ ପୀଠର କଳ୍ପନା କରାଯାଇ ସମୟାନୁକ୍ରମେ ସାମ୍ପ୍ରଦାୟିକ ଚେତନା ମଧ୍ୟରେ ବିକାଶ ଲାଭ କରିବା ସହିତ ଏହାର ସଂଖ୍ୟା କ୍ରମଶଃ ବୃଦ୍ଧିଲାଭ କରିଅଛି । ସାଧାରଣତଃ ପୀଠ କହିଲେ ଜପ ବା ମନ୍ତ୍ରସିଦ୍ଧିର ସ୍ଥାନକୁ ବୁଝାଏ । ଅଭୀଷ୍ଟ ପରିପୂରଣ ନିମିତ୍ତ ନିର୍ଦ୍ଦିଷ୍ଟ ସ୍ଥାନରେ ସିଦ୍ଧି ଲାଭର ନିଶ୍ଚିତତା ଥିବା କଥା ବିଶ୍ୱାସ କରାଯାଏ । କିନ୍ତୁ ଏହି ସ୍ଥାନଟି ପୀଠ ରୂପେ ପରିଣତ ହେବା ପୂର୍ବରୁ କ'ଣ ଥିଲା ସେ ସମ୍ପର୍କରେ କେବଳ ଜନଶ୍ରୁତି ଉପରେ ନିର୍ଭରଶୀଳ ହେବାକୁ ପଡ଼ିଥାଏ । ଫଳରେ ପରବର୍ତ୍ତୀ ସମୟରେ ଏହି ସ୍ଥାନରେ ମନ୍ଦିର ନିର୍ମିତ ହେବା ସହ ଏହା ପୀଠ ରୂପେ ପରିଚିତ ହୋଇଥିବା କଥା ପୀଠର ସଂଖ୍ୟାବୃଦ୍ଧିରୁ ଅନୁମାନ କରାଯାଇପାରେ । କେବଳ ସେତିକି ନୁହେଁ ପୀଠର ନାମକରଣ ସହ କଳ୍ପନାବିଳାସର ପ୍ରାଚୁର୍ଯ୍ୟ ଏହାକୁ ପରିପୁଷ୍ଟ କରିଛି ବୋଲି କହିଲେ ସତ୍ୟର ଅପଳାପ ହେବ ନାହିଁ ।

ଘର କ୍ରମାଙ୍କ–୧୦୯, ଚନ୍ଦ୍ରପ୍ରଭା ସାହି–୨
ବ୍ରହ୍ମପୁର–୭୬୦୦୦୧, ଗଞ୍ଜାମ



# ପରମ୍ପରାଃ ଶକ୍ତି ସ୍ୱରୂପିଣୀ ମା' ଦୁର୍ଗା

**ଲକ୍ଷ୍ମୀଚରଣ ସାମନ୍ତରାୟ**

'ଯା' ଦେବୀ ସର୍ବଭୂତେଷୁ ଶକ୍ତିରୂପେଣ ସଂସ୍ଥିତା
ନମସ୍ତସୈ ନମସ୍ତସୈ ନମୋନମଃ ।'

'ଆଦିଶକ୍ତି' ହିଁ ଜନନୀ, ସେ ଶକ୍ତିମାତା । ସେହି ମା' ପରାପ୍ରରା । ଯିଏ ଗୋଟିଏ ସାର୍ବଜନୀନ ମାତୃ ହୃଦୟରେ ସମସ୍ତଙ୍କୁ ଧରି ରଖିଛନ୍ତି ଧରା ଧାରୟତୀ ଭାବରେ, ସେ ହିଁ ବ୍ରହ୍ମା, ରୁଦ୍ରାଣୀ, ମହାବୈଷ୍ଣବୀ, ମହାମାୟା, ଯୋଗମାୟା, ଜଗତଜନନୀ, ଜଗତ୍‌ପ୍ରସବିନୀ, ଜଗତ ମଙ୍ଗଳକାରିଣୀ । ସେ ହିଁ ଶୂନ୍ୟ ଓ ପରିପୂର୍ଣ୍ଣା, ମହାଶକ୍ତି, ମହାକାଳୀ, ମହାଦ୍ୟୁତି, ମହିମାନ୍ୱିତା ।

ମନ୍ତ୍ରଣାଂ ମାତୃକାଦେବୀ ଶବ୍ଦାନଂ ଜ୍ଞାନରୂପିଣୀ
ଜ୍ଞାନାନାଂ ଚିନ୍ମୟାନନ୍ଦା ଶୂନ୍ୟାନଂ ଶୂନ୍ୟ ସାକ୍ଷୀଣୀ
ଯସ୍ୟା ପରତ୍‌ତରଯସ୍ତି ସୈଷା ଦୁର୍ଗା ପ୍ରକୀର୍ତ୍ତିତା ।

ସବୁ ମନ୍ତ୍ର ମଧ୍ୟରେ ସେ ହେଉଛନ୍ତି ଅକ୍ଷର, ଶବ୍ଦ ଭିତରେ ଜ୍ଞାନ, ଜ୍ଞାନ ମଧ୍ୟରେ ଶୂନ୍ୟତା । ଶୂନ୍ୟ ଭିତରେ ସାକ୍ଷୀ ସ୍ୱରୂପିଣୀ । ଏହାଙ୍କଠାରୁ ଆଉ ଶ୍ରେଷ୍ଠ କେହି ନାହିଁ । ତେଣୁ ଦୁର୍ଗା ଅଶେଷ ଅମଙ୍ଗଳ ସତ୍ତାର ବିଲୋପକାରିଣୀ । ଭକ୍ତି ଓ ଶକ୍ତିର ଅପୂର୍ବ ଐକ୍ୟତାନ– ଜଗଦ୍ଧାତ୍ରୀ ଦୁର୍ଗା, ପୁଣି ତାଙ୍କ ସମ୍ପର୍କରେ କୁହାଯାଇଛି–

ସୃଷ୍ଟି ସ୍ଥିତି ବିନାଶନୀ ଶକ୍ତିଭୂତେ ସନାତନୀ ।
ଗୁଣାଶ୍ରୟେ ଗୁଣମୟେ ନାରାୟଣୀ ନମୋଽସ୍ତୁତେ ।

ଅର୍ଥାତ, ତୁମେ ସୃଷ୍ଟି ରକ୍ଷା କର, ପାଳନ କର ଏବଂ ସର୍ବଶକ୍ତିର ଆଧାର ଅଟ । ତୁମେ ଗୁଣର ଆଧାର ତଥା ସର୍ବଗୁଣମୟୀ । ତୁମେ ନାରାୟଣୀ ଅର୍ଥାତ୍ ବ୍ରହ୍ମାଙ୍କର ଶକ୍ତି ସ୍ୱରୂପ । ତୁମକୁ ପ୍ରଣାମ ଦେବୀ ।

ଉପରୋକ୍ତ ମନ୍ତ୍ରର ରହସ୍ୟକୁ ଆଲୋଚନା କଲେ ଜଣାଯାଏ ଯେ, ଏହି ଶକ୍ତିରୂପିଣୀ ଦେବୀ ହେଉଛନ୍ତି ଅକ୍ଷର । ତେଣୁ ସେ ସୃଷ୍ଟିରେ ଅକ୍ଷର ସ୍ୱରୂପ ଦେବୀ । ଯେପରି ଅର୍ଥ ନଥିଲେ ଶବ୍ଦ ନିରର୍ଥକ, ଅର୍ଥାତ୍ ଯାହାର କୌଣସି ଅର୍ଥ ନାହିଁ ତାକୁ ଶବ୍ଦ କୁହାଯାଇପାରିବ ନାହିଁ । ତେଣୁ ଶକ୍ତିମାତା ହିଁ ହେଉଛନ୍ତି ଶବ୍ଦ ଜନନୀର ଅର୍ଥ । ଶବ୍ଦ ନଥାଇ ଜ୍ଞାନ ନାହିଁ, ଜ୍ଞାନ ହିଁ ଶବ୍ଦକୁ ଆଶ୍ରୟ କରି ଗତିଶୀଳ ହୋଇଥାଏ । ଏହି କାରଣରୁ ଶକ୍ତିମାତା ଜ୍ଞାନ ମଧ୍ୟରେ ଜ୍ଞାନର ଜନନୀ । ଶକ୍ତି ହିଁ ସବୁର କାରଣ । ଶକ୍ତିର ଲୀଳା ଦ୍ୱାରା ବିଶ୍ୱବ୍ରହ୍ମାଣ୍ଡ ଲୁକ୍କାୟିତ ।

'ଶକ୍ତି' ଶବ୍ଦ ଶାକ୍ତ ମୂଳ ଧାତୁରୁ ଆନୀତ । ଯାହାର ଅର୍ଥ ହେଲା, କାର୍ଯ୍ୟ କରିବାରେ ସମର୍ଥ ହେବା, ଭାରତୀୟ ପରମ୍ପରାରେ ଶକ୍ତି ତ୍ରିଗୁଣାତ୍ମିକ ସତ୍ତ୍ୱ, ରଜ ଓ ତମଃ । ଏହି ତିନୋଟି ଧାରାରେ ଆଦ୍ୟାଶକ୍ତି ବିଭିନ୍ନ ରୂପକୁ ଧାରଣ କରିଛନ୍ତି । ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଏ ତିନୋଟି ଦେବତା ଯଥାକ୍ରମେ ତିନୋଟି ଶକ୍ତିର ବୀଜ ସ୍ୱରୂପ । ତେଣୁ ଶକ୍ତିପୂଜା କହିଲେ ଏହି ତ୍ରି–ଶକ୍ତିଙ୍କ ସମ୍ମିଳିତ ରୂପ ଦୁର୍ଗାଙ୍କୁ ହିଁ ବୁଝାଏ ।

ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ, ଶକ୍ତିପୂଜା ଭାରତର ପ୍ରାଚୀନତମ ପରମ୍ପରା । ପରଂବ୍ରହ୍ମଙ୍କର ସ୍ତ୍ରୀ ସ୍ୱରୂପକୁ ଚିନ୍ତନ କରି ଶକ୍ତିପୂଜା ବୈଦିକ ଯୁଗରୁ ଆରମ୍ଭ ହୋଇଥିବା ଜଣାଯାଏ । ଭାରତୀୟ ପରମ୍ପରାରେ ଶକ୍ତି ତ୍ରିଗୁଣାତ୍ମିକ । ଏହି ତିନୋଟି ଧାରାରେ ମହାଶକ୍ତିଙ୍କର ଭିନ୍ନ ଭିନ୍ନ ରୂପକୁ ଧାରଣା କରାଯାଇଛି । ସତ୍ତ୍ୱ, ରଜ, ତମ ଗୁଣର ଦେବୀ ମହାମାୟାଙ୍କ ସ୍ୱରୂପ ହେଲା, ମହାସରସ୍ୱତୀ, ମହାଲକ୍ଷ୍ମୀ ଓ ମହାକାଳୀ । ଅଷ୍ଟାଦଶ ପୁରାଣ ଓ ଗୀତାଦଶମହାବିଦ୍ୟା ଇତ୍ୟାଦିରେ ବର୍ଣ୍ଣନା କରାଯାଇଛି ଓ ବେଦରେ କୁହାଯାଇଛି–

'ଏକୈବ ଶକ୍ତିଃ ପରମେଶ୍ୱରସ୍ୟ, ବିବିଧା ବଦନ୍ତି ବ୍ୟବହାର କାଳେ । ଭୋଗେ ଭବନୀ ପୁରୁଷେଷୁ ଲକ୍ଷ୍ମୀ, ଶକ୍ତିକ୍ତେ ତୁ ଦୁର୍ଗା




ପ୍ରଳୟେତୁ କାଳୀ ।' ଶକ୍ତିର ସହାୟକ ବିନା ଶିବ ମଧ୍ୟ ଶବ ପରି ଜଡ ପାଲଟି ଯାଆନ୍ତି ।

ମା'ଙ୍କ ଦୁର୍ଗା ନାମ ସମ୍ପର୍କରେ ସୂଚନା ମିଳେ, ସେ 'ଦୁର୍ଗମ' ନାମକ ଏକ ମହାସୁରକୁ ନିହତ କରି ବିଶ୍ୱଭାର ଲାଘବ କରିଥିବା ହେତୁ ଦୁର୍ଗା ନାମ ଧାରଣ କରିଥିଲେ । ଦୁର୍ଗାର ଆକ୍ଷରିକ ଅର୍ଥ ଏକ ସୁରକ୍ଷିତ ସ୍ଥଳ । ରାଷ୍ଟ୍ରର ସୁରକ୍ଷାତ୍ମକ ଶକ୍ତିର ସ୍ୱରୂପ ହିଁ ଦୁର୍ଗା । ସମଗ୍ର ରାଷ୍ଟ୍ରର କୋଟି ଜନତାର ସମ୍ମିଳିତ ରାଷ୍ଟ୍ରୀୟ ଶକ୍ତି ହିଁ ଯଥାର୍ଥରେ ଦୁର୍ଗା । 'ଦୁର୍ଗା– ଏକ ସମ୍ମିଳିତ ଶକ୍ତି । ସନ୍ଥମାନଙ୍କ ମତରେ 'ଦ୍ୱରଂ ଛତୀଦି ଦୁର୍ଗା', ଯାହାଙ୍କ ବିଷୟରେ ଜାଣିବାକୁ ମହିମା ଦୁରାଧିଗମ୍ୟ ଅଟେ ସେ ଦୁର୍ଗା, ତନ୍ତ୍ର ସଂଗ୍ରହ ଲେଖାନୁସାରେ–

'ସର୍ବପୀଠ ମୟୀ ଶକ୍ତିଃ– ସର୍ବବେଦ ସ୍ୱରୂପିଣୀ,
ସର୍ବମନ୍ତ୍ରମୟୀ ଶକ୍ତିଃ ଚତୁଃବର୍ଗ ପ୍ରଦାନୟିନୀ ।
ସୃଷ୍ଟି–ସ୍ଥିତି– ବିନାଶନୀଂ ଶକ୍ତିଭୂତେ ସନାତନୀ
ସର୍ବଦ୍ୟେ ସର୍ବମୟେ ଜୟଦୁର୍ଗେ ନମୋସ୍ତୁତେ ।'

'ଦୁର୍ଗା' ସର୍ବପୀଠମୟୀ, ଅର୍ଥାତ୍ ଗିରିପୀଠ, ବନପୀଠ, ଶ୍ମଶାନପୀଠ, ଆମ୍ନାପୀଠ ଆଦି ମଧ୍ୟରେ ଶକ୍ତି ରୂପରେ ବିରାଜିତା । ସେ ଦୈବୀ ଶକ୍ତିମୟୀ, ସର୍ବବିଧ ତନ୍ତ୍ର, ମନ୍ତ୍ର ଓ ଶକ୍ତି ମଧ୍ୟ । ସେ ହିଁ ଦୁର୍ଗା ।

ମହର୍ଷିମାନଙ୍କ ମତରେ ବ୍ରହ୍ମ ହିଁ ସବୁର ମୂଳ । ସାଧକମାନଙ୍କ ମତରେ ଶକ୍ତି ହିଁ ନିଖିଳ ବିଶ୍ୱର ସକଳ ଜାଗତିକ ବିକାଶର ମୂଳକାରଣ । ପ୍ରକାରାନ୍ତରେ ବିକାଶଶୀଳ ପ୍ରକାଶର ନାମ ହିଁ ଶକ୍ତି । ଶକ୍ତି ନାନା ପ୍ରକାର ନାମ ବହନ କରି ନାନା ଭାବରେ ନାନା ସ୍ଥାନରେ ପ୍ରକଟିତ ।

ଦୀର୍ଘକାଳ ଧରି ଲାଗି ରହିଥିବା ଦେବାସୁର ସମରରେ ବିଜୟୀ ହୁଏ ଦାନବରାଜ ମହିଷାସୁର । ସମଗ୍ର ଅମରାବତୀ ହୁଏ ମହିଷା ଆୟତ୍ତାଧୀନ । ସମସ୍ତ ଦେବଗଣ ସ୍ୱର୍ଗପୁରରୁ ବିତାଡିତ ହୋଇ ଦେବଦେବ ମହାଦେବ ଓ ବିଷ୍ଣୁ ସମୀପରେ ଉପଗତ ହୁଅନ୍ତି । ମହିଷାସୁରର ଏବଂବିଧ କାର୍ଯ୍ୟକଳାପ ଶ୍ରବଣ କରି ଯୋଗାଧିରାଜ ଶିବ ଓ ଭଗବାନ ବିଷ୍ଣୁ କ୍ରୁଦ୍ଧ ହୋଇଉଠନ୍ତି । ସେହି ସମୟରେ ବ୍ରହ୍ମା, ବିଷ୍ଣୁ ଏବଂ ମହେଶ୍ୱରଙ୍କ ପବିତ୍ର ଶରୀରରୁ ଉଗ୍ରତେଜ ନିଃସୃତ ହୁଏ । ସମଗ୍ର ତେଜ, ରଶ୍ମିର ଏକୀଭୂତ ସତ୍ତା ମହୀୟସୀ ଦେବୀ ମା' ଦୁର୍ଗା, ଭଗବତୀ ଦୁର୍ଗାଙ୍କ ଦ୍ୱାରା ମହିଷାସୁର ବିନାଶ ହେଲା । ତାହା ଥିଲା ଦୁର୍ଗା ବା ସମନ୍ୱିତ ଶକ୍ତି । ଏହି ଶକ୍ତି ବହୁ କ୍ଷୁଦ୍ର, ମଧ୍ୟମ ଓ ବୃହତ ଶକ୍ତିର ସମାହାର । ଯେତେବେଳେ କୌଣସି ଦୁର୍ଦ୍ଧର୍ଷ ଶତ୍ରୁ କବଳରୁ ରାଷ୍ଟ୍ରକୁ ରକ୍ଷା କରାଯାଏ, ସେତେବେଳେ ଚାରୋଟି ବୃହତ୍ ଶକ୍ତିକୁ ଏକତ୍ରିତ କରିବାକୁ ହୁଏ । ତାହା ହେଉଛି– ଗଣଶକ୍ତି, ଜ୍ଞାନଶକ୍ତି, କ୍ଷାତ୍ରଶକ୍ତି ଓ ଧନଶକ୍ତି । ଦୁର୍ଗାପୂଜା ସମୟରେ ପୀଠମାନଙ୍କରେ ପୂଜିତା ଦୁର୍ଗାଙ୍କ ପ୍ରତି ଦୃଷ୍ଟିପ୍ରାପ୍ତ କଲେ ଏହି ଧାରାର ସତ୍ୟତା ଦୃଷ୍ଟିଗୋଚର ହୁଏ । ଦୁର୍ଗାଙ୍କ ଚତୁଃପାର୍ଶ୍ୱରେ ଥାଆନ୍ତି ସରସ୍ୱତୀ, ଲକ୍ଷ୍ମୀ, ଗଣପତି ଏବଂ କାର୍ତ୍ତିକେୟ । ଗଣପତିଙ୍କୁ ଆମେ ଗଣଶକ୍ତିର ପ୍ରତୀକ ବୋଲି କହିଥାଉଁ ଏବଂ ସରସ୍ୱତୀ ଜ୍ଞାନ ଶକ୍ତି ଓ ମହାଲକ୍ଷ୍ମୀ ଧନଶକ୍ତି ଏବଂ କାର୍ତ୍ତିକେୟ କ୍ଷାତ୍ର ଶକ୍ତିର ପ୍ରତୀକ ।

ତ୍ରେତୟା ଯୁଗରେ ରାମାୟଣରେ ବର୍ଣ୍ଣିତ ଅଛି ଯେ, ଏହି ପବିତ୍ର ଦଶହରା ଦିବସରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ ମାତୃଶକ୍ତି କନକଦୁର୍ଗାଙ୍କ ସ୍ତୁତି କରି ରାବଣର ନିଧନ ଉଦ୍ଦେଶ୍ୟରେ ଲଙ୍କା ଅଭିମୁଖେ ଯାତ୍ରା କରିଥିବାରୁ ଏହି ବିଧିକୁ ବିଜୟା ଦଶମୀ କୁହାଯାଏ । ମହାଭାରତର ଭୀଷ୍ମ ପର୍ବରେ ଅର୍ଜୁନ ତାଙ୍କର ପ୍ରତିପକ୍ଷକୁ ପରାସ୍ତ କରିବା ପାଇଁ ଶକ୍ତି ରୂପିଣୀ ମା' ଦୁର୍ଗାଙ୍କର ପୂଜା କରିଥିଲେ ।

ଉତ୍କଳରେ ଦୁର୍ଗା ପୂଜାର ଆରମ୍ଭ ପ୍ରାଚୀନ କାଳରୁ ହିଁ ହୋଇଥିଲା । ଶାରଦୀୟ ଦୁର୍ଗୋତ୍ସବ ଅବସରରେ ମା' ଦୁର୍ଗାଙ୍କର ବିଧାନ କାତ୍ୟାୟନୀ କଳ୍ପ ଅନୁସାରେ ଓଡ଼ିଶାରେ ଦୁର୍ଗା ସପ୍ତଶତୀରେ ଉଲ୍ଲେଖ ହୋଇଥିବା ବିଧାନ ଅନୁଯାୟୀ ପାଳନ କରାଯାଏ ।

ଭାରତୀୟ ଦର୍ଶନରେ ଆଦ୍ୟାଶକ୍ତି ପ୍ରକୃତି ଅଟେ । ଏହି ଶକ୍ତି ହେଲା, ରୂପ, ଗୁଣ ଓ କ୍ରିୟାହୀନ ଏବଂ ସର୍ବତ୍ର ପରିବ୍ୟାପ୍ତ ପରମବ୍ରହ୍ମଙ୍କର ପ୍ରାକୃତିକ କ୍ରିୟାତ୍ମକ ଗୁଣ । ପରମବ୍ରହ୍ମ ଭିତରେ ଯେତେବେଳେ ନିଜକୁ ପ୍ରକାଶ କରିବା ପାଇଁ ସ୍ୱତଃ ସ୍ପୃହା ଜାତହୁଏ, ସେତେବେଳେ ସେ ପ୍ରକାଶପାଏ ପ୍ରକୃତି ରୂପରେ, ଏହି ବହମାନ କାଳବକ୍ଷରେ ନିଜକୁ ନିକ୍ଷିପ୍ତ କରିଥାନ୍ତି । ଚଣ୍ଡୀ ଗ୍ରନ୍ଥରେ ଏ ବିଶ୍ୱବ୍ରହ୍ମାଣ୍ଡର ସର୍ବଭୂତରେ, ବିଭିନ୍ନ ଭାବ ରୂପେ ଅବସ୍ଥାନ କରୁଥିବା ମହାମାୟା ପରମେଶ୍ୱରୀଙ୍କୁ 'ଶକ୍ତି' ରୂପରେ ମଧ୍ୟ ଉପାସିତା କରାଯାଇଥାଏ । ସାର କଥାଟି ହେଲା– ଏହି ବିଶ୍ୱ ସୃଷ୍ଟିର ମୂଳରେ ମୁଖ୍ୟତଃ 'ଶକ୍ତି' ବିଦ୍ୟମାନ । ଏହି ଶକ୍ତି ଅପ୍ରକାଶ୍ୟ ବା ପ୍ରକାଶ୍ୟ ରୂପରେ ରହିଛନ୍ତି । ନିଷ୍କ୍ରିୟ ବା କ୍ରିୟାଶୀଳ ହୋଇ ରହିଛନ୍ତି । କିନ୍ତୁ ଏହାକୁ ଜାଗରିତ ନକଲେ ଏହା କ୍ରିୟାଶୀଳ ହୋଇପାରେନା ।

ମଣିଷ ଭିତରେ ଅଛି ଜୀବନ ଶକ୍ତି, ମାନସିକ, ବୌଦ୍ଧିକ ଓ ଆଧ୍ୟାତ୍ମିକ ଶକ୍ତି । ମଣିଷର ମାନସିକ ଶକ୍ତିର ମୂଳ ହେଲା

ଇଚ୍ଛାଶକ୍ତି । ଏହି ମାନସିକ ଶକ୍ତିରୁ ଆସେ ମଣିଷର କଳ୍ପନା, ଉଦ୍‌ଭାବନା ଓ ସୃଜନୀଶକ୍ତି ଇତ୍ୟାଦି । କିନ୍ତୁ ମନକୁ ଏକାଗ୍ର ନକଲେ କୌଣସି ଶକ୍ତି କ୍ରିୟାଶୀଳ ହୋଇପାରେ ନାହିଁ । ମଣିଷ ଯେତେବେଳେ ତା'ର ସାଧନା ମାଧ୍ୟମରେ ତା'ର ମନକୁ ଓ ତା'ର ମାନସିକ ଦୃଢ ସଂକଳ୍ପ ଦ୍ୱାରା ନିଜ ଆତ୍ମାକୁ ଜାଗରିତ କରି ଆଧାତ୍ମିକ ଶକ୍ତିର ଅଧିକାରୀ ହେବ, ସେତେବେଳେ ସେ ନିଜକୁ ଏହି ସଂସାରର ମାୟା ବନ୍ଧନରୁ ମୁକ୍ତ କରିପାରିବ । ଯେତେବେଳେ ମଣିଷର ଆତ୍ମଜ୍ଞାନ ଉଦୟ ହେବ, ସେ ଅସାଧ ସାଧନ କରିପାରିବ । ଏଥିପାଇଁ ଏ ସଂସାରରେ ଶକ୍ତିତତ୍ତ୍ୱ ଅତ୍ୟନ୍ତ ମହତ୍ୱପୂର୍ଣ୍ଣ । ମାତୃ ରୂପରେ ଏ ସଂସାରର ଶକ୍ତିର ଉପାସନା ହୋଇ ଆସୁଛି । ସମଗ୍ର ସୃଷ୍ଟି ଶକ୍ତିଙ୍କର ଲୀଳା ନିକେତନ । ସେ ଭୂମାତାଙ୍କର ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ, ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ସର୍ବତ୍ର ପ୍ରକଟିତ । ସେ ଭବନୀ– ସେ ପୁଣି ଦୁର୍ଗତିନାଶିନୀ ଦୁର୍ଗା । ଏଥିପାଇଁ ମା' ଦୁର୍ଗା ପ୍ରାଚୀନ କାଳରୁ ଆଧାତ୍ମିକତାର ଉଜ୍ଜ୍ୱଳଭୂମି ଭାରତବର୍ଷରେ ସାଧାରଣ ଜୀବନରେ ଏକ ଉତ୍ସବ ମୁଖର ଉପାସନାରେ ଆଧାରିତ ହୋଇ ଆସୁଛନ୍ତି । ଆଦ୍ୟଶକ୍ତି ହିଁ ସବୁଶକ୍ତିର ମୂଳଉତ୍ସ । ସେ ସର୍ବଂସହା, ସର୍ବଶକ୍ତିମୟୀ, ସଦ୍-ଚିତ୍, ଆନନ୍ଦମୟୀ ।

ଶାକ୍ତ ମତରେ ଶକ୍ତି ହିଁ ବ୍ରହ୍ମ । ମାତୃଶକ୍ତି ସ୍ୱରୂପିଣୀ, ଅଭୟଦାୟିନୀ, ତପସ୍ୟାର ଦେବୀ ଜଗତର ଅଜ୍ଞାନ ଦୂର କରି ଜ୍ଞାନର ଆଲୋକ ପ୍ରଦାନ କରନ୍ତୁ । ଭାରତୀୟ ସଂସ୍କୃତି ଏହି ଉଦାର ଭାବନାରେ ସମସ୍ତଙ୍କୁ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ କରୁ ।

ଆଇନଜୀବୀ
ଖାଜାସାହି, ବ୍ରହ୍ମପୁର-୭୬୦୦୦୧

# ମାତୃ ଦେବୋ ଭବ !!

ଇଂଜିନିୟର ରଘୁନାଥ ପାତ୍ର

ମାତୃ ଗର୍ଭରୁ ଧରିତ୍ରୀ ଦୂରତା ବା କେତେ!
କେବଳ ମାତ୍ର ପ୍ରଣବ କୁଆଁ କୁଆଁ ରାହା
ଆପଦ ବିପଦେ ଅସହାୟ ହେଲେ ଜୀବ
କରୁଣା ଆପ୍ଲୁତ ମାତୃଶକ୍ତି ହୁଏ ସାହା ।

ଚଣ୍ଡ ମୁଣ୍ଡ ରକ୍ତବୀର୍ଯ୍ୟ ମହିଷ ଅସୁର
ଶୁମ୍ଭ ଓ ନିଶୁମ୍ଭ ଧର୍ମ ରହିତ ରାକ୍ଷସ
ଏମାନଙ୍କ ଉତ୍ପୀଡନେ ବ୍ୟାକୁଳ ସକଳ
ତ୍ରାହି ତ୍ରାହି ଡାକ ଦେଇ ଛାଡନ୍ତି ନିଃଶ୍ୱାସ ।

ଧାର୍ମିକ ଧର୍ମଧାରଣା ନିଷ୍ଠା ଓ ସଂକଳ୍ପେ
କରୁଣାମୟୀ ଜନନୀ ଆସନ୍ତି ଓହ୍ଲାଇ
ମହାକାଳୀ ମହାଲକ୍ଷ୍ମୀ ମହାସରସ୍ୱତୀ
ତ୍ରିବିଧ ଅଚିନ୍ତ୍ୟ ଶକ୍ତି ତିନି ନାମ ବହି ।

ଆଶ୍ୱିନର ଇଷ୍ଟଦେବୀ ସ୍ୱୟଂ ମହାଲକ୍ଷ୍ମୀ
ମହିଷାସୁର ମର୍ଦ୍ଦିନୀ ଶସ୍ୟଗର୍ଭା ମାତ
ଅନାବୃଷ୍ଟି ଅତିବୃଷ୍ଟି ବନ୍ୟା ଘୂର୍ଣ୍ଣିବାତ୍ୟା
ଆସୁରିକ ଆକ୍ରମଣ କରେ ପ୍ରତିହତ ।

ଇନ୍ଦ୍ରିୟ ଆଳସ୍ୟ ଭୋଗ-ଆଶା ପଶୁତୁଲ୍ୟ
ମହିଷ ହେଉଛି ଭୋଗ ଆଳସ୍ୟ ପ୍ରତୀକ
ପାଶବିକତାର ବଳି ଜୀବନରେ ଶ୍ରେୟ
ବଳିପରେ ହୁଏ ବ୍ରହ୍ମଚର୍ଯ୍ୟର ଉଦ୍ରେକ ।

ମହିମାମୟୀଙ୍କ ଅନିର୍ବଚନୀୟ ସ୍ରୋତ
ଉର୍ଜଃ ପ୍ରବାହିତ କେଉଁ ଅନନ୍ତ କାଳରୁ
ଅନିଷ୍ଟ ଉପରେ ଇଷ୍ଟ ବିଜୟ ସନ୍ଦେଶ
ସୂଚିତ ହୁଏ ଜଗତ ଜନନୀ ପୂଜାରୁ ।

ଦେବୀ ଆବାହନ ପାଇଁ ମଧୁମୟ ଧରା
ନଦୀପଠା ହସିଉଠେ କାଶତଣ୍ଡୀ ଫୁଲେ
ବାଡିବଗିଚା ଶୋଭିତ ଜହ୍ନିଫୁଲ ବସ୍ତ୍ରେ
ତଟିନୀ ନିର୍ମଳ ସ୍ରୋତ ବହେ ଧୀରେ ଧୀରେ ।

ସୌନ୍ଦର୍ଯ୍ୟରେ ବିମଣ୍ଡିତ ହୋଇ ବସୁମାତା
ଆବାହନ କରେ ବ୍ରହ୍ମମୟୀ ସନାତନୀ
ବାହ୍ୟ ଅନ୍ତର ପ୍ରକୃତି ବଶୀଭୂତ କରେ
ବ୍ରହ୍ମାନନ୍ଦ ଭାବ ବ୍ୟକ୍ତ କରନ୍ତି ଜନନୀ ।

ଅସତ୍ୟ ବିଲୋପ ହୋଇ ସତ୍ୟର ଉନ୍ମେଷ
ଘଟୁ ପ୍ରତି କୋଣେ ଅନୁକୋଣେ ବସୁମତୀ
ଜଗତଜନନୀ ଦୁର୍ଗା ଆଶିଷ ପ୍ରଦାନି
ଦିଅନ୍ତୁ ସଭିଙ୍କୁ ଦିବ୍ୟଭାବ, ଅନୁଭୂତି ।

ବିଜୟା ଦଶମୀ ଆଧାତ୍ମିକ ମୁହୂର୍ତ୍ତରେ
ସ୍ମରଣ କରିବା ଶ୍ରେୟ ଆନନ୍ଦ ଉଲ୍ଲାସେ
ସତ୍ୟର ଉତ୍ଥାନ ଆଉ ଅସତ୍ୟ ପତନ
ଚାଲେ କଳ୍ପ କଳ୍ପାନ୍ତର କବି ରଘୁ ଭାଷେ ।

ବୃନ୍ଦାବନ ଧାମ,ଲୋକନାଥ ରୋଡ
ପାଟଣାହାଟ ସାହି ଛକ,
ପୁରୀ- ୭୫୨୦୦୧





# ଶକ୍ତି ସ୍ୱରୂପିଣୀ ମାଆ

ବିମଳା ସିଂହ

ମା' ଶବ୍ଦର ବିକଳ୍ପ କେବଳ ମା' । ଆଉ କିଛି ନୁହଁ । ସୃଷ୍ଟିର ସୃଷ୍ଟିକାରିଣୀ, ପାଳନକାରିଣୀ ସେ । ସମସ୍ତ ଶକ୍ତିର ଆଧାର ସିଏ । ତେଣୁ ସେ ଶକ୍ତି ସ୍ୱରୂପିଣୀ । ଏକ ମାଂସ ପିଣ୍ଡୁଳା ଦିନେ ଆଲୋକକୁ ଦେଖିବାକୁ ସକ୍ଷମ ହୋଇଥାଏ ଏହି ମା' ଦ୍ୱାରା । ପ୍ରତ୍ୟେକ ମଣିଷର ଅଳିଅର୍ଦ୍ଦଳୀ ସେ ସହେ । ଜୀବନର ପ୍ରତି ପଦେ ପଦେ ତା' ସନ୍ତାନକୁ ମା' ହିଁ ଅଭୟ ବର ପ୍ରଦାନ କରିଥାଏ । ସନ୍ତାନମାନେ ତାକୁ ଦେଉଥିବା ଲାଞ୍ଛନା, ଯାତନା, ତାଡ଼ନାକୁ ସେ ହସିହସି ସହିଯାଏ ଅନ୍ତର ଭିତରର ସମସ୍ତ ଦୁଃଖକୁ ଚାପିରଖି । ସେ ଢାଳିଦିଏ ଆଶୀର୍ବାଦର ଅମୀୟଧାରା, ଯେଉଁ ଧାରାରେ ସିକ୍ତ ହେଉଥାଏ ତା' ସନ୍ତାନର ଚଲାପଥ ।



ସେଇ ମା' ହିଁ ମହାଶକ୍ତି ସ୍ୱରୂପା । ସେ ଅଦ୍ୱିତୀୟା । କାରଣ ତା'ଠାରୁ ଭିନ୍ନ ଆଉ କେଉଁ ଦ୍ୱିତୀୟ ଶକ୍ତି ନାହିଁ । ଏ ବିଶ୍ୱର ସୃଷ୍ଟିକାରିଣୀ, ଧ୍ୱଂସକାରିଣୀ ପୁଣି ପାଳନକାରିଣୀ ସେ । ତେଣୁ କୁହାଯାଏ ମାତୃଶକ୍ତି ସୃଷ୍ଟି, ସ୍ଥିତି, ପ୍ରଳୟ ଏ ତିନୋଟି ଶକ୍ତିର ଉତ୍ସ । ଦେବଭୂମି, ବେଦଭୂମି, ଆର୍ଯ୍ୟଭୂମି ଆମ ଦେଶ ଭାରତବର୍ଷ । ବେଦଧାତ୍ରୀ ଭାରତ ମାତାର ଆଧ୍ୟାତ୍ମିକ ଚିନ୍ତାଧାରା, ପରିବେଷ୍ଟନୀ ଭିତରେ ଜନସାଧାରଣ ସେଇ ଆଦ୍ୟାଶକ୍ତିଙ୍କୁ କେଉଁଠି ବିମଳା, ଶାରଳା, ହିଙ୍ଗୁଳା, ମଙ୍ଗଳା, କାଳୀ, ଭଦ୍ରକାଳୀ, ଦୁର୍ଗା, ଧୂମାବତୀ, ସମଲେଶ୍ୱରୀ, କୀଚକେଶ୍ୱରୀ, ଗୌରୀ, ପାର୍ବତୀ, ଚର୍ଚ୍ଚିକା, ଦକ୍ଷିଣକାଳୀ ଆଦି ବିଭିନ୍ନ ରୂପରେ ବିଭିନ୍ନ ମନ୍ତ୍ରଯନ୍ତ୍ରରେ ପୂଜା ଉପାସନା କରିଥାନ୍ତି । ଏହି ମା' ଙ୍କର ସାର୍ବଜନୀନ ଶକ୍ତିପୂଜା ମଧ୍ୟରେ ଦୁର୍ଗା ପୂଜା, କାଳୀ ପୂଜା, ହିଙ୍ଗୁଳା ଯାତ୍ରା ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷରେ ଏକ ସ୍ୱତନ୍ତ୍ରତା ବଜାୟ ରଖି ଆସିଛି କାହିଁ କେଉଁ କାଳରୁ । ମା'ଙ୍କର ଶକ୍ତି କେତେବେଳେ ରୁଦ୍ର ତ କେତେବେଳେ ଶାନ୍ତ । ସେ ଶକ୍ତି ସୂର୍ଯ୍ୟକିରଣ ପରି ତେଜୀୟାନ ତ ଚନ୍ଦ୍ରକିରଣ ପରି ସୁଶୀତଳ । ସେ ସର୍ବବ୍ୟାପିନୀ ଏବଂ ନିତ୍ୟ ଆରାଧ୍ୟା । ସେ ମଧ୍ୟ ସର୍ବେଶ୍ୱରୀ, ପ୍ରଣବମୟୀ, ଓଁକାର ଧାରିଣୀ । ତେଣୁ ତାଙ୍କୁ ସାଧକମାନେ ବହୁ ଭାବରେ, ଭାଷାରେ ବିଭିନ୍ନ ଦିଗରୁ ବର୍ଣ୍ଣନା କରି ଗାଇଛନ୍ତି –

'ଯା ବିଦ୍ୟା ବିଶ୍ୱରୁପାକ୍ଷିତି ସଲିଳ ମରୁତ,
ତେଜୋ ବ୍ୟୋମା ଦି ମୂର୍ତ୍ତି ।'

ସେଇ ମା' ସକଳ ଶକ୍ତିର ଆଧାର । ସେ ବିଦ୍ୟା, ଜ୍ଞାନ, ମାୟା ଏବଂ ବ୍ରହ୍ମଶକ୍ତି ଅଟନ୍ତି । ତାଙ୍କ ବିନା ସୃଷ୍ଟି ଅସମ୍ଭବ । ତେଣୁ ସେଇ ଶକ୍ତି ସ୍ୱରୂପିଣୀ ମା'ଙ୍କୁ ଅବହେଳା ପ୍ରଦର୍ଶନ ନ କରିବାକୁ ବ୍ରହ୍ମା ସମସ୍ତ ଦେବଗଣଙ୍କୁ ନିର୍ଦ୍ଦେଶ ଦେଇଥିଲେ । ପୁନଶ୍ଚ ସେଇ ମାତୃଶକ୍ତି ହିଁ ସମସ୍ତ ଜୀବର ଆତ୍ମା । ଅନନ୍ତ ଯୁଗର ଆଦ୍ୟାସ୍ରଷ୍ଟା

ଆଉ ପ୍ରାଣୀଙ୍କ ପ୍ରାଣ । ସପ୍ତସତୀ, ଦେବୀ ଭାଗବତ, ମାର୍କଣ୍ଡେୟ ପୁରାଣ ଆଦି ଶାକ୍ତ ଗ୍ରନ୍ଥରେ ସେଇ ଆଦ୍ୟାଶକ୍ତି ମା' ଚାମୁଣ୍ଡା ଏକାଧାରରେ ମହା ସରସ୍ୱତୀ, ମହାଲକ୍ଷ୍ମୀ, ମହାମାୟୀ, ମହାକାଳୀ, ଯୋଗମାୟା, ମହାଦୁର୍ଗା, ମହାକାତ୍ୟାୟିନୀ, ମହାଗୌରୀ, ଚଣ୍ଡୀ ଏବଂ ଜଗଦମ୍ବା ଅଟନ୍ତି ବୋଲି ଉଲ୍ଲେଖ ଅଛି । ତେଣୁ ଏହି ଶକ୍ତିସ୍ୱରୂପା ମା'ଙ୍କ ଉପରେ ଅଖଣ୍ଡ ବିଶ୍ୱାସ ରଖିଥିବା ଭକ୍ତସମୂହ ମା'ଙ୍କ ସ୍ତୁତି ଗାନରେ ବିଭୋର ହୋଇ ଗାଇ ଉଠିଥାନ୍ତି –

'ଦେବ୍ୟା ପୟା ତତ୍‌ମିଦଂ ଜଗାଦାତ୍ମଶକ୍ତ୍ୟା
ନିଃଶେଷ ଦେବଗଣ ଶକ୍ତି ସମୂହ ମୂର୍ତ୍ତ୍ୟା
ତାମମ୍ବିକାମଖିଳ ଦେବ ସହର୍ଷୀ ପୂଜ୍ୟାଂ
ଭକ୍ତ୍ୟା ନତାଃ ସ୍ମ ବିଦ୍ୟା ତୁ ଶୁଭାନି ସାନଃ ।'

ତେଣୁ ଶକ୍ତି ସ୍ୱରୂପା ମା' ସର୍ବତ୍ର ପରମା ମହାମାୟୀ ପ୍ରକୃତି ରୂପେ ବନ୍ଦିତା । ଏହି ଶକ୍ତିରୂପାଙ୍କୁ ତାଙ୍କର ଗୋଟିଏ ଗୋଷ୍ଠୀ ଭକ୍ତ ତାଙ୍କୁ କୁଣ୍ଡଳିନୀ ଶକ୍ତି ରୂପରେ ତ ଆଉ ଏକ ଗୋଷ୍ଠୀ ଭକ୍ତ ମା'ଙ୍କୁ ପ୍ରକୃତି ରୂପରେ ପୂଜା କରିଥାନ୍ତି । ଦେବତାମାନେ ମଧ୍ୟ ବିଭିନ୍ନ ଦୁର୍ଯୋଗ ସମୟରେ ଦୁର୍ଗା, କାଳୀ, ଚାମୁଣ୍ଡା ଆଦି ରୂପରେ ପୂଜା କରିଥିବାର ବିଭିନ୍ନ ଶାସ୍ତ୍ର ପୁରାଣରୁ ଆମେ ଜାଣୁ । ଦେବତାମାନଙ୍କୁ ମହିଷାସୁର କବଳରୁ ରକ୍ଷା କରିବା ପାଇଁ ଶକ୍ତିସ୍ୱରୂପା ମା' ଦୁର୍ଗା ରୂପରେ ଆବିର୍ଭୂତା ହୋଇଥିଲେ । ଦେବୀ କାଳୀ ସମଗ୍ର ସୃଷ୍ଟି କରିପାରନ୍ତି, ତତ୍ ସହିତ ସମସ୍ତ ସୃଷ୍ଟିକୁ ଧ୍ୱଂସ କରି ନିଜ ଦେହରେ ଲୀନ କରିପାରନ୍ତି । ବିଭିନ୍ନ ରୂପରେ ସେ ପ୍ରକାଶିତ ହୋଇଥାନ୍ତି । ଦୁର୍ଗା ପୂଜା ପରି କାଳୀ ପୂଜା ମଧ୍ୟ ଉତ୍କଳୀୟ ସଂସ୍କୃତି ପରମ୍ପରାର ଏକ ମହାନ ପର୍ବ । ଦୁର୍ଗା ପୂଜା ପାଇଁ ଓଡ଼ିଶାର ପୁରାତନ ସହର କଟକ, କାଳୀ ପୂଜା ପାଇଁ ଭଦ୍ରକ ପ୍ରସିଦ୍ଧ । ଏ କଥା ମଧ୍ୟ ଆମେ ଜାଣୁ ଯେ ଏହି ମାତୃଶକ୍ତିଙ୍କର ବିଭିନ୍ନ ନାମ ଅନୁସାରେ ମଧ୍ୟ ସ୍ଥାନର ନାମକରଣ କରାଯାଇଅଛି । ଉଦାହରଣ ସ୍ୱରୂପ ଭଦ୍ରକାଳୀଙ୍କ ନାମ ଅନୁସାରେ ଭଦ୍ରକ, ସମଲେଶ୍ୱରୀଙ୍କ ନାମ ଅନୁସାରେ ସମ୍ବଲପୁର ଇତ୍ୟାଦି ।

ଦଶ ମହାବିଦ୍ୟାରେ ଦେବୀମାନଙ୍କୁ ଧ୍ୟାନ ପୂର୍ବକ ଭକ୍ତ କଣ୍ଠରୁ ଝରି ଆସିଥାଏ–

'କାଳୀ ତାରା ମହାବିଦ୍ୟା ଷୋଡ଼ଶୀ ଭୁବନେଶ୍ୱରୀ ।
ଭୈରବୀ ଛିନ୍ନ ମସ୍ତାଚ ବିଦ୍ୟା ଧୂମ୍ରାବତୀ ତଥା ॥
ବଗଳା ସିଦ୍ଧି ବିଦ୍ୟାଚ ମାତଙ୍ଗୀ କମଳାତ୍ମିକା ।
ଏତା ଦଶମହାବିଦ୍ୟା ସିଦ୍ଧି ବିଦ୍ୟାଃ ପ୍ରକୀର୍ତ୍ତିତେ ॥''

ଆଉ କେତେକ ଭକ୍ତ ଶ୍ଳୋକଟିର ଶେଷ ଧାଡ଼ିଟିକୁ –

'ଏତା ଦଶମହାବିଦ୍ୟା ସିଦ୍ଧବିଦ୍ୟା ନମୋନମଃ' ଭାବରେ ମଧ୍ୟ ଉଚ୍ଚାରଣ କରିଥାନ୍ତି । ସାଧାରଣତଃ ଦେବୀ ଉପାସକମାନେ ଶାକ୍ତ । ଯାହା ହେଉନା କାହିଁକି ଏହି ଶକ୍ତି ସ୍ୱରୂପିଣୀ ମା' ଯୁଗଯୁଗ ଧରି ସୃଷ୍ଟିକୁ ରକ୍ଷାକରି ଆସିଛନ୍ତି ଯେଉଁଠି ଯେଉଁ ନାମରେ ଥିଲେ ମଧ୍ୟ । ସେ ଭକ୍ତି ଭାବରେ ବନ୍ଧା । ସେ କରୁଣାମୟୀ । ଏହି ଶକ୍ତି ସ୍ୱରୂପା ମା'ଙ୍କୁ ପୂଜା କରି ଭକ୍ତ ଜ୍ଞାନ, ବୁଦ୍ଧି, ବିଦ୍ୟା, ଧନ ପ୍ରାପ୍ତ ହୁଏ, ସେ ପ୍ରାପ୍ତ ହୁଏ ଦିବ୍ୟ ଭାବନା ଏବଂ ସାତ୍ତ୍ୱିକ ଚେତନା । ଏହା ପ୍ରାପ୍ତ ହେବା ଦ୍ୱାରା ସାଂସାରିକ ଦୁଃଖ ଯନ୍ତ୍ରଣା ଭିତରେ ଗତି କରୁଥିଲେ ମଧ୍ୟ ପରଂ ବ୍ରହ୍ମ ସଚ୍ଚିଦାନନ୍ଦ ବ୍ରହ୍ମ ସମାଧି ଲାଭ କରି ପାରିଥାଏ । ଏହା ହିଁ ହେଉଛି ସେଇ ସର୍ବ ମୋହିନୀ ଜ୍ୟୋତି ରୂପା ଆନନ୍ଦମୟୀ, ଶବ୍ଦ ବ୍ରହ୍ମ ସ୍ୱରୂପିଣୀ, ସର୍ବଶକ୍ତି ଧାରିଣୀ ମା'ଙ୍କର ମାହାତ୍ମ୍ୟ । ମହାଶକ୍ତିଙ୍କର ଏହି ମାହାତ୍ମ୍ୟ ଲାଭ କରି ଦୁର୍ଲଭ ମଣିଷ ଜୀବନର ଅନ୍ତରୀଣ ଲକ୍ଷ୍ୟ ଏବଂ ପରିପୂର୍ଣ୍ଣତା ପ୍ରାପ୍ତି ହୋଇଥାଏ । ତେଣୁ ଆନନ୍ଦ ଚିତ୍ତରେ ମା'ଙ୍କର ଆଶୀର୍ବାଦ ଯୁକ୍ତ ସହ କୃପା ଓ କରୁଣା ଲାଭ କରିବା ପାଇଁ ଏବଂ ମୋକ୍ଷ ପଥରେ ଆଗେଇ ଯିବା ପାଇଁ ଆସନ୍ତୁ ଗାଇ ଉଠିବା –

'ସ୍ଥାନେଶ୍ୱରୀ ନମସ୍ତୁଭ୍ୟଂ, ସର୍ବସୌଖ୍ୟ ପ୍ରଦାୟିନୀ,
ସ୍ଥାନକାମ ପ୍ରଦେଦେବୀ, ସଦା କଲ୍ୟାଣ ଦାୟିନୀ ।'

ଶେଷରେ ସେଇ ଶକ୍ତି ସ୍ୱରୂପିଣୀ ମା'ଙ୍କର ଅପାର କରୁଣାରୁ କିଞ୍ଚିତ୍ ଲାଭ ପାଇଁ ମା'ଙ୍କର ପଦାରବିନ୍ଦରେ ଜୀବନର ସମସ୍ତ ଦୁଃଖ ଦୁର୍ଦ୍ଦଶା ଆଉ ଅନ୍ଧାର ଦୂର ପାଇଁ ମନ ପ୍ରାଣ ଢାଳିଦେବା ।

ବି–୮୪, କ୍ରିଷ୍ଣା ଗାର୍ଡେନ, ଫେଜ୍–୨
ଜାଗମରା, ପୋ– ଖଣ୍ଡଗିରି, ଭୁବନେଶ୍ୱର



# ପ୍ରାଚୀନ ଓଡ଼ିଶାରେ ଶକ୍ତି ପୂଜା

**ଭାରତୀ ପାଲ୍**

ତନ୍ତ୍ରର ପ୍ରମୁଖ ଦେବୀ ଅଟନ୍ତି ଶକ୍ତି, ଯିଏକି ଶିବଙ୍କର ଅବିଚ୍ଛେଦ୍ୟ ଅଙ୍ଗ ହୋଇ ତନ୍ତ୍ରରେ ମୁଖ୍ୟ ସ୍ଥାନ ଅଳଙ୍କୃତ କରି ଅଛନ୍ତି । ଏହି ଶକ୍ତି ସାରା ବିଶ୍ୱକୁ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ବିଶୃଙ୍ଖଳିତ ଶକ୍ତି କବଳରୁ ଏହାକୁ ସର୍ବଦା ଉଦ୍ଧାର କରୁଛନ୍ତି ବୋଲି ତନ୍ତ୍ରରେ ଉଲ୍ଲେଖ ଅଛି । ଏହି ପ୍ରମୁଖ ଦେବୀ ଶକ୍ତି ସମଗ୍ର ବିଶ୍ୱକୁ ସୂଚାରୁ ରୂପେ ପରିଚାଳନା କରିବା ସଙ୍ଗେ ସଙ୍ଗେ ଦୁଃଖ, ଦୁର୍ଦ୍ଦଶାରୁ ବିଶ୍ୱବାସୀଙ୍କୁ ମୁକ୍ତ କରୁଛନ୍ତି । ଅନ୍ୟ ପକ୍ଷରେ ଏହା କୁହାଯାଇପାରେ କି ଏହି ସ୍ୱର୍ଗୀୟ ଶକ୍ତିଧାରିଣୀ ଶକ୍ତିଦେବୀ ଦେବତାମାନଙ୍କର ମାତୃରୂପରେ ଆବିର୍ଭୂତା ହୋଇଛନ୍ତି । ସୃଷ୍ଟିକାରିଣୀ ମାତା ହିସାବରେ ସେ ସ୍ୱଇଚ୍ଛାରେ ପୃଥିବୀକୁ ମାତୃ ସ୍ନେହ ଭରି ପରିଚାଳନା କରୁଛନ୍ତି । ସେ କାଳୀ, ତାରା, ଭୁବନେଶ୍ୱରୀ, ବଗଳା, ଭୈରବୀ, ଛିନ୍ନମସ୍ତା, ମାତଙ୍ଗୀ ଓ କମଳା ଆଦି ଭିନ୍ନ ଭିନ୍ନ ରୂପରେ ରୂପାୟିତା । ସେ ଅସୁରମାନଙ୍କୁ ସଂହାର କରିବା ସମୟରେ ଚତୁର୍ଭୁଜା ରୂପରେ ଆବିର୍ଭାବ ହୋଇଥାନ୍ତି । ସମୟ ସମୟରେ ସେ ମଧ୍ୟ ଦ୍ୱିଭୁଜା, ଷଡ଼ଭୁଜା, ଅଷ୍ଟଭୁଜା, ଦଶଭୁଜା ଏପରିକି ସହସ୍ର ଭୁଜାରେ ଆବିର୍ଭୂତା ହୋଇଥାନ୍ତି । ଶ୍ମଶାନ ଯେ କି ପାର୍ଥିବ ଶରୀରର ଅବସାନ କ୍ଷେତ୍ର, ସେହିଠାରେ ହିଁ ଏହି ଶକ୍ତିଦେବୀଙ୍କର ବାସସ୍ଥଳୀ । ବିଶ୍ୱର ସୃଷ୍ଟି, ବିକାଶ ଓ ବିନାଶ କର୍ତ୍ତ୍ରୀ ହେଉଛନ୍ତି ସେହି ମହାମାୟା ବା ମହାଯୋଗିନୀ । ପୃଥିବୀର ସମସ୍ତ ସଜୀବ ଓ ନିର୍ଜୀବ ପ୍ରାଣୀଙ୍କୁ ସେ ସୃଷ୍ଟି କରେ, ବିକାଶ କରେ ଓ ବିନାଶ ମଧ୍ୟ କରିଛନ୍ତି । ସୃଷ୍ଟିର ଆରମ୍ଭରୁ ଥିବାରୁ ସେ ଆଦ୍ୟା ନାମରେ ପୂଜିତା । ତାଙ୍କୁ ପ୍ରମୁଖ ସୃଷ୍ଟି କର୍ତ୍ତ୍ରୀ ଓ ପଥ ପ୍ରଦର୍ଶିକା ମଧ୍ୟ କୁହାଯାଏ ।

ପ୍ରାଚୀନ କାଳରୁ ସେ ମାତୃଦେବୀ ରୂପରେ ଖ୍ୟାତି ଲାଭ କରିଛନ୍ତି । ହରପ୍ପା ସଭ୍ୟତା ଖନନରୁ ଉଦ୍ଧାର କରାଯାଇଥିବା ଗୋଟିଏ ଟେରାକୋଟା ଉଲଗ୍ନ ନାରୀ ମୂର୍ତ୍ତିର ପେଟସ୍ଥଳରୁ ଏକ ଗଛ ଉତ୍ପନ୍ନ ହେବାର ଦେଖାଯାଏ । ଯାହାକୁ ମାତୃଦେବୀ ସାକାମ୍ବରୀ ରୂପରେ ରୂପାୟିତ କରାଯାଇଛି । କୌଟିଲ୍ୟଙ୍କର ଅର୍ଥଶାସ୍ତ୍ରରେ ମାତୃଶକ୍ତିକୁ ଶସ୍ୟ ରୋପଣ ତଥା ଆମଦାନୀର ଦେବୀ ହିସାବରେ ବର୍ଣ୍ଣନା କରାଯାଇଛି । ପରବର୍ତ୍ତୀ ସମୟରେ ଭକ୍ତମାନଙ୍କୁ ସୁରକ୍ଷା ଦେବା ନିମନ୍ତେ ଏହି ଶକ୍ତିଦେବୀ ବିରଙ୍ଗନା ଦେବୀ ରୂପେ ରୂପାୟିତା ହୋଇଛନ୍ତି । କାଳକ୍ରମେ ଏହି ଶକ୍ତିପୂଜା ବହୁଳ ଭାବରେ ପ୍ରସାର ଲାଭ କଲା । ମହିଷାସୁରଙ୍କୁ ନିଧନ ଉଦ୍ଦେଶ୍ୟରେ ହସ୍ତରେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତା ଏହି ଗୌରବର୍ଣ୍ଣ ଦେବୀଙ୍କର ଏହା ଥିଲା ଏକ ବିଶେଷ ବୈଶିଷ୍ଟ୍ୟ ।

ପ୍ରାଚୀନ ଅଭିଲେଖରେ ଓଡ଼ିଶାର ଶକ୍ତିପୂଜା ସଂପର୍କରେ ଉପାଦେୟ ତଥ୍ୟର ବର୍ଣ୍ଣନା ରହିଛି । ମହାରାଜା ତୁଷ୍ଟିକରଙ୍କର ତେରାସିଂଗା ତାମ୍ର ଫଳକରୁ ଶକ୍ତିପୂଜା ସଂପର୍କରେ ପ୍ରଥମ ତଥ୍ୟ ମିଳିଛି । ସ୍ତମ୍ଭେଶ୍ୱରୀ ଦେବୀଙ୍କୁ ଶକ୍ତିଦେବୀ ରୂପରେ ପୂଜା ପାଉଥିବା ମହାରାଜା ତୁଷ୍ଟିକର ତାଙ୍କ ତେରେସିଂହ ତାମ୍ର ଫଳକରେ ବର୍ଣ୍ଣିତ କରିଛନ୍ତି । ସେ ଖ୍ରୀଷ୍ଟୀୟ ୫ମ–୬ଷ୍ଠ ଶତାବ୍ଦୀରେ କଳାହାଣ୍ଡିରେ ସ୍ୱାଧୀନ ରାଜା ଭାବରେ ରାଜ୍ୟ ଶାସନ କରିବା ସଙ୍ଗେ ସଙ୍ଗେ ସ୍ତମ୍ଭେଶ୍ୱରୀ ଦେବୀଙ୍କର ପୂଜାର୍ଚ୍ଚନା କରୁଥିଲେ । ଶୁଳକୀ ପରିବାର ତାମ୍ର ଫଳକରୁ ଏହା ଜଣାଯାଏ ଯେ ସେମାନେ ମଧ୍ୟ ସ୍ତମ୍ଭେଶ୍ୱରୀ ଦେବୀଙ୍କର ପରମ ଭକ୍ତ ଥିଲେ, ଯେତେବେଳେ କି ସେମାନେ (ଖ୍ରୀଷ୍ଟୀୟ ନବମ–ଦଶମ ଶତାବ୍ଦୀରେ) ଭୌମକର ରାଜାଙ୍କ ଅଧୀନରେ କରଦ ରାଜା ହିସାବରେ ଶାସନ କରୁଥିଲେ । ଶୁଳକୀ ବଂଶ ରାଜାମାନଙ୍କର ସେ ଥିଲେ 'କୁଳଦେବତା' । ରଣସ୍ତମ୍ଭ ଫଳକରେ ବର୍ଣ୍ଣିତ ଅଛି– 'ଅସ୍ୟ କୂଳ ଦେବତା – ଭଗବତୀ– ସ୍ତମ୍ଭେଶ୍ୱରୀ– ଭଟ୍ଟାରିକାମ୍– ସକ୍ଷୀନି– କୃତ୍ୟା' । କୂଳସମ୍ଭଙ୍କ ହିନ୍ଦୋଳ ତାମ୍ର ଫଳକରେ ବର୍ଣ୍ଣିତ ଅଛି – 'କୁଳଦେବତା– ସ୍ତମ୍ଭେଶ୍ୱରୀ – ଭଟ୍ଟାରିକା' । ଆହୁରି ମଧ୍ୟ ବର୍ଣ୍ଣିତ ଅଛି – 'ଅସ୍ମଜ କୁଳ ଦେବତା ସ୍ତମ୍ଭେଶ୍ୱରୀ ଭଟ୍ଟାରିକା ପ୍ରମାଣୀ କୃତ୍ୟା' । ସେହି

ରାଜାଙ୍କର ହିନ୍ଦୋଳ ତାମ୍ର ଫଳକରେ ଉକ୍ତ ବିବରଣୀ ସହିତ ସ୍ତମ୍ଭେଶ୍ୱରୀଙ୍କ ସଂପର୍କରେ ଆହୁରି ଅନେକ ତଥ୍ୟ ଲିପିବଦ୍ଧ କରାଯାଇଛି । କୁଳଦେବତା ଭାବରେ ସ୍ତମ୍ଭେଶ୍ୱରୀଙ୍କୁ ଦେବତା, ମାନବ, ଦାନବ ଓ ସନ୍ନ୍ୟାସୀମାନେ ପୂଜା କରି ଆସୁଛନ୍ତି ।

ଶୁଳକୀମାନଙ୍କର ଅଧିଷ୍ଠାତ୍ରୀ ଦେବୀ ସ୍ତମ୍ଭେଶ୍ୱରୀଙ୍କର ଶିବଲିଙ୍ଗ ସହ ସଂପର୍କ ଥିବା ପୂର୍ବ ଭାରତରୁ ଆବିଷ୍କୃତ ସ୍ଥାପତ୍ୟମାନଙ୍କରେ ଦେଖିବାକୁ ମିଳେ । ଅଦ୍ୟାବଧି ଦେବୀ ସ୍ତମ୍ଭେଶ୍ୱରୀ ଓଡ଼ିଶାର ବିଭିନ୍ନ ସ୍ଥାନରେ ଏବଂ ବିଭିନ୍ନ ସଂପ୍ରଦାୟର ଭକ୍ତମାନଙ୍କ ଦ୍ୱାରା ସ୍ତମ୍ଭ ଉପରେ ପୂଜା ପାଇ ଆସୁଛନ୍ତି । ଏଥିରୁ ଜଣାଯାଏ ଯେ ଦେବୀ ସ୍ତମ୍ଭେଶ୍ୱରୀ ଏବେ ମଧ୍ୟ ନିଜର ସ୍ୱତନ୍ତ୍ର ପରିଚୟ ନେଇ ପୂଜିତ ହେଉଛନ୍ତି ।

ଆଜି ମଧ୍ୟ ପଶ୍ଚିମ ଓଡ଼ିଶାର ବିଭିନ୍ନ ସ୍ଥାନରେ ଦେବୀ ସ୍ତମ୍ଭେଶ୍ୱରୀ ଏକ ସ୍ୱତନ୍ତ୍ର ରୂପରେ ପୂଜା ପାଉଛନ୍ତି । ଏତଦ୍ ବ୍ୟତୀତ ଓଡ଼ିଶାର ଅନ୍ୟାନ୍ୟ ତାମ୍ର ଫଳକ ଓ ଶିଳାଲେଖରେ ଶକ୍ତିପୂଜା ସମ୍ବନ୍ଧରେ ଅନେକ ତଥ୍ୟ ମିଳେ ।

ଶୁଳକୀ ରାଜାଙ୍କ ବ୍ୟତୀତ ଭଞ୍ଜବଂଶୀୟ ରାଜା ରଣଭଞ୍ଜଦେବ ତାଙ୍କ ତାମ୍ର ଫଳକରେ ସ୍ତମ୍ଭେଶ୍ୱରୀ ଦେବୀଙ୍କ ସଂପର୍କରେ ବର୍ଣ୍ଣନା କରିଛନ୍ତି । ସେ ସ୍ତମ୍ଭେଶ୍ୱରୀ ଦେବୀଙ୍କର ଯଥେଷ୍ଟ କୃପାଲାଭ କରିଛନ୍ତି ବୋଲି ତାଙ୍କ ତାମ୍ର ଫଳକରେ ବର୍ଣ୍ଣିତ 'ସମାଧିଗତ ପଞ୍ଚ ମହାଶବ୍ଦ'ରୁ ଜଣାଯାଏ । ଭଞ୍ଜବଂଶର ଅନ୍ୟ ଏକ ଦେବୀ 'ଲିଲେଶ ଭଦ୍ରା ଦୂର୍ଗ । ଶତୃଭଞ୍ଜଙ୍କ ଅଭିଲେଖରେ ଦେଖାଯାଏ ଯେପର୍ଯ୍ୟନ୍ତ ସୂର୍ଯ୍ୟ ଏବଂ ଚନ୍ଦ୍ର ରହିଛନ୍ତି ସେପର୍ଯ୍ୟନ୍ତ ସେହି ଦେବୀଙ୍କ ନାମରେ ସେହି ରାଜା ଏକ ଗ୍ରାମ ମାବର୍ଦ୍ଧା– ବିଷୟ ସୀମାରେ ଦାନ କରିଛନ୍ତି ।

ଭୌମକରଙ୍କ ରାଣୀ ବାସଟା ଦେବୀଙ୍କର ଚାମୁଣ୍ଡା ମୂର୍ତ୍ତି ଅଭିଲେଖରୁ ଶକ୍ତିପୂଜା ସଂପର୍କରେ ସୂଚନା ମିଳେ । ରାଣୀ ବାସଟା ଦେବୀ ଯାଜପୁରର ତ୍ରିଲୋଚନ ମନ୍ଦିରରେ ଦେବୀ ଚାମୁଣ୍ଡାଙ୍କର ଏକ ମୂର୍ତ୍ତି ସ୍ଥାପନ କରିଥିଲେ । ଉକ୍ତ ଅଭିଲେଖରେ 'ସିଦ୍ଧାମ ରଜନୀ ବସ୍ୱଦେବ ବଳ କୀର୍ତ୍ତି' ବୋଲି ଖୋଦିତ ଅଛି, ଯେଉଁଥିରୁ ସ୍ପଷ୍ଟ ଜଣାଯାଏ ଯେ ଦେବୀ ଚାମୁଣ୍ଡା ହିଁ ବସ୍ୱଦେବୀଙ୍କର ଯଶ କୀର୍ତ୍ତିର ମୂଳମନ୍ତ୍ର ।

ସୋମବଂଶୀ ରାଜା ମହାଶିବ ଗୁପ୍ତଙ୍କର ଜାଟେସିଂଘ ଏବଂ ଦୁଗ୍ଧୀ ତାମ୍ର ଫଳକରେ ସୁବର୍ଣ୍ଣପୁରରେ ଦେବୀ ଶ୍ରୀ ପଞ୍ଚମ୍ବରୀ ଉଦ୍ରମ୍ଭିକା ପ୍ରତିଷ୍ଠା ପାଇ ଥିବାର ଜଣାଯାଏ । ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି ଯେ ରାଜା ଯଯାତି କେଶରୀ ଦେବୀ ବିମଳାକୁ ପୁରୀଠାରେ ସ୍ଥାପନ କରିଥିଲେ ।

ଗଙ୍ଗବଂଶୀୟ ରାଜାମାନେ ମଧ୍ୟ ଶକ୍ତି ପୂଜାକୁ ବିଶେଷ ଭାବରେ ଧ୍ୟାନ ଦେଉଥିଲେ । ଗଙ୍ଗବଂଶୀୟ ଯୁବରାଜ ରାଜେନ୍ଦ୍ର ବର୍ମନ ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ 'କାଞ୍ଚି ପୋଟି ଭଟ୍ଟାରିକା' ଦେବୀଙ୍କ ପୂଜା ନିମନ୍ତେ ଏକ ଗ୍ରାମ ଦାନ କରିଛନ୍ତି । ଅନନ୍ତ ବର୍ମନ ଚୋଡ଼ଗଙ୍ଗ ଦେବଙ୍କ ତାମ୍ର ଫଳକରୁ ଜଣାଯାଏ ଯେ ସେ ଖ୍ରୀଷ୍ଟୀୟ ୧୦୮୪ରେ ଭଗବତୀ ଦେବୀଙ୍କ ପୂଜାର୍ଚ୍ଚନା ନିମନ୍ତେ ଜମି ଉପହାର ସଦୃଶ ପ୍ରଦାନ କରିଥିଲେ ।

ସୂର୍ଯ୍ୟବଂଶୀ ରାଜାମାନଙ୍କର ରାଜୁତି କାଳରେ ମଧ୍ୟ ଶକ୍ତିପୂଜାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ରଘୁ ଦେବଙ୍କର ଓ୍ୱାରଙ୍ଗଲ୍ ତାମ୍ର ଫଳକରେ ଦେବୀ ଦୁର୍ଗାଙ୍କର ଅନ୍ୟ ନାମ ଗଙ୍ଗ ମଙ୍ଗଳମ୍ ଚଣ୍ଡୀଙ୍କର ନାମ ଉଲ୍ଲେଖ ଥିବାର ଦେଖାଯାଏ । ଏଥିରେ ବର୍ଣ୍ଣିତ ଅଛି ଯେ ରାଜା ରଘୁଦେବ ଦେବୀଙ୍କର ପରମ ଭକ୍ତ ତଥା ପ୍ରିୟ ସନ୍ତାନ ଭାବେ ନିଜକୁ ମଣୁଥିଲେ । ଏହି ଫଳକରେ ମଧ୍ୟ ଉଲ୍ଲେଖିତ ଯେ, ଏହି ବଂଶର ପ୍ରତିଷ୍ଠାତା କପିଳେଶ୍ୱର ଦେବ ନିଜକୁ ମହେଶ୍ୱର ପୁତ୍ର, ପୁରୁଷୋତ୍ତମ ପୁତ୍ର ଏବଂ ଦୁର୍ଗାପୁତ୍ର ନାମରେ ନାମିତ କରିଥିଲେ ।

ବାଲେଶ୍ୱରରୁ ମିଳିଥିବା ରାଜା ପୁରୁଷୋତ୍ତମଙ୍କର ତାମ୍ର ଫଳକ ପାଠ କଲେ ତାହା 'ଶ୍ରୀ ଜୟ ଦୁର୍ଗାୟ ନମଃ'ରୁ ଆରମ୍ଭ ହୋଇ ଥିବାର ଦେଖାଯାଏ । ଏହି ସମୟରେ ଉଭୟ ବୈଷ୍ଣବ ଓ ଶିବ ଶକ୍ତି ଧର୍ମର ପ୍ରଚାର ଓ ପ୍ରସାର ବହୁଳ ଭାବରେ ହୋଇ ଥିବାର ବିଭିନ୍ନ ଅଭିଲେଖରୁ ପ୍ରମାଣ ମିଳେ ।

ସହ ସଂଗ୍ରହାଧ୍ୟକ୍ଷା
ଲିପିତତ୍ତ୍ୱ ବିଭାଗ
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର



# ଗୁରୁ ଦିବସର ଅନୁଚିନ୍ତା

**ପ୍ରମୋଦ କୁମାର ନାୟକ**

ପୁଣ୍ୟଭୂମି ଭାରତବର୍ଷରେ ଗୁରୁ ପୂଜାର ପରମ୍ପରା ଅନାଦି କାଳରୁ ପ୍ରଚଳିତ । ଏହି ପରମ୍ପରା ଗୁରୁପୂର୍ଣ୍ଣିମା ଅବସରରେ କୃଷ୍ଣଦ୍ୱୈପାୟନ ବ୍ୟାସଙ୍କ ଉଦ୍ଦେଶ୍ୟରେ ମଠ, ମନ୍ଦିର ଓ ଭାଗବତ ଟୁଙ୍ଗୀମାନଙ୍କରେ ସୀମିତ ଭାବରେ ପାଳନ କରାଯାଉଥିଲା । ପରବର୍ତ୍ତୀ କାଳରେ ଅର୍ଥାତ୍ ୧୯୬୨ ମସିହାଠାରୁ ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ଜୟନ୍ତୀ ପାଳନ ସହିତ ସେହିବର୍ଷଠାରୁ ସେପ୍ଟେମ୍ବର ୫ ତାରିଖକୁ ଗୁରୁ ଦିବସ ରୂପେ ସମଗ୍ର ଭାରତବର୍ଷରେ ପାଳନ କରାଯାଉଛି ।

ଭାରତୀୟ ଧର୍ମ, ସଂସ୍କୃତି ଓ ଦର୍ଶନ ଗୁରୁବାଦ ଉପରେ ପ୍ରତିଷ୍ଠିତ । ଗୁରୁ ଶବ୍ଦର ବ୍ୟୁତ୍ପତ୍ତି ସମ୍ବନ୍ଧରେ ବିଭିନ୍ନ ଶାସ୍ତ୍ରରେ ଭିନ୍ନ ଭିନ୍ନ ମତର ଅବତାରଣା କରାଯାଇଛି । ଶାସ୍ତ୍ରରେ ଉଲ୍ଲିଖିତ ଅଛି– ''ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକୟା, ଚକ୍ଷୁରୁନ୍ମିଳିତ ଯେନ ତସ୍ମୈ ଶ୍ରୀଗୁରବେ ନମଃ'' ଅର୍ଥାତ୍ ଅଜ୍ଞାନ ରୂପୀ ଅନ୍ଧକାରକୁ ଦୂରୀଭୂତ କରି ଜ୍ଞାନ ରୂପକ ଅଞ୍ଜନ ଦ୍ୱାରା ଯେ ଚକ୍ଷୁର ଉନ୍ମିଳନ କରିପାରନ୍ତି, ସେ ହେଉଛନ୍ତି ଗୁରୁ । ଏପରିକି ଗୁରୁଙ୍କୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତଥା ପରଂବ୍ରହ୍ମଙ୍କ ସହିତ ସମାନ କରାଯାଇଛି ।

''ଗୁରୁବ୍ରହ୍ମା ଗୁରୁବିଷ୍ଣୁ ଗୁରୁଦେବ ମହେଶ୍ୱର
ଗୁରୁ ସାକ୍ଷାତ ପରଂବ୍ରହ୍ମ ତସ୍ମୈ ଶ୍ରୀଗୁରବେ ନମଃ ।''

ଗୁରୁ ଏକାଧାରରେ ବ୍ରହ୍ମାନନ୍ଦ ଦାୟକ, ପରମ ସୁଖଦାତା, ଜ୍ଞାନ ସ୍ୱରୂପ, ସମସ୍ତ ଦ୍ୱନ୍ଦ୍ୱରୁ ମୁକ୍ତ, ଆକାଶ ସଦୃଶ୍ୟ ସୂକ୍ଷ୍ମ ଓ ସର୍ବବ୍ୟାପକ ତଥା 'ତତ୍ତ୍ୱ ମସି' ଆଦି ମହାବାକ୍ୟର ଲକ୍ଷ୍ୟାର୍ଥ । ସେ ଏକ ନିତ୍ୟ ଓ ମନ୍ଦ ରହିତ, ଅଚଳ, ସଦ୍‌ବୁଦ୍ଧିର ସାକ୍ଷୀ, ଭାବର ଊର୍ଦ୍ଧ୍ୱରେ, ସତ୍ତ୍ୱ , ରଜ, ତମ ତ୍ରିଗୁଣ ରହିତ । ତେଣୁ ସେହି ଗୁରୁଙ୍କୁ ପ୍ରଣାମ । ଶାସ୍ତ୍ରରେ ଉଲ୍ଲେଖ ଅଛି–

''ବ୍ରହ୍ମାନନ୍ଦ ପରମସୁଖଦଂ କେବଳ ଜ୍ଞାନମୂର୍ତ୍ତି
ଦ୍ୱନ୍ଦ୍ୱାତୀତଂ ଗଗନ ସଦୃଶଂ ତତ୍ତ୍ୱ ମସ୍ୟାଦି ଲକ୍ଷଂ
ଏକ ନିତ୍ୟଂ ବିମଳ ମଚଳଂ ସର୍ବାଧୀ ସାକ୍ଷୀଭୂତଂ
ଭାବାତୀତ ତ୍ରିଗୁଣ ରହିତ ସଦ୍‌ଗୁରୁ ତଂ ନମାମି ।''

ମାନବ ସମାଜର ଉଦ୍ଧାରଣ କଳ୍ପେ ସ୍ୱୟଂ ଭଗବାନ ଗୁରୁ ରୂପରେ ଅବତୀର୍ଣ୍ଣ ହୋଇଥାନ୍ତି । ଶାସ୍ତ୍ରରେ ଉଲ୍ଲେଖ ଅଛି–

'ଜୀବେର ନିସ୍ତାର ଲାଗି ନନ୍ଦସୁତ ହରି
ଭୁବନେ ପ୍ରକାଶ ହୟ ଗୁରୁରୂପ ଧରି ।'

ପୁନଶ୍ଚ ଭାଗବତରେ କୁହାଯାଇଛି– 'ଗୁରୁଙ୍କୁ ନମଣିବ ନର, ଗୁରୁ ହିଁ ସାକ୍ଷାତ ଈଶ୍ୱର' ।

ଉପଯୁକ୍ତ ସିଦ୍ଧାନ୍ତରୁ ସ୍ପଷ୍ଟ ପ୍ରତୀୟମାନ ହୁଏ, ଗୁରୁ ଈଶ୍ୱର, ବ୍ରହ୍ମ ଓ ସତ୍ୟ ଏକବସ୍ତୁ । ସାଧାରଣ ଦୃଷ୍ଟିରେ ଗୁରୁ ହେଉଛନ୍ତି ଜଣେ ସାଧାରଣ ମାନବ । ଶିଷ୍ୟ ନିକଟରେ ଗୁରୁଙ୍କ ସ୍ୱଭାବ ମଧ୍ୟ ମାନବୋଚିତ ହେଲେ ହେଁ ସେ ପରଂବ୍ରହ୍ମ । ଏହି ଧାରଣା ମନରେ ଆଣି ତାଙ୍କର ଶ୍ରୀଚରଣ ବନ୍ଦନା କରିବା ହେଉଛି ଆରାଧନା ଏବଂ ତାଙ୍କ ସ୍ୱରୂପକୁ ଶୟନେ, ସ୍ୱପନେ, ଜାଗରଣେ ଅନୁଭବ କରିବା ହେଉଛି ଧ୍ୟାନ । ଗୁରୁଙ୍କୁ ପରଂବ୍ରହ୍ମ ଜ୍ଞାନରେ ଶ୍ରଦ୍ଧା ଓ ଭକ୍ତି ସହକାରେ ଶ୍ରୀପାଦ ପୂଜା ଶିଷ୍ୟର ପରମ କର୍ତ୍ତବ୍ୟ । ଶ୍ରୀମଦ୍ ଭାଗବତରେ ଭଗବାନ କହିଛନ୍ତି –

''ମୋତେ ପୂଜିବ ଗୁରୁ ଦେହେ,
ମୋ ତହୁଁ ଗୁରୁ ଭିନ୍ନ ନୁହେଁ ।''

ଗୁରୁଙ୍କ ଆଦେଶକୁ ନିଷ୍ଠାର ସହ ପାଳନ କରିବା ଶିଷ୍ୟ ନିମିତ୍ତ ମନ୍ତ୍ର । ଏହି ପୁରୋଦୃଷ୍ଟିରୁ ଶିଷ୍ୟ ଦୃଢ଼ ବିଶ୍ୱାସ ସହକାରେ ନିଜର ହୃଦୟ, ମନ, ପ୍ରାଣକୁ ଗୁରୁଦେବଙ୍କ ସେବାରେ ନିୟୋଜିତ କରି ଗୁରୁଆଜ୍ଞା ପାଳନ କଲେ ଅନ୍ତ ଚେତନାରେ ବିକାଶ ଘଟି ଗୁରୁକୃପା ଲାଭ ହୋଇଥାଏ । ତାହାପରେ ଶିଷ୍ୟ ସ୍ୱତଃ

ଆତ୍ମସମର୍ପଣ ଦ୍ୱାରା ଗୁରୁଙ୍କର ଏକାନ୍ତ ଆପଣାର ହୋଇଯାଏ । ପରିଣାମରେ ଗୁରୁଦେବଙ୍କ କୃପାବାରି ଶିଷ୍ୟ ପ୍ରତି ଅଜାଡି ହୋଇଥାଏ । ଶିଷ୍ୟ ଅନାୟାସରେ ସମସ୍ତ ସମାଧାନର ବାଟ ପାଇଯାଏ । ଶାସ୍ତ୍ରରେ ଉଲ୍ଲେଖ ଅଛି –

''ଧ୍ୟାନମୂଳଂ ଗୁରୋର୍ମୂର୍ତ୍ତିଃ ପୂଜାମୂଳଂ ଗୁରୋଃପଦମ୍
ମନ୍ତ୍ରମୂଳଂ ଗୁରୋର୍ବାକ୍ୟଂ ମୋକ୍ଷମୂଳଂ ଗୁରୋଃକୃପା ।''

ଗୁରୁକୃପା ବଳରେ ଜଣେ ସାଧାରଣ ଶିଷ୍ୟ ଅସାଧାରଣ ମହାପୁରୁଷ ହୋଇପାରେ । ଭାରତୀୟ ପୁରାଣ ଓ ଇତିହାସ ପୃଷ୍ଠାରେ ଗୁରୁ ଓ ଶିଷ୍ୟ ମଧ୍ୟରେ ଏକ ସୁଦୃଢ଼ ପରମ୍ପରା ଯୁଗ ଯୁଗ ଧରି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ତଦନୁଯାୟୀ ତ୍ରେତୟା ଯୁଗରେ ପ୍ରଭୁ ରଘୁରାଣ ଗୁରୁ ବିଶ୍ୱାମିତ୍ରଙ୍କଠାରୁ ଓ ଦ୍ୱାପର ଯୁଗରେ ଭଗବାନ ଶ୍ରୀକୃଷ୍ଣ ଗୁରୁ ସାନ୍ଦୀପନୀଙ୍କଠାରୁ ଗୁରୁକୃପା ପ୍ରାପ୍ତ ହୋଇଥିଲେ । ସେହିପରି ଗୁରୁ ଦ୍ରୋଣଙ୍କ କୃପାରୁ ଏକଲବ୍ୟ, ଋଷି ଆୟୋଦ ଧୌମ୍ୟଙ୍କଠାରୁ ଆରୁଣି, ଉପମନ୍ୟୁ, ଶ୍ରୀଜନାର୍ଦ୍ଦନ ସ୍ୱାମୀଙ୍କଠାରୁ ସନ୍ଥ ଏକନାଥ, ଶ୍ରୀଗୋବିନ୍ଦ ପାଦାଚାର୍ଯ୍ୟଙ୍କ କୃପାରୁ ଆଚାର୍ଯ୍ୟଶଙ୍କର, ଦଣ୍ଡିସ୍ୱାମୀ ବିରଜାନନ୍ଦଙ୍କଠାରୁ ସ୍ୱାମୀ ଦୟାନନ୍ଦ, ସ୍ୱାମୀ ରାମକୃଷ୍ଣ ପରମହଂସଙ୍କ କୃପାପ୍ରାପ୍ତ ସ୍ୱାମୀ ବିବେକାନନ୍ଦ, ରାମଦାସଙ୍କ କୃପାରୁ ଛତ୍ରପତି ଶିବାଜୀ, କୂଟନୀତି ବିଶାରଦ ଚାଣକ୍ୟଙ୍କଠାରୁ ଦାସୀପୁତ୍ର ଚନ୍ଦ୍ରଗୁପ୍ତ, ଜ୍ଞାନୀଗୁରୁ ନରହର୍ଯ୍ୟା ନନ୍ଦଙ୍କ କୃପାପ୍ରାପ୍ତ ସନ୍ଥ ଗୋସ୍ୱାମୀ ତୁଳସୀ ଦାସ, ବୈଷ୍ଣବାଚାର୍ଯ୍ୟ ରାମାନନ୍ଦଙ୍କ କୃପାରୁ ସନ୍ଥ କବୀର, ସନ୍ଥ କବୀରଙ୍କ କୃପାପ୍ରାପ୍ତ ସନ୍ଥ ରଇଦାସ ଓ ଅନେକ । ବାସ୍ତବରେ ଶିଷ୍ୟ ନିଜର ଆଚରଣ ଦ୍ୱାରା ସଦ୍‌ଗୁରୁଙ୍କଠାରୁ କୃପାପ୍ରାପ୍ତ ହୋଇଥାଏ । ସର୍ବ ଭାରତୀୟ ସ୍ତରରେ ଗୁରୁରୂପେ ଆବିର୍ଭାବ ହୋଇଥିଲେ ସାର୍ ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍ । ସେ ପିତା ବୀରସ୍ୱାମୀଙ୍କ କୋଳମଣ୍ଡନ କରି ୧୮୮୮ ମସିହା ସେପ୍ଟେମ୍ବର ୫ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ ଚେନ୍ନାଇର ଏକ ଗ୍ରାମରେ । ପିତା ଯଜମାନ କାର୍ଯ୍ୟ କରି ସାଧାରଣ ଜୀବନଯାପନ ସହିତ ଯଥା ସମୟରେ ସୁପୁତ୍ରର ଶିକ୍ଷାଦାନ ନିଜେ କରିବା ସହିତ ବିଦ୍ୟାଳୟରେ ନାମ ଲେଖାଇ ଥିଲେ । ରାଧାକୃଷ୍ଣନ୍ ଥିଲେ ଅସାଧାରଣ ଛାତ୍ର । ସେ ଭେଲୋରସ୍ଥ ବୁର୍‌ହିଜ୍ କଲେଜ୍‌ରୁ ଏଣ୍ଟ୍ରାନ୍‌ସ ଓ ଏଫ୍.ଏ ରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ । ତଦୁତ୍ତାରେ ସେ ଚେନ୍ନାଇର ଖ୍ରୀଷ୍ଟିଆନ୍ କଲେଜରୁ ଦର୍ଶନ ଶାସ୍ତ୍ରରେ ଅନର୍ସ ସହିତ ପ୍ରଥମ ଶ୍ରେଣୀରେ ବି.ଏ ପାଶ୍ କରିଥିଲେ । ପୁନଶ୍ଚ ସେହି ବିଶ୍ୱବିଦ୍ୟାଳୟରୁ କୃତିତ୍ୱର ସହ ସ୍ନାତକୋତ୍ତର ଉପାଧି ପ୍ରାପ୍ତ ହୋଇଥିଲେ । କର୍ମମୟ ଜୀବନରେ ସେ ୧୯୦୯ ମସିହାରେ ପ୍ରେସିଡେନ୍‌ସି କଲେଜର ଅଧ୍ୟାପକ ହୋଇଥିଲେ । ପରବର୍ତ୍ତୀ କାଳରେ ମହୀଶୂର ବିଶ୍ୱବିଦ୍ୟାଳୟ, କଲିକତା ବିଶ୍ୱବିଦ୍ୟାଳୟରେ ପ୍ରଫେସର ପଦ ମଣ୍ଡନ କରି ଆଦର୍ଶ ଶିକ୍ଷକର ଭୂମିକା ନିର୍ବାହ କରିଥିଲେ । ପରବର୍ତ୍ତୀ କାଳରେ ସେ ହେଲେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର କୁଳପତି । ଇତ୍ୟବସରେ ଭାରତବର୍ଷର ପ୍ରଧାନମନ୍ତ୍ରୀ ପଦ ମଣ୍ଡନ କରିଥିଲେ ପଣ୍ଡିତ ଜବାହରଲାଲ୍ ନେହେରୁ । ସେ ଡକ୍ଟର ରାଧାକୃଷ୍ଣନ୍‌ଙ୍କଠାରେ ଦେଖିବାକୁ ପାଇଲେ ଆଦର୍ଶ ଶିକ୍ଷକତ୍ୱ, ମହନୀୟ ବ୍ୟକ୍ତିତ୍ୱ ତଥା ଜାତୀୟତା ଆଭାସ । ସେ ଭାରତୀୟ ଦର୍ଶନକୁ ସମଗ୍ର ବିଶ୍ୱରେ ପ୍ରସାରିତ କରିପାରିଥିଲେ । ପରିଣାମରେ ସେ ଲଣ୍ଡନର ସର୍ବୋଚ୍ଚ ଉପାଧି 'Order of Merit' ପାଇବାକୁ ଯୋଗ୍ୟ ହୋଇଥିଲେ ।



ପରବର୍ତ୍ତୀ କାଳରେ ରାଧାକୃଷ୍ଣନ୍ ଭାରତର ଉପରାଷ୍ଟ୍ରପତି ଓ ରାଷ୍ଟ୍ରପତି ପଦବୀ ମଣ୍ଡନ କରିଥିଲେ । ଏ ସମସ୍ତ ଗୁରୁଦାୟିତ୍ୱ ବହନ କରି ସେ ଭାରତବର୍ଷର ସାହିତ୍ୟ ଓ ଦର୍ଶନକୁ ଏକଶହ କୋଡିଏ ଖଣ୍ଡ ପୁସ୍ତକ ରଚନା କରି ବାଣୀଭଣ୍ଡାରକୁ ଋଦ୍ଧିମନ୍ତ କରିଯାଇଛନ୍ତି । ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ଦେଶପ୍ରତି ପରାମର୍ଶ ଥିଲା– 'ଗୁରୁ ହିଁ ସମାଜ ଓ ଦେଶର ଆଲୋକବର୍ତ୍ତିକା । ସୃଷ୍ଟି, ସ୍ଥିତି ଓ ସର୍ଜନାର ପହିଲି ପୁଲକ ଓ ଆଲୋକ ସଂପାତ । ସେ ଭାରତବର୍ଷର ରାଷ୍ଟ୍ରପତି, ବିଶ୍ୱବିଦିତ ଦାର୍ଶନିକ । ପ୍ରଜ୍ଞାପୁରୁଷ ସର୍ବପଲ୍ଲୀ ରାଧାକୃଷ୍ଣନ୍ ଥିଲେ ଭାରତବର୍ଷର ଗର୍ବ ଓ ଗୌରବ । ୧୯୬୨ ମସିହା ସେପ୍ଟେମ୍ବର ୫ ତାରିଖଠାରୁ ତଦୀୟ ଜୟନ୍ତୀ ପାଳନ ସହିତ ସମଗ୍ର ଗୁରୁଜାତିର ମହତ୍ତ୍ୱ ପ୍ରଦର୍ଶନ ନିମିତ୍ତ ସେପ୍ଟେମ୍ବର ୫ ତାରିଖ ଗୁରୁ ଦିବସ ରୂପେ ପାଳନ କରାଯାଉଅଛି ।

ପରିଶେଷରେ ବକ୍ତବ୍ୟ ଏହି ଯେ, ସାଂପ୍ରତିକ ଯୁଗରେ 'ଗୁରୁ ଦିବସ'କୁ ସାର୍ବଜନୀନ ରୂପେ ପାଳନ କରାଯାଉଥିଲେ ହେଁ, ଗୁରୁଶିଷ୍ୟ ମଧ୍ୟରେ ମଧୁର ସମ୍ପର୍କ ସୁଦୂର ପରାହତ । ତେଣୁ ଭାରତର ଗୁରୁ ପରମ୍ପରା ଗର୍ବ ଓ ଗୌରବକୁ ଅକ୍ଷୁର୍ଣ୍ଣ ରଖିବା ନିମିତ୍ତ, ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ନୀତି ଓ ଆଦର୍ଶକୁ ଅନୁକରଣ ପୂର୍ବକ କର୍ମରେ ପ୍ରୟୋଗ କରିବା ଶିଷ୍ୟମାନଙ୍କର ଏକାନ୍ତ କାମ୍ୟ । ଏହା ହିଁ ହେବ ଗୁରୁ ଦିବସର ଅନୁଚିନ୍ତା ।

---

ସ୍ୱତନ୍ତ୍ର ଭୂ-ଅର୍ଜନ କାର୍ଯ୍ୟାଳୟ
ରେଙ୍ଗାଳି ଦକ୍ଷିଣ କେନାଲ ସିଷ୍ଟମ୍, ଢେଙ୍କାନାଳ

# ଗବେଷକ ଓ ଐତିହାସିକ ଡକ୍ଟର ଜଗନ୍ନାଥ ପଟ୍ଟନାୟକ

ଅପୂର୍ବ ରଂଜନ ରାୟ

ଆଜି ଇତିହାସର ଗବେଷକମାନଙ୍କ ଚିନ୍ତାଧାରା ମନକୁ ଆସିଲେ ଓଡ଼ିଶାରେ ଏ କ୍ଷେତ୍ରରେ ବିଶେଷ ଅନୁଶୀଳନ ହୋଇ ନଥିବା ମନେ ହୁଏ । ଇତିହାସ ଅଧ୍ୟାପନା ତଥା ଅଧ୍ୟାପନାକୁ ବୃତ୍ତି ଭାବରେ ଗ୍ରହଣ କରିବା ସୁଲଭ ମନେ ହେଉଥିବା ବେଳେ ଏହାକୁ ଜୀବନ ଭାବେ ପ୍ରବୃତ୍ତି ରୂପରେ ଗ୍ରହଣ କରିବା ସେତେ ସହଜ ହୁଏ ନାହିଁ । ଏ ଦିଗରେ ସବୁ ବିଷୟରେ ନିଷ୍ଠା, ଆଗ୍ରହ, ଉତ୍ସାହ ନିତାନ୍ତ ଆବଶ୍ୟକ ହୋଇଥାଏ । ଜଣେ ଗବେଷକ ହେବା ପାଇଁ ଗବେଷଣାକୁ ଜୀବନ ସହିତ ଜଡ଼ିତ କରି ନଦେଲେ ଗବେଷକର ସାଧନା ସାର୍ଥକ ହୁଏ ନାହିଁ । ଇତିହାସ ସହିତ ସାହିତ୍ୟ, ଦର୍ଶନ ଓ ଆଧ୍ୟାତ୍ମିକତାର ସମନ୍ୱୟ ସ୍ଥାପନ କରି ଜଣେ ଗବେଷକ ପଠନୀୟ କୃତିମାନ ଉପସ୍ଥାପନ କରିବା ଦିଗରେ ତାଙ୍କୁ କଳା କୌଶଳ ଜଣାଥିବା ଆବଶ୍ୟକ । ଏହା ନହେଲେ ପାଠକମାନଙ୍କୁ ତାଙ୍କ ଗବେଷଣା ଆକୃଷ୍ଟ କରେ ନାହିଁ । ସମ୍ଭବତଃ ଓଡ଼ିଶାରେ ଇତିହାସ ପ୍ରାଣ ଗବେଷଣା ପ୍ରିୟ ଜିଜ୍ଞାସୁ ପ୍ରଫେସର ଡକ୍ଟର ଜଗନ୍ନାଥ ପଟ୍ଟନାୟକ ଓଡ଼ିଆ ଭାଷାରେ ଅଧିକ ସଂଖ୍ୟକ ଇତିହାସଭିତ୍ତିକ ବିଭିନ୍ନ ପ୍ରକାର ତଥ୍ୟ ସମ୍ବଳିତ ସାହିତ୍ୟ ସୃଷ୍ଟି କରିବାକୁ ସକ୍ଷମ ହୋଇଥିଲେ ।

ଇତିହାସ ଅଧ୍ୟୟନ ଓ ଅଧ୍ୟାପନା ଏହା ଯେପରି ଅଧ୍ୟାୟୀ ଓ ଅଧ୍ୟାପକର ଉତ୍ସାହ ଉପରେ ନିର୍ଭର କରେ, ସେପରି ଗବେଷଣା ମଧ୍ୟ ଗବେଷକର ଆଗ୍ରହ ଓ ଅନୁସନ୍ଧିତ୍ସୁ ଉପରେ ନିର୍ଭରଶୀଳ । ଏହି ଅନୁସନ୍ଧିତ୍ସୁ ଭାବ ଗବେଷକଙ୍କୁ ଜିଜ୍ଞାସୁ କରିଥାଏ । ତେଣୁ ସମସ୍ତ ଅଧ୍ୟାପକ ଗବେଷକ ହୋଇପାରନ୍ତି ନାହିଁ । ଯେଉଁମାନଙ୍କଠାରେ କିଛି ଜାଣିବା ଓ ଗଭୀରକୁ ପ୍ରବେଶ କରିବାର ଆଗ୍ରହ ଥାଏ, ସେହିମାନେ ହିଁ କେବଳ ଗବେଷଣା କ୍ଷେତ୍ରରେ ନିଜକୁ ଉତ୍ସର୍ଗ କରିପାରନ୍ତି । ଏହି ଉତ୍ସର୍ଗୀକୃତ ଭାବ ଗବେଷକକୁ ଗବେଷଣା କ୍ଷେତ୍ରରେ ଯଶସ୍ୱୀ କରିଥାଏ । ଜଣେ ଇତିହାସର ଅଧ୍ୟାପକ ଭାବେ ଇତିହାସକୁ ଲୋକପ୍ରିୟ କରିବା ଦିଗରେ ଯେଉଁ ଉତ୍ସାହ ଥାଏ, ସେହି ଉତ୍ସାହ ପାଇଁ ଅତୀତ ଓ ବର୍ତ୍ତମାନ ସମୟରେ ଲୁକ୍କାୟିତ ଅମୂଲ୍ୟ ସମ୍ପଦର ଭିତ୍ତିଭୂମି ଜାଣି ତାର ଭୂମିକା ପ୍ରସ୍ତୁତ କରେ ଏବଂ ସେହି ଭୂମିକା ବସ୍ତୁ, ଅନେକ ଚରିତ୍ର ଓ ଘଟଣାର ପରିଚୟ ପାଇଁ ସୁଯୋଗ ସୃଷ୍ଟି କରେ । ପ୍ରଫେସର ଜଗନ୍ନାଥ ପଟ୍ଟନାୟକ ଏହି ଅନିସନ୍ଧିତ୍ସୁ ମନୋଭାବ ପାଇଁ ସେ ଗବେଷଣା କ୍ଷେତ୍ରରେ ନିଜକୁ ଉତ୍ସର୍ଗ କରିଥିଲେ । ବିଶେଷତଃ ଆଞ୍ଚଳିକ ଇତିହାସ ପ୍ରତି ତାଙ୍କର ଆଗ୍ରହ ଥିଲା ଯଥେଷ୍ଟ । ତେଣୁ ସେ ଆଞ୍ଚଳିକ ଇତିହାସର ଜଣେ ତଥ୍ୟନିଷ୍ଠ ଗବେଷକ ଭାବରେ ଉଲ୍ଲେଖନୀୟ ସ୍ୱାକ୍ଷର ରଖିଯାଇଛନ୍ତି ।

ପ୍ରଫେସର ପଟ୍ଟନାୟକ ୧୯୫୫ ମସିହାରେ ଇତିହାସରେ ସ୍ନାତକୋତ୍ତର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ଗବେଷଣା କ୍ଷେତ୍ରରେ ପ୍ରବେଶ କରିଥିଲେ । ଏହି ଗବେଷଣା ପ୍ରବୃତ୍ତି ଛାତ୍ରାବସ୍ଥାରୁ ରହିଥିଲା । ସେ ଯେତେବେଳେ ରେଭେନ୍‌ସା କଲେଜର ସ୍ନାତକୋତ୍ତର ଇତିହାସ ବିଭାଗରେ ଅଧ୍ୟାପକ ଭାବରେ ଯୋଗ ଦେଲେ ସେତେବେଳେ ଗବେଷଣା ଦିଗରେ ଅଧିକ ସୁଯୋଗ ଲାଭ କରି ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ଲାଗି ଉଦ୍ୟମଶୀଳ ହେଲେ । ତାଙ୍କର ପ୍ରଥମ ଗବେଷଣା ହେଉଛି ଇଂରେଜ ଶାସନ କାଳରେ ଓଡ଼ିଶାର ଗଡ଼ଜାତ ୧୮୦୩–୧୮୫୭ । ସେ ତାଙ୍କ ଗୁରୁ ପ୍ରଫେସର ଡକ୍ଟର ମନ୍ମଥ ନାଥ ଦାସଙ୍କ ତତ୍ତ୍ୱାବଧାନରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୮୭ରେ ଡି.ଲିଟ୍. ଉପାଧି ହାସଲ କରିଥିଲେ । ସେ ଗବେଷଣା କ୍ଷେତ୍ରରେ ନିଜକୁ ବହୁକାଳ ଧରି ନିଜକୁ ନିୟୋଜିତ କରିଥିଲେ । ଉଚ୍ଚତର ଉପାଧି ପାଇଁ ବ୍ୟଗ୍ର ନଥିଲେ । ଏହି ଉଦାସୀନତା ତାଙ୍କୁ ଏ କ୍ଷେତ୍ରରେ ଅଧିକରୁ ଅଧିକ ଆଗକୁ ଯିବା ପାଇଁ ଓ ଅନେକ ଅନାଲୋଚିତ ବିଷୟ ସମ୍ପର୍କରେ ଜାଣିବା ଲାଗି ସୁଯୋଗ ସୃଷ୍ଟି କରିଥିଲା । ସେ




ଇଂରାଜୀ ଓ ଓଡ଼ିଆ ଭାଷାରେ ବହୁ ସଂଖ୍ୟକ ପାଠ୍ୟ ପୁସ୍ତକ ରଚନା କରି ଇତିହାସର ଛାତ୍ରଛାତ୍ରୀ ଓ ଅଧ୍ୟାପକ ଅଧ୍ୟାପିକାମାନଙ୍କ ହାତରେ ଅର୍ପଣ କରିଛନ୍ତି । ତାଙ୍କ ଇତିହାସ ପାଠ୍ୟପୁସ୍ତକ ଅତ୍ୟନ୍ତ ସରଳ ଭାଷାରେ ତଥା ତଥ୍ୟ ସମ୍ବଳିତ ହୋଇଥିବାରୁ ତାହା ଛାତ୍ର ମହଲରେ ବିଶେଷ ଆଦୃତ ହୋଇଥାଏ । ୧୯୬୨ରେ ପ୍ରକାଶିତ ତାଙ୍କ World History, ୧୯୬୯ରେ ପ୍ରକାଶିତ History of England, ୧୯୭୧ରେ British Rule in India ପୁସ୍ତକଗୁଡ଼ିକ ଏ ପର୍ଯ୍ୟନ୍ତ ୪୦ରୁ ଅଧିକ ସଂସ୍କରଣ ହୋଇ ଗଲାଣି । ହରିଆନା ଓ ବଙ୍ଗଳା ଦେଶରେ ମଧ୍ୟ ଏହି ପୁସ୍ତକଗୁଡ଼ିକ ପାଠ୍ୟପୁସ୍ତକ ରୂପେ ମନୋନୀତ ହୋଇଛି । ଏକଥା କହିବାରେ ଦ୍ୱିଧା ନାହିଁ ଯେ, ତାଙ୍କ ଶିକ୍ଷକ ପ୍ରଫେସର ଡକ୍ଟର ମନ୍ମଥ ନାଥ ଦାସ, ଭି.ଡି. ମହାଜନ ଓ ଏଲ୍. ମୁଖାର୍ଜୀ ପ୍ରମୁଖ ଇତିହାସ ପାଠ୍ୟ ପୁସ୍ତକ ରଚୟିତାମାନଙ୍କଠାରୁ ଡକ୍ଟର ପଟ୍ଟନାୟକ ଅଧିକ ଲୋକପ୍ରିୟତା ଅର୍ଜନ କରିଛନ୍ତି । ସେ ମୋଟ୍ ୪୧ଗୋଟି ପାଠ୍ୟ ପୁସ୍ତକ ରଚନା କରିଥିଲେ ହେଁ, ଭାରତ ଇତିହାସକୁ ଆଧାର କରି ୨୪ଗୋଟି ପୁସ୍ତକ ରଚିତ ହୋଇଛି । ତାଙ୍କର ଗବେଷଣା ପୁସ୍ତକ Feudatory states of Orissa (୧୮୦୩-୧୮୫୭) ଗଡ଼ଜାତ ଶାସନ ସମ୍ପର୍କରେ ତଥ୍ୟମୂଳକ ଅନେକ ଧ୍ୟାନ ଧାରଣା ଦେଇଥାଏ । Land marks of quit India movement in Orissa ଗବେଷଣାତ୍ମକ ଗ୍ରନ୍ଥଟି ଶହ ଶହ ବର୍ଷର ଇଂରେଜ ଶାସନ ବିରୋଧରେ ଭାରତରେ ମୁଣ୍ଡ ଟେକିଥିବା ଭାରତଛାଡ଼ ଆନ୍ଦୋଳନର ଏକ ଜୀବନ୍ତ ଇତିହାସ । ସେ ସବୁବେଳେ ମନେ ରଖୁଥିଲେ – History is a nobel subject. It is not confind to any one country or one period. It has began with a very appearance of man on the earth. It is still on the earth, it is still on its move and nobody knows when it will end. ଏହାକୁ ସେ ଜୀବନରେ ଗ୍ରହଣ କରି ଗବେଷଣା କ୍ଷେତ୍ରରେ କଲମ ଧରିଥିଲେ । ସେ ୨୯୦ଟି ଓଡ଼ିଆ ଭାଷାରେ ରଚିତ ଇତିହାସ ସମ୍ବଳିତ ଗବେଷଣାତ୍ମକ ପ୍ରବନ୍ଧ ସୃଷ୍ଟି କରିଛନ୍ତି । ଅନେକ ଚରିତ୍ର, ଯେଉଁମାନେ ଇତିହାସରେ ସ୍ମରଣୀୟ ସେମାନଙ୍କ ସମ୍ପର୍କରେ ସେ ଗବେଷଣା କରି ସେହି ବରପୁତ୍ରମାନଙ୍କୁ ଲୋକଲୋଚନକୁ ଆଣିଛନ୍ତି । ଯଥା– ଚାଖି ଖୁଣ୍ଟିଆ, ବୀର ସୁରେନ୍ଦ୍ର ସାଏ, ଲକ୍ଷ୍ମଣ ନାଏକ, କୃଷ୍ଣଚନ୍ଦ୍ର ଗଜପତି, ଗୌରୀଶଙ୍କର ରାୟ, ଇରମ ଗୁଳିକାଣ୍ଡର ବିରୋଧୀ ଯୋଦ୍ଧା କମଳା ପ୍ରସାଦ କର ଓ ଗୌରାଙ୍ଗ ଚନ୍ଦ୍ର ମହାନ୍ତି ପ୍ରମୁଖଙ୍କୁ ସେ ଅଧିକ ପରିଚିତ କରିବା ଲାଗି ସେମାନଙ୍କ ଜୀବନୀ ଓ କୃତିତ୍ୱକୁ ଅନୁଧ୍ୟାନ କରିଥିଲେ । ଐତିହାସିକ ରାଇବଣିଆ ଦୁର୍ଗ, ଶିଶୁପାଳ ଗଡ଼, କୋଣାର୍କ, ଲିଙ୍ଗରାଜ ମନ୍ଦିର ପ୍ରଭୃତି ତାଙ୍କ ଗବେଷଣା ପରିସରକୁ ଆସିଥାଆନ୍ତି । ସେ ୪୨ଗୋଟି ଇଂରାଜୀ ଭାଷାରେ ଗବେଷଣାମୂଳକ ପ୍ରବନ୍ଧ ରଚନା କରି ଓଡ଼ିଶା ତଥା ଜାତୀୟ ସ୍ତରର ପତ୍ରପତ୍ରିକାଗୁଡ଼ିକରେ ପ୍ରକାଶ କରିଛନ୍ତି ।

ଏହି ଗବେଷଣା କାର୍ଯ୍ୟ ବୁଦ୍ଧିଜୀବୀ, ଐତିହାସିକ ଓ ଗବେଷକମାନଙ୍କ ଦ୍ୱାରା ଆଦୃତ ହେବାରୁ ସେ ଏ ଦିଗରେ ଅଧିକ ଉତ୍ସାହିତ ହୋଇ ବିଭିନ୍ନ ବିଷୟରେ ଐତିହାସିକ ଦୃଷ୍ଟିରୁ ଗବେଷଣା ଆରମ୍ଭ କଲେ । ଏସବୁ ଗବେଷଣା ନିବନ୍ଧ ବିଭିନ୍ନ ପତ୍ର-ପତ୍ରିକାରେ ପ୍ରକାଶ ପାଇ ସୁଧୀସମାଜର ଆଦର ଲାଭ କଲା । ତାଙ୍କ ନିବନ୍ଧ ମାନ ଅନେକ ପ୍ରବନ୍ଧ ସଂକଳନରେ ମଧ୍ୟ ସ୍ଥାନିତ ହୋଇଛି । ବିଶେଷତଃ THe proceedings of Indian History congress', 'History congress of Orissa', 'Orissa Review', 'The souvenir of the Biswa Oriya Sammilani Smaraki Grantha' I 'The thousand years of Cuttack' Volume-1&2 ପ୍ରଭୃତି ଗ୍ରନ୍ଥରେ ପ୍ରକାଶ ପାଇଛି । ଏହା ସହିତ ଓଡ଼ିଶା ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ପ୍ରକାଶିତ ଗ୍ରନ୍ଥSome aspects of freedom movement in orissa' and 'Economic history of orissa' ପ୍ରଭୃତିରେ ଡକ୍ଟର ପଟ୍ଟନାୟକଙ୍କ ଗବେଶାତ୍ମକ ନିବନ୍ଧମାନ ପ୍ରକାଶିତ ହୋଇଛି ।

ଓଡ଼ିଆ ଓ ଇଂରାଜୀ ଭାଷାରେ ସେ ପ୍ରବୀଣ ଥିବାରୁ ଦୁଇଟି ଭାଷାରେ ଗବେଷଣା-ନିବନ୍ଧଗୁଡ଼ିକ ପ୍ରସ୍ତୁତ କରିପାରନ୍ତି । ସେ ଯେପରି ଆଞ୍ଚଳିକ ଇତିହାସ ଉପରେ ଆଲୋକପାତ କରିପାରନ୍ତି, ସେପରି ମଧ୍ୟ ଅନ୍ୟାନ୍ୟ ବିଷୟରେ ଗଭୀର ତର୍ଜମା କରିବାକୁ ସକ୍ଷମ ହୁଅନ୍ତି । କେତେଗୁଡ଼ିଏ ପୁସ୍ତକ ରଚନା କରିଛନ୍ତି, ଯାହାସବୁ ସାଧାରଣ ପାଠକ ଓ ଗବେଷକମାନଙ୍କ ପାଇଁ ଉପାଦେୟ ହୋଇଥାଏ । ଏହିପରି ପୁସ୍ତକରୁ କେତୋଟି ହେଲା – 'The world History', 'History of England', 'A short History of the modern world', 'History of Ancient India', History of medieval India', 'History of the British Rule in India: A select study'.

'ରକ୍ତତୀର୍ଥ ଇରମ' ତାଙ୍କର ଦୁର୍ଲଭ ସୃଷ୍ଟି । ଏହି ପୁସ୍ତକଟି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛି । ପୁରସ୍କାର ଏଥିଲାଗି ଯଥେଷ୍ଟ ନୁହେଁ– ସୃଷ୍ଟିଟି ଯେପରି ତଥ୍ୟ ସମ୍ବଳିତ ହୋଇଛି, ତାହା ଯୁଗ ଯୁଗ ପାଇଁ ଅମଳିନ କୀର୍ତ୍ତି । ଏହି ଗ୍ରନ୍ଥ ପୂର୍ବରୁ ଛୋଟ ପୁସ୍ତକଟିଏ ସୁଧାକର ଦାସଙ୍କ ଦ୍ୱାରା ରଚିତ ହୋଇଥିଲା । ମାତ୍ର ଏଥିରେ ଡକ୍ଟର ପଟ୍ଟନାୟକ ଯେପରି ଗବେଷକ ଓ ଐତିହାସିକ ଦୃଷ୍ଟି ନେଇ ଆଲୋଚନା କରିଛନ୍ତି, ତାହା ଅନନ୍ୟ । ଡକ୍ଟର ହରେକୃଷ୍ଣ ମହତାବ କହିଛନ୍ତି– 'ଅଧ୍ୟାପକ ଜଗନ୍ନାଥ





ପଟ୍ଟନାୟକ ଯଥାସମ୍ଭବ ଅନୁସଂଧାନ କରି ୧୯୪୨ ସମୟର ସ୍ୱାଧୀନତା ସଂଗ୍ରାମରେ ଇରମର ଭୂମିକାର ବିବରଣୀ ପ୍ରକାଶ କରିଛନ୍ତି। ଇରମ ଘଟଣା ବାସ୍ତବିକ ରକ୍ତତୀର୍ଥ। ସେ ସମୟ କର୍ମୀମାନଙ୍କର ବୃତ୍ତାନ୍ତ ଦେଇ ଅଧ୍ୟାପକ ପଟ୍ଟନାୟକ ସେମାନଙ୍କର ସ୍ମୃତି ରକ୍ଷା କରିଛନ୍ତି।' ଆଞ୍ଚଳିକ ଇତିହାସରେ ଲୁକ୍‌କାୟିତ ବିଭବକୁ ଆଲୋକିତ କରିବା, ଐତିହାସିକଙ୍କ କାର୍ଯ୍ୟ। ଏ ଦିଗରେ ଡକ୍ଟର ପଟ୍ଟନାୟକ ଆଜୀବନ କାର୍ଯ୍ୟ କରିଛନ୍ତି। ଇରମ ହେଉଛି 'ଦ୍ୱିତୀୟ ଜାଲିଆନାୱାଲାବାଗ' ବା 'ମିନି ଜାଲିଆନାୱାଲାବାଗ'ର ଜ୍ୱଳନ୍ତ ଉଦାହରଣ।। ୧୯୧୯ ମସିହା ଅପ୍ରେଲ ୧୩ ତାରିଖରେ ଏଠାରେ ଯେଉଁ ମର୍ମନ୍ତୁଦ ଦୁର୍ଘଟଣା ଘଟିଥିଲା, ତାହା ବିଶ୍ୱ ଇତିହାସରେ ଅନ୍ୟତମ ରୋମାଞ୍ଚକର ଘଟଣା। ସେଦିନ ଥିଲା ବୈଶାଖୀ ପର୍ବ। ଜାଲିଆନାୱାଲାବାଗଠାରେ ବହୁ ଜନସମାଗମ ହୋଇଥାଏ। ଦିନ ୪ଟା୩୦ ମିନିଟ୍ ସମୟରେ ଜେନେରାଲ ଡାୟାର ଲୋକମାନଙ୍କୁ ହତ୍ୟା କରିବା ଉଦ୍ଦେଶ୍ୟରେ ୧୫୦ଜଣ ସୈନ୍ୟଙ୍କୁ ସାଥୀରେ ନେଲେ। ସେହି ବାଗକୁ ଯିବା ପାଇଁ ଓ ଆସିବା ପାଇଁ ମାତ୍ର ଥାଏ ଗୋଟାଏ ଫାଟକ। କୌଶଳକ୍ରମେ ଜେନେରାଲ ଡାୟାରଙ୍କ ନେତୃତ୍ୱରେ ସେହି ଫାଟକ ବନ୍ଦ କରି ଦିଆଗଲା। ଭିତରେ ଥିବା ଲୋକମାନେ ବାହାରକୁ ଆସିବା ପାଇଁ ବାଟ ପାଇଲେ ନାହିଁ। ଗୁଳିଚାଳନା ଆରମ୍ଭ ହେଲା। ଲୋକମାନେ ଗୁଳିମାଡ଼ ଖାଇ ଚିତ୍କାର କଲେ ସିନା, ବାହାରକୁ ଚାଲି ଆସିବାର ଆଉ ଉପାୟ ନଥାଏ। ୩୭୯ ଜଣ ସେଇଠି ପ୍ରାଣ ହରାଇଥିବା କୁହାଗଲାବେଳେ, ମହାତ୍ମା ଗାନ୍ଧୀ ଅନୁସନ୍ଧାନରୁ ଜାଣିପାରି ଥିଲେ ଯେ, ମୃତ୍ୟୁ ସଂଖ୍ୟା ୩୭୯ ଠାରୁ ଆହୁରି ଅଧିକ। ୧୨୦୦ଜଣ ଗୁଳିଚୋଟରେ କ୍ଷତବିକ୍ଷତ ହୋଇଥିବା ସରକାର ରିପୋର୍ଟ ଦେବାବେଳେ, ମହାତ୍ମା ଗାନ୍ଧୀ ଏହାକୁ ଅସ୍ୱୀକାର କରି କହିଲେ, 'ଇଂରେଜ ପୋଲିସ ଆକ୍ରମଣରେ ଆହୁରି ଯଥେଷ୍ଟ ଅଧିକ ସଂଖ୍ୟକ ଲୋକ ଆହତ ହୋଇଛନ୍ତି।' ଏପରି ବୀଭତ୍ସ ନାରକୀୟ ହତ୍ୟାକାଣ୍ଡ ସ୍ୱାଧୀନତା ସଂଗ୍ରାମକୁ ଅଧିକ ସକ୍ରିୟ କରି ପକାଇଥିଲା । ଏହି ସମୟରେ ଭାରତୀୟମାନଙ୍କ ପ୍ରତି ଏପରି ଜଘନ୍ୟ ହତ୍ୟାକାଣ୍ଡ ଘଟାଇଥିବା ଇଂରେଜ ସରକାରଙ୍କ ପ୍ରଦତ୍ତ Knight hood (ରାଜକୀୟ ସମ୍ମାନ) ନୋବେଲ ପୁରସ୍କାର ପ୍ରାପ୍ତ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଗ୍ରହଣ କରିପାରିଲେ ନାହିଁ। ଆଖି ଛଳଛଳ କରି ନିଜ ମନ୍ତବ୍ୟରେ କହିଲେ 'ଯେଉଁ ସରକାର, ମୋ ଭାରତୀୟମାନଙ୍କୁ ବିନା କାରଣରେ ଗୁଳିରେ ହତ୍ୟା କରିଛି, ସେହି ସରକାରଙ୍କଠାରୁ ସମ୍ମାନ ଗ୍ରହଣ ନ୍ୟାୟୋଚିତ ହେବନାହିଁ।' ଭାଇସରାୟ ପରିଷଦରେ ସଭ୍ୟ ମଣ୍ଡନ କରିଥିବା ସାର ଶଙ୍କରନ ନାୟାର ପଦବୀରୁ ଇସ୍ତଫା ଦେଇଥିଲେ। ସେ ତାଙ୍କ ମତାମତ ଦେଇ କହିଲେ-ଯେଉଁ ସରକାର ଦେଶବାସୀଙ୍କୁ ବିନା କାରଣରେ ଆଖି ପିଛୁଳାକେ ମାରିଦେଇ ପାରେ, ସେହି ସରକାରଙ୍କ ନିକଟରେ ସଭ୍ୟଭାବେ ରହିବା ବିବେକ ବିରୋଧୀ। ମହାତ୍ମା ଗାନ୍ଧୀ ଆହୁରି ଦୁଃଖର ସହିତ ପ୍ରକାଶ କଲେ ପଲାସୀ ଯୁଦ୍ଧ ଯେଉଁ ଇଂରେଜ ସରକାରଙ୍କ ମୂଳଦୁଆ ଭାରତବର୍ଷରେ ପ୍ରତିଷ୍ଠା କରିଥିଲା, ଅମୃତସର (ଜାଲିଆନାୱାଲାବାଗ) ହତ୍ୟାକାଣ୍ଡ ସେହି ମୂଳଦୁଆକୁ ଦୋହଲାଇ ଦେଲା। ସି.ଏଫ.ଏଣ୍ଡ୍ରୁଜ୍ ଏହାର ନିନ୍ଦା କରି ମତ ଦେଇଥିଲେ It is a cold and calculated massacre, an unspeakable disgace undefensible unpandonable and unexcusable ତାଙ୍କ ଉକ୍ତି ଥିଲା। – ଏପରି ଘଟଣା ସୁପରିକଳ୍ପିତ ଏବଂ ଏହାକୁ କ୍ଷମା କରାଯାଇ ନପାରେ। ଏପରି ମର୍ମନ୍ତୁଦ ଦୁର୍ଘଟଣାର ଅନୁସନ୍ଧାନ କରାଯାଇଥିଲା। ଇଂରେଜ ସରକାରଙ୍କ ପକ୍ଷରୁ ଏଥିପାଇଁ ଏକ କମିଶନ ବସିଥିଲା। ଏହାର ଅଧ୍ୟକ୍ଷ ଥିଲେ ହଣ୍ଟର। ଜେନେରାଲ ଡାୟାରଙ୍କୁ ଏପରି ମର୍ମନ୍ତୁଦ ହତ୍ୟା ଘଟଣା ପାଇଁ କମିଶନ ଦାୟୀ କରି ନିନ୍ଦା କରିଥିଲା। କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ବ୍ରିଟିଶ ସରକାରଙ୍କ ପକ୍ଷରୁ ଏପରି କାର୍ଯ୍ୟ ପାଇଁ ଡାୟାର ପୁରସ୍କାର ସ୍ୱରୂପ ୨୬୦୦୦ ପାଉଣ୍ଡ ପାଇଥିଲେ। କମିଶନ ତାଙ୍କ କାର୍ଯ୍ୟକୁ ନିନ୍ଦା କରିଥିଲେ ହେଁ ସେ ଏଥିପାଇଁ ଅନୁତପ୍ତ ନଥିଲେ। ବରଂ ଏଥିପାଇଁ ଗର୍ବ ଅନୁଭବ କରି କହିଥିଲେ – My object was to shoot well and shoot strong so that I or anybody else should not have to shoot again and I wanted to crush the morale of the people."

ସେହିପରି ଏକ ନାରକୀୟ କାଣ୍ଡ ୧୯୪୨ ମସିହା ସେପ୍ଟେମ୍ବର ୨୮ ତାରିଖରେ ଇରମଠାରେ ଘଟିଥିଲା। ଜଣେ ମହିଳା ପରିବେଷ୍ଟିତ ଏହି ଗୁଳିକାଣ୍ଡରେ ପ୍ରାଣ ହରାଇଥିଲେ। ସମ୍ଭବତଃ ଭାରତବର୍ଷର ଏ ହେଉଛନ୍ତି ପ୍ରଥମ ମହିଳା, ଯିଏ ସ୍ୱାଧୀନତା ସଂଗ୍ରାମରେ ପ୍ରାଣବଳି ଦେଇଥିଲେ-୨୯ଜଣ ଘଟଣା ସ୍ଥଳରେ ପ୍ରାଣ ହରାଇଥିଲେ। ୫୬ ଜଣ ଆହତ ହେଲେ। ଭାରତବର୍ଷରେ ଏହି ଘଟଣା ପୂର୍ବରୁ ମାତ୍ର ଜାଲିଆନାୱାଲାବାଗ (ଅମୃତସର) ହତ୍ୟାକାଣ୍ଡ ଘଟିଯାଇଥିଲା । ଗବେଷକ ଜଗନ୍ନାଥ ଏହି ପ୍ରସଙ୍ଗରେ ଅନୁସନ୍ଧାନ କରି କହିଛନ୍ତି– ଜାଲିଆନାୱାଲାବାଗଠାରେ ସମବେତ ଜନତା ଗୁଳି ଚାଳନା ହେବ ବୋଲି ନଜାଣି ସେଠାରେ ଉପସ୍ଥିତ ହୋଇଥିଲେ। ମାତ୍ର ଇରମରେ ଗୁଳି ଚାଳନାର ପ୍ରଥମ ପର୍ଯ୍ୟାୟ ପରେ, ପୁନରାୟ ଗୁଳି ଚାଳନା ହେବ ବୋଲି ସତ୍ୟାଗ୍ରହୀମାନେ ସ୍ପଷ୍ଟଭାବେ ଜାଣିଶୁଣି ମଧ୍ୟ 'ମରିବୁ ପଛେ, ଡରିବୁ ନାହିଁ' ପ୍ରତିଜ୍ଞା ପାଳନ ପୂର୍ବକ ସେମାନଙ୍କ ମଧ୍ୟରୁ ଅଧିକାଂଶ ପଳାୟନ କରି ନଥିଲେ। ରକ୍ତତୀର୍ଥ ଇରମ, ଏହାର ଏପରି ଗୁରୁତ୍ୱ ଥିବାବେଳେ,



ଭାରତର ମୁକ୍ତିସଂଗ୍ରାମ ଇତିହାସରେ ଇରମକୁ ସେପରି ସ୍ୱତନ୍ତ୍ର ସ୍ଥାନ ଦିଆଯାଇ ନଥିଲା । ଐତିହାସିକମାନେ ଏଥିପ୍ରତି ବିମୁଖ କାହିଁକି ହୋଇଥିଲେ, ତାହା ଜଣାଯାଏ ନାହିଁ। ଏହା ଇତିହାସ ପ୍ରତି ଏକ ଅବମାନନା ହୋଇଥିଲେ ହେଁ, ଐତିହାସିକମାନେ ନିରବ ରହିଥିଲେ। ଅବଶ୍ୟ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ ଓ ଶିକ୍ଷକ ସୁଧାକର ଦାସ ସ୍ୱାଧୀନତାର ସଂଗ୍ରାମ ଭୂମି ଇରମ ଗ୍ରନ୍ଥ ରଚନା କରି କିଛି ତଥ୍ୟ ଆଲୋକକୁ ଆଣିଥିଲେ। ତେବେ ଡକ୍ଟର ପଟ୍ଟନାୟକ ଲୁକ୍କାୟିତ ବହୁ ତଥ୍ୟ ସମ୍ବଳିତ ଇରମ ଉପରେ ଗବେଷଣାତ୍ମକ ଗ୍ରନ୍ଥ ରକ୍ତତୀର୍ଥ ଇରମ ରଚନା କରି ତାଙ୍କ ଗବେଷକ ମନର ପରିଚୟ ଦେଇଛନ୍ତି।

ଇତିହାସ ସବୁବେଳେ ସତ୍ୟାଶ୍ରୟୀ। ଏଥିପାଇଁ ଗବେଷକ ଡକ୍ଟର ପଟ୍ଟନାୟକଙ୍କୁ କେତେକ ସ୍ଥାନରେ ଅପମାନିତ ହେବାକୁ ପଡ଼ିଛି। ତଥାପି ସେ ଭୟଭୀତ ହୋଇ ନାହାନ୍ତି। ସତ୍ୟକୁ ଆଲୋକକୁ ଆଣିବା ପାଇଁ ଜୀବିତ ସହିଦ ପରିବାରର ଦାୟାଦମାନଙ୍କଠାରୁ ସାକ୍ଷାତକାର ଆଣିଛନ୍ତି। ସହିଦମାନଙ୍କ ବ୍ୟକ୍ତିଗତ ଡାଏରୀରୁ ତଥ୍ୟ ସଂଗ୍ରହ କରିଛନ୍ତି। ତତ୍କାଳୀନ ଇଂରେଜ ସରକାରଙ୍କ ରିପୋର୍ଟକୁ ତନ୍ନ ତନ୍ନ କରି ବିଶ୍ଳେଷଣ କରିଛନ୍ତି। ଏହି ଗ୍ରନ୍ଥ ରଚନା କରିବା ପାଇଁ ତାଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ହୋଇଛି। ଗବେଷକ ଡକ୍ଟର ପଟ୍ଟନାୟକଙ୍କ ଗବେଷଣା ଉପରେ ପ୍ରଫେସର ଡକ୍ଟର ମନ୍ମଥ ନାଥ ଦାସ ମତ ଦେଇଥିଲେ– ଭାରତର ଅନ୍ୟ ଅଞ୍ଚଳ ତୁଳନାରେ ଓଡ଼ିଶାରେ ସଂଘଟିତ ଘଟଣାମାନ ଆଧୁନିକ ଇତିହାସରେ ଯଥାଯୋଗ୍ୟ ସ୍ଥାନ ପାଇପାରି ନାହିଁ । କାରଣ ପ୍ରତ୍ୟେକ ଘଟଣାକୁ କେନ୍ଦ୍ର କରି ତା' ଉପରେ ଯଥାର୍ଥ ଐତିହାସିକ ଗବେଷଣା ହୋଇ ନାହିଁ। ଏ ଦୃଷ୍ଟିରୁ ଐତିହାସିକ ଡକ୍ଟର ଜଗନ୍ନାଥ ପଟ୍ଟନାୟକଙ୍କ ଗବେଷଣା ପ୍ରସୂତ ଏହି ପୁସ୍ତକଟି, ବାସ୍ତବ ପକ୍ଷେ ମହାର୍ଘ ବିପ୍ଲବର ପୃଷ୍ଠଭୂମିରେ ଇରମ ହତ୍ୟାକାଣ୍ଡର ଇତିହାସ ଆବିଷ୍କାର କରିବା ପାଇଁ ଅଧ୍ୟାପକ ପଟ୍ଟନାୟକଙ୍କୁ ଯଥେଷ୍ଟ ଅଧ୍ୟବସାୟ କରିବାକୁ ହୋଇଛି। E.H.Carrଙ୍କ ଭାଷାରେ The historian, before he begins to write history, is the product of history."(What is history p-40) ଇତିହାସର ଦୁଇଟି କାର୍ଯ୍ୟ–ବର୍ତ୍ତମାନ ଆଲୋକିତ ହେବ ଏବଂ ବର୍ତ୍ତମାନର ଭିତ୍ତିଭୂମିରୁ ଅତୀତକୁ ଅନୁସନ୍ଧାନ କରିହେବ ।

ପ୍ରତ୍ୟେକ ଐତିହାସିକ ସତ୍ୟ ଓ ବାସ୍ତବତା ଉପରେ ନିଜର ଆଭିମୁଖ୍ୟ ଉପସ୍ଥାପନ କରିଥାଆନ୍ତି। କାରଣ ହିଁ ସବୁ ଘଟଣାର ମୂଳ–ଭିତ୍ତିଭୂମି। କାରଣ ନଥାଇ ଘଟଣା ନାହିଁ, କି କାର୍ଯ୍ୟ ହୁଏନାହିଁ। ଗବେଷକ ସବୁବେଳେ ଧ୍ୟାନ ଦେବା ଉଚିତ୍। ଯେଉଁମାନେ ଘଟଣା ସହିତ ସଂପୃକ୍ତ, ସେମାନେ ହେଉଛନ୍ତି ବାସ୍ତବରେ ସଂଘଟିତ ଦୃଶ୍ୟ ପାଇଁ ଦାୟୀ। ସେମାନଙ୍କୁ ପଥ–ଦର୍ଶକ କୁହାଯାଇଥାଏ। ପରିସ୍ଥିତି ସହିତ ସତ୍ୟର ସମ୍ପର୍କ ଥାଏ– ଏହି ସତ୍ୟ ଉପରେ ଗବେଷକଙ୍କ ଗବେଷଣା ଗଢ଼ିଉଠେ। ଗବେଷକ ପଟ୍ଟନାୟକ ଏହି ସତ୍ୟକୁ କେବଳ ଦୃଷ୍ଟିଦେଇ ନାହାନ୍ତି, ଯେଉଁମାନେ ପଥଦର୍ଶକ ସେମାନଙ୍କୁ ମଧ୍ୟ ଗୁରୁତ୍ୱ ଦେଇଥାଆନ୍ତି। ପାରିପାର୍ଶ୍ୱିକ ପ୍ରମାଣଭିତ୍ତିରେ ସତ୍ୟ ଆବିଷ୍କାର କରାଯାଏ।

ପ୍ରଫେସର ପଟ୍ଟନାୟକ ରୁଚି ବଳରେ ଯେଉଁ ମାର୍ଗର ଯାତ୍ରୀ ହୋଇଥିଲେ, ତାହା ଅନ୍ଧକାର ପଥ । କିନ୍ତୁ ସେ ଅନ୍ଧକାର ପଥକୁ ଯିବା ଲାଗି ତାଙ୍କୁ ଆଲୋକିତ ପଥରେ ଗତି କରିବାକୁ ହୋଇଥିଲା। ଅନ୍ଧକାର ଭିତରେ ଯେଉଁ ଆଲୋକ ରହିଛି, ସେହି ନିଜସ୍ୱ ଆଲୋକରେ ଅନ୍ଧକାର ଭେଦ କରି ମାନବର କଲ୍ୟାଣ ପାଇଁ ଅନେକ ମାର୍ଗ ଉନ୍ମୋଚନ କରିଛନ୍ତି। ଅନ୍ୱେଷଣ ପ୍ରବୃତ୍ତି ତାଙ୍କୁ ଗଡ଼ଜାତ ଅଞ୍ଚଳର ଆଦିବାସୀ ସଂପ୍ରଦାୟ ଭିତରୁ 'ନରବଳୀ ମେରିଆର'ର କାହାଣୀ ସହିତ ପରିଚିତ କରିଛି । ଆର୍ଯ୍ୟ ହିନ୍ଦୁ ସଂପ୍ରଦାୟରେ ବହୁ ରାଜା ମହାରାଜା ମଧ୍ୟ ଏହି ଅମାନବୀୟ ଆଚରଣକୁ ଗ୍ରହଣ କରି ନେଇଥିଲେ। ଆରଣ୍ୟକ ଲୀଳା 'ସତୀଦାହ' ପ୍ରଥା ସଭ୍ୟ ସମାଜଠାରୁ ମଣିଷକୁ ଦୂରେଇ ରଖିଥିଲା। ତାର ମୂକସାକ୍ଷୀ ହେଉଛି ଇତିହାସ। ଡକ୍ଟର ପଟ୍ଟନାୟକ ଯେତେବେଳେ ଅଶ୍ଳୀଳ ଅତୀତକୁ ଅବଲୋକନ କରିଛନ୍ତି, ତା' ଭିତରେ କେତେ ଲୁହ ଲହୁର କାହାଣୀ ଭଙ୍ଗା ଗଢ଼ାର ଅଦମ୍ୟ ଲାଳସା ଏବଂ ଅଭିଳଷିତ ଅସମ୍ପୂର୍ଣ୍ଣ କୋଣାର୍କକୁ ପୂର୍ଣ୍ଣାଙ୍ଗ କରିବାର ଆଗ୍ରହୀମାନଙ୍କୁ ଭେଟିଛନ୍ତି। ବିଭିନ୍ନତାର ଏକତାର ସୂତ୍ର ଅନୁସନ୍ଧାନରେ ବ୍ରତୀ ଐତିହାସିକ ସାଂସ୍କୃତିକ ଜୀବନ ଲାଗି ପ୍ରେରଣାର ଅନନ୍ୟ ଉତ୍ସ। ଗଡ଼ଜାତର ସଂସ୍କୃତି ଓ ସଭ୍ୟତାକୁ ଭାରତର ମାନଚିତ୍ରରୁ ଭିନ୍ନ ଭିନ୍ନ କରି ବିଚାର କରାଯାଇ ନପାରେ, ଏହା ସେ ଉପଲବ୍ଧି କରିଛନ୍ତି। ଅଷ୍ଟମ ଶତାବ୍ଦୀର ଭୌମକର ଶାସକଙ୍କ ଶାସନଠାରୁ ଇଂରେଜ ଶାସନ ପର୍ଯ୍ୟନ୍ତ ଇତିହାସର ଦୀର୍ଘ ପଥର ଯାତ୍ରୀ ହୋଇଛନ୍ତି। ମୁଖ୍ୟତଃ ଅଭିଲେଖଗୁଡ଼ିକ ତାଙ୍କୁ ଏଥିରେ ସହାୟତା କରିଛି। ଗଙ୍ଗ ବଂଶର ସମ୍ରାଟ ତୃତୀୟ ଅନଙ୍ଗଭୀମ ଦେବ(୧୨୧୧–୧୨୩୮)୧୬ଟି ଗଡ଼ଜାତ ରାଜ୍ୟକୁ ସ୍ୱୀକୃତି ଦେଇଥିବା ତାଙ୍କ ଗବେଷଣା ଗ୍ରନ୍ଥରେ ଉଲ୍ଲେଖ ହୋଇଛି।

ପ୍ରଶାସକ ଐତିହାସିକ W.W. Hunter, G.Toynbee ଏବଂ John Beams ପ୍ରମୁଖ ସ୍ୱାଧୀନତା ପୂର୍ବରୁ ଓଡ଼ିଶା ଇତିହାସ ରଚନା କରି ମୂଲ୍ୟବାନ ତଥ୍ୟ ଦେଇଥିଲେ। ପରବର୍ତ୍ତୀ କାଳରେ ସ୍ୱାଧୀନତା ପରେ ଓଡ଼ିଶାର ଐତିହାସିକମାନେ ଏ ଦିଗରେ ଉଦ୍ୟମ





କରିଥିଲେ । ସେମାନଙ୍କ ଗବେଷଣା ବିଜ୍ଞାନଭିତ୍ତିକ । ଏହି ପ୍ରସଙ୍ଗରେ ଗବେଷକ ପଟ୍ଟନାୟକ ତାଙ୍କ ଦୁର୍ଲଭ ରଚନା ପାଇଁ ସ୍ମରଣୀୟ । କିଛି ତଥ୍ୟ ଆଲୋକକୁ ଆସି ନଥିବା ବେଳେ ଷ୍ଟାର୍ଲିଂ, ହଣ୍ଟର, ଟୟନବି ଓ ବୀମ୍ସ ଏପରିକି ଜୋନ୍ ରିଚାର୍ଡସନ, ହେନେରି ରିକେଟ୍ସ ଏବଂ ଏ.ଜେ.ଏମ୍.ମିଲ୍ସ ସେମାନଙ୍କ ବିବରଣୀରେ ଗଡ଼ଜାତ ବିଷୟରେ ସ୍ୱଳ୍ପ ମାତ୍ରାରେ ହେଲେ ବି ତଥ୍ୟମାନ ଦେଇଛନ୍ତି । ୧୮୭୯ ମସିହାରେ ଲୋକନାଥ ଘୋଷ ଏବଂ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ C.U. Aitchison ଏହା ଉପରେ କିଛି ଲେଖାଲେଖି କରିଥିଲେ । ଗଡ଼ଜାତ ରାଜ୍ୟର ପ୍ରଥମ ରାଜନୈତିକ ଏଜେଣ୍ଟ L.E.B. Cobden - Ramsay ବିଂଶ ଶତାବ୍ଦୀର ପ୍ରଥମ ଭାଗରେ 'ବେଙ୍ଗଲ୍ ଗେଜେଟିୟର'ରେ ଓଡ଼ିଶାର ୨୬ଟି ଗଡ଼ଜାତ ରାଜ୍ୟ ଉପରେ ଆଲୋଚନାରେ ଅନେକ ତଥ୍ୟ ପ୍ରକାଶ କରିଥିଲେ । ଏହିସବୁ ଉପାଦାନ ଭବିଷ୍ୟତ ଗବେଷକମାନଙ୍କୁ ଗବେଷଣା ପାଇଁ ସହାୟକ ହୋଇଥିଲା । ଏମାନଙ୍କ ତଥ୍ୟାବଳୀ ସଂଗ୍ରହ ଗଡ଼ଜାତ ସଂପର୍କରେ ପ୍ରାଥମିକ କାର୍ଯ୍ୟ । ପରବର୍ତ୍ତୀ ସମୟରେ B.C. Majumdar, K.C. Neogi ଏବଂ K.C. Panigrahi ପ୍ରମୁଖ ଆଉ କିଛି ଗଡ଼ଜାତର ତଥ୍ୟ ବାହାରକୁ ଆଣିଥିଲେ । ବିଂଶ ଶତାବ୍ଦୀରେ ଗବେଷକ ଭାବେ K.M. Patra, J.K. Samal, S.C. Patra, N.K. Jlt, ସଦାଶିବ ପ୍ରଧାନ, ପ୍ରସନ୍ନ କୁମାର ମିଶ୍ର, S.C. Padhy, D.M. Praharaj ଓ ସତ୍ୟଭାମା ପତି ପ୍ରମୁଖ ଅନ୍ଧକାର ମୂଳକ ଭିତରକୁ ପ୍ରବେଶ କରି ଅଞ୍ଚଳର ସୁଖଦୁଃଖ ଆଲୋକକୁ ଆଣିଥିଲେ । ବହୁ ଗବେଷକ ଏହା ଉପରେ ଲେଖନୀ ଚାଳନା କରିଥିଲେ ହେଁ, ଏହାର ରାଜନୀତିକ, ସାମାଜିକ, ଅର୍ଥନୀତିକ ଓ ସାଂସ୍କୃତିକ ଦିଗକୁ ବିଶେଷ ଭାବରେ ପ୍ରଫେସର ପଟ୍ଟନାୟକ ବିଶ୍ଳେଷଣ କରିଛନ୍ତି । ସେ ଯେପରି ଆଲୋଚନା କରିଛନ୍ତି, ତାହା ନିଶ୍ଚୟ ଇତିହାସରେ ଅନନ୍ୟ ପଦକ୍ଷେପ – ଭବିଷ୍ୟତର ଅଧିକ ଆଲୋକପାତ କରିବା ପାଇଁ ସେ ମଧ୍ୟ ସୁଯୋଗ ସୃଷ୍ଟି କରିଛନ୍ତି । ସେ ଏହାର ଶାସନଗତ ତ୍ରୁଟି ଦର୍ଶାଇବା ସହିତ କହିଛନ୍ତି –Internal administration of the feudatory states was conducted by their respective chiefs in accordance with the provisions of the sanads, which defined their status, position and power. What was true of one feudatory state was also true of most of them. The administrative system continued almost unaltered throughout the British rule in Orissa. ଏହା ସ୍ୱୀକାର କରିବାକୁ ହେବ ଯେ, ଆଧୁନିକ ଇତିହାସ ରଚନାରେ ତାଙ୍କ ଗବେଷଣାତ୍ମକ ଚିନ୍ତାଧାରା ବହୁ ସହାୟତା କରିଛି । ଜୀବଦ୍ଦଶାରେ ପ୍ରଫେସର ପଟ୍ଟନାୟକ ଚାରିଶହଟି ଲୋକପ୍ରିୟ ଇତିହାସଭିତ୍ତିକ ତଥ୍ୟ ସମ୍ବଳିତ ସାରସ୍ୱତ କୃତି ସୃଷ୍ଟି କରିପାରିଥିଲେ ଏବଂ ଏଗୁଡ଼ିକ ବିଜ୍ଞ ପାଠକଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିପାରିଥିଲା । ଏହା ସହିତ ୪୧ଟି ଗବେଷଣାତ୍ମକ ନିବନ୍ଧ ପ୍ରସ୍ତୁତ କରିବାକୁ ସକ୍ଷମ ହୋଇଥିଲେ । ଦଶଟି ଗବେଷଣାତ୍ମକ ଉଚ୍ଚକୋଟୀର ଗ୍ରନ୍ଥ ତାଙ୍କ ଦ୍ୱାରା ରଚିତ । ବାବନରୁ ଅଧିକ ଉପାଦେୟ ପାଠ୍ୟପୁସ୍ତକ ସେ ରଚନା କରିଥିଲେ । ଏହି ଗବେଷଣା ପ୍ରିୟ ଐତିହାସିକ ଭଦ୍ରକ ଜିଲ୍ଲାର ବାସୁଦେବପୁର ଅନ୍ତର୍ଗତ ରାଧାବଲ୍ଲଭପୁର ଠାରେ ୧୯୩୩ ମସିହା ମାର୍ଚ୍ଚ ମାସ ୧୫ ତାରିଖରେ ଜନ୍ମ ହୋଇଥିଲେ । ତାଙ୍କ ଦେହାନ୍ତ ହୁଏ ୨୦୦୩ ମସିହା ସେପ୍ଟେମ୍ବର ୨୩ ତାରିଖ ।

**ସହାୟକ ଗ୍ରନ୍ଥରାଜି**


୧. K.R.R. Sastry, Indian states, Allahabad-1941
୨. G. Macmunn, The indian states & princes, London, 1936
୩. Prof. J. Pattnayak : Feudatory states of orissa-1803-1857
୪. ରକ୍ତତୀର୍ଥ ଇରମ : ପ୍ରଫେସର ଜଗନ୍ନାଥ ପଟ୍ଟନାୟକ, ନାଳନ୍ଦା, ବିନୋଦବିହାରୀ, କଟକ–୨–୧୯୮୬
୫. The post modern History Reader, Keith Jenkins(Ed) London-1997
୬. E.H. Carr, What is history?
୭. History with a difference reflections on the works of Jagannath Patnaik(Ed) Prof. A.K. Pattnayak, Indian publishers & Distributions, Delhi-2007.
୮. ସାଂସ୍କୃତିକ ସମ୍ଭାର : ଭଦ୍ରକ ପୂଜ୍ୟପୂଜା ସଂସଦ
୯. ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ : ଡକ୍ଟର ଜଗନ୍ନାଥ ପଟ୍ଟନାୟକ, ବିଦ୍ୟାପୁରୀ, କଟକ–୨
୧୦. ଆଧୁନିକ ଓଡ଼ିଶାର ବରପୁତ୍ର : ଡକ୍ଟର ଜଗନ୍ନାଥ ପଟ୍ଟନାୟକ, ୨୦୦୫


ସଂପାଦକ, 'ସାଳନ୍ଦୀ ସମାଚାର',
ମଠସାହି, ଭଦ୍ରକ




# ଶ୍ରୀମନ୍ଦିରରେ ବାମନ ଜନ୍ମୋତ୍ସବ

**ପଣ୍ଡିତ ରାମକୃଷ୍ଣ ମିଶ୍ର**

ଛଳୟସୀ ବିକ୍ରମଣେ ବଳିମଦ୍ଭୁତ ବାମନ ।
ପଦନଖନୀରଜନିତଜନ ପାବନ ।
କେଶବ ! ଧୃତ ବାମନ ରୂପ ଜୟ ଜଗଦୀଶ ହରେ ।
(ଗୀତଗୋବିନ୍ଦ)

ପ୍ରଭୁ ଶ୍ରୀଜଗନ୍ନାଥ ସ୍ୱୟଂ ଅବତାରୀ ଓ ସମସ୍ତ ଅବତାର ତାଙ୍କର ସୃଷ୍ଟି । ଦଶାବତାର ମଧ୍ୟରେ ବାମନ ହେଉଛନ୍ତି ପଞ୍ଚମ ଅବତାର । ଶ୍ରୀମଦ୍ ଭାଗବତ ଅଷ୍ଟମ ସ୍କନ୍ଧରେ ବର୍ଣ୍ଣିତ ହୋଇଛି ଯେ, ପୂର୍ବେ ଦେବାସୁର ଯୁଦ୍ଧରେ ଦାନବ ରାଜ ବଳି ପରାସ୍ତ ହୋଇ ମୃତ୍ୟୁ ବରଣ କଲା । ଦାନବମାନଙ୍କ ଅନୁରୋଧରେ ଦାନବ ଗୁରୁ ଶୁକ୍ରାଚାର୍ଯ୍ୟ ମୃତସଞ୍ଜୀବନୀ ମନ୍ତ୍ରରେ ବଳିକୁ ଜୀବିତ କଲେ । ବୈରୋଚନ ପୁତ୍ର ଦାନବ ରାଜା ବଳି ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ପରାମର୍ଶକ୍ରମେ ଅଶ୍ୱମେଧ ମହାଯଜ୍ଞ ଆରମ୍ଭ କଲେ । ଯଜ୍ଞରୁ ଦିବ୍ୟ ସୁବର୍ଣ୍ଣ ଧନୁ, ତୂଣ ଓ ଅଭେଦ କବଚ ସହିତ ଏକ ସୁବର୍ଣ୍ଣ ସିଂହ ଧ୍ୱଜ ସୁବର୍ଣ୍ଣ ରଥ ବଳି ପ୍ରାପ୍ତ ହେଲେ । ପିତାମହ ପ୍ରହ୍ଲାଦ ଅମ୍ଳାନ ପଦ୍ମମାଳା ଗଳାରେ ପିନ୍ଧାଇଲେ ଓ ଭୃଗୁ ଶଙ୍ଖ ଦେଲେ । ବଳିର ସ୍ୱର୍ଗ ଆକ୍ରମଣରେ ଭୟ କରି ଇନ୍ଦ୍ର ଦେବଗୁରୁ ବୃହସ୍ପତିଙ୍କୁ ଜଣାଇଲେ । ବୃହସ୍ପତିଙ୍କ ପରାମର୍ଶରେ ଇନ୍ଦ୍ର ସ୍ୱର୍ଗପୁର ଛାଡ଼ି ନାରାୟଣଙ୍କ ଶରଣ ନେଲେ । ସେହି ରଥରେ ଦାନବ ରାଜ ବଳି ସ୍ୱର୍ଗ ବିଜୟ କରି ଇନ୍ଦ୍ର ଆସନରେ ବସିଲେ । ଏଥିରେ ଦୁଃଖିତ ହୋଇ ଦେବମାତା ଅଦିତି ସ୍ୱାମୀ କଶ୍ୟପଙ୍କୁ ଜଣାଇଲେ । କଶ୍ୟପ ଆରାଧନା କରି ବିଷ୍ଣୁଙ୍କୁ ତୋଷ କରିବା ପାଇଁ 'ପୟୋବ୍ରତ' କରିବାକୁ ଉପଦେଶ ଦେଇ ବ୍ରତର ବିଧାନମାନ କହିଲେ । ଏହାଦ୍ୱାରା ବିଷ୍ଣୁ ତୋଷ ହୋଇ ଅଦିତିଙ୍କ ଉଦରରେ ପୁତ୍ର ରୂପେ ଜନ୍ମ ହୋଇ ଦାନ ଛଳରେ ବଳିର ଗର୍ବ ଖର୍ବ କରିବେ ଏବଂ ଇନ୍ଦ୍ରଙ୍କୁ ରାଜ୍ୟ ପ୍ରାପ୍ତ ହେବ ବୋଲି କହିଲେ । କଶ୍ୟପ କହିଲେ –

'ଫାଲଗୁନ – ଶୁକ୍ଳପକ୍ଷ – ଯୁତେ ।
ଦ୍ୱାଦଶ ଦିନ ପୟୋବ୍ରତେ ।।' (ଭାଗବତ)

'ଅଦିତି ପୟୋବ୍ରତ ତୋଷେ ।
ବିଷ୍ଣୁ ମିଳିଲେ ତା'ର ପାଶେ ।।' (ଭାଗବତ)

ଅଦିତିଙ୍କ ବ୍ରତରେ ତୋଷ ହୋଇ ନୀଳଘନ କାନ୍ତି, ପୀତବସନ ପରିଧାନ, ଆଜାନୁଲମ୍ବ ଚାରିଭୁଜରେ ଗଦା, ପଦ୍ମ, ଶଙ୍ଖ, ଚକ୍ର ସହିତ ଭଗବାନ ବିଷ୍ଣୁ ତାଙ୍କ ନିକଟରେ ଆବିର୍ଭାବ ହେଲେ । ଅଦିତି ପଦ୍ମପାଦରେ ଶିର ଦେଇ ଭୂମିରେ ସାଷ୍ଟାଙ୍ଗ ପ୍ରଣିପାତ ହେଲେ ଏବଂ ପୁତ୍ର ଇନ୍ଦ୍ରର ଇନ୍ଦ୍ରପଦ ପାଇଁ ପ୍ରାର୍ଥନା କଲେ ।

ଅଦିତି କହିଲେ –

'ପୁତ୍ରେ ନରହି ସ୍ୱର୍ଗପୁରେ ।
ଲୁଚିଲେ ବନ–ଗିରି–ଘୋରେ ।
ସର୍ବ ଦାନବ ସଙ୍ଗେ ମିଳି ।
ବସିଲା ଇନ୍ଦ୍ରାସନେ ବଳି ।।' (ଭାଗବତ)

ପ୍ରଭୁ ତାଙ୍କ ଗର୍ଭରେ ଜନ୍ମ ହୋଇ ଇନ୍ଦ୍ରଙ୍କୁ ଇନ୍ଦ୍ରପଦ ଦେଇ ସ୍ୱର୍ଗରେ ବସାଇବାକୁ ଅଦିତିଙ୍କୁ ଆଶ୍ୱାସନା ଓ ପ୍ରତିଶ୍ରୁତି ଦେଲେ ।

ଭାଗବତରେ ଭଗବାନ କହିଛନ୍ତି–

'ମୁଁ ନିଜ ଅଂଶେ ତୋ'ର ଗର୍ଭେ ଜନ୍ମିବି ପୟୋବ୍ରତ ଭାବେ ।
ଏ ବ୍ରତ ମହିମା ଏମନ୍ତ । ଅବଶ୍ୟ ମୋତେ ଲଭେ ସୁତ ।।'

ଶୁକ କହିଲେ –

'ଅଦିତି ପୟୋବ୍ରତ ଫଳେ । ବିଷ୍ଣୁ ଜନ୍ମିଲେ ତା'ର କୋଳେ ।।'
'ଗଗନେ ଯେହ୍ନେ ଦିନକର । ବାମନ ଉଦରୁ ବାହାର ।।'
(ଭାଗବତ)





ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ତିଥିରେ ମକର ଚନ୍ଦ୍ର ଶ୍ରବଣା ନକ୍ଷତ୍ରରେ ପ୍ରଭୁ ନାରାୟଣଙ୍କ ପଞ୍ଚମ ଅବତାର ବାମନ କଶ୍ୟପଙ୍କ ବୀର୍ଯ୍ୟରେ ଅଦିତିଙ୍କଠାରୁ ଜନ୍ମ ହୋଇଥିଲେ । ତାଙ୍କର ନୀଳ ନୀରଦ ତନୁ, ଆଜାନୁ ଲମ୍ବ ଚାରିଭୁଜ, ଭୁଜରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ, ପୀତ ବସନ, କର୍ଣ୍ଣରେ ରତ୍ନ କୁଣ୍ଡଳ, ହୃଦୟରେ ଶ୍ରୀବତ୍ସ ଚିହ୍ନ । ବକ୍ଷରେ ବନମାଳ, ଶିରରେ ମଣି ମୁକୁଟ, କଟିରେ ରତ୍ନମେଖଳା, କଣ୍ଠରେ ଶ୍ରୀକୌସ୍ତୁଭମଣି ଓ ଶିରରେ ଜଟାଭାର ସହିତ ପାଦରେ ନୂପୁର, ହସ୍ତରେ କଙ୍କଣ ଶୋଭିତ ହୋଇ ବଟୁ ବାମନ ରୂପରେ ମହାପ୍ରଭୁ ଜନ୍ମ ହୋଇଥିଲେ ।

'ଭାଦ୍ରବ ମାସ ଶୁକ୍ଳପକ୍ଷେ । ଦ୍ୱାଦଶୀ ଶ୍ରବଣା ଯେ ଋକ୍ଷେ ॥
ମୁହୂର୍ତ୍ତନାମ ଅଭିଜିତ । ଗ୍ରହ ନକ୍ଷତ୍ର ସୁପ୍ରଶସ୍ତ ॥' (ଭାଗବତ)

ବ୍ରହ୍ମା ଓ ମୁନିମାନେ କଶ୍ୟପ ଆଶ୍ରମରେ ଉପନୟନ ଜାତକର୍ମ କରିଥିଲେ । ସୂର୍ଯ୍ୟଦେବ କର୍ଣ୍ଣରେ ସାବିତ୍ରୀ ମନ୍ତ୍ର ପ୍ରଦାନ କରିଥିଲେ । ଦେବଗୁରୁ କାନ୍ଧରେ ପଇତା, କଶ୍ୟପ କଟିରେ ମର୍କତ ମେଖଳା, ପୃଥିବୀ କାନ୍ଧରେ କୃଷ୍ଣାଜିନ, ଚନ୍ଦ୍ର ଦଣ୍ଡ, ଅଦିତି ମାତା କଉପୀନ, ଆକାଶ ଛତ୍ର, ମୁନିମାନେ କୁଶ ଓ ବ୍ରହ୍ମ ତେଜ, ବ୍ରହ୍ମା କମଣ୍ଡଳୁ, ସରସ୍ୱତୀ ଅକ୍ଷମାଳା, କୁବେର ଭିକ୍ଷାପାତ୍ର ପ୍ରଦାନ କରିଥିଲେ । ଅମ୍ବିକା ଭିକ୍ଷାଦାନ କରିଥିଲେ ।

'ଏମନ୍ତେ ବଳି ଯଜ୍ଞବାଟେ ।
ବାମନ ମିଳିଲେ କପଟେ ॥' (ଭାଗବତ)

ଅଶ୍ୱମେଧ ଯଜ୍ଞ ଶେଷରେ ବଳି ଯେତେବେଳେ ଦାନ ଦେବାକୁ ପ୍ରସ୍ତୁତ ହେଲେ, ସେତେବେଳେ ବିଷ୍ଣୁ ବାମନ ରୂପରେ ତା'ର ଦାତାପଣ ଅହଙ୍କାର ବିନାଶ ପାଇଁ ସେଠାରେ ଉପସ୍ଥିତ ହେଲେ । ବାମନ ରୂପୀ ବିଷ୍ଣୁ ତ୍ରିପାଦ ପରିମାଣ ଭୂମି ଦାନ ମାଗିଲେ । ବଳି ଏହି ସାମାନ୍ୟ ଦାନ ପାଇଁ ଉପହାସ କରି ଦେବା ପାଇଁ ସଂକଳ୍ପ କଲେ । ଶୁକ୍ରଗୁରୁ ବାମନଙ୍କୁ ଜାଣି ପାରି ବାରଣ କଲେ ମଧ୍ୟ ବଳି ସଂକଳ୍ପରୁ ବିରତ ହୋଇ ଧର୍ମ ନଷ୍ଟ କରିବାକୁ ଚାହିଁଲେ ନାହିଁ । ବାମନ ଏକ ପାଦରେ ମର୍ତ୍ତ୍ୟର ସମସ୍ତ ଭୂମି, ଦ୍ୱିତୀୟ ପାଦରେ ସ୍ୱର୍ଗ ଆକାଶ ସହିତ ନେଇଗଲେ । ତୃତୀୟ ପାଦ ପାଇଁ ଆଉ ସ୍ଥାନ ରହିଲା ନାହିଁ । ବଳିଙ୍କ ଅନୁଚର ଯୁଦ୍ଧ କରିବାକୁ ଉଦ୍ୟତ ହେବାରୁ ନିହତ ହେଲେ ଏବଂ ବଳି ଯୁଦ୍ଧ ପାଇଁ ବାରଣ କଲେ । ବିଷ୍ଣୁଙ୍କ ଆଦେଶରେ ବିଷ୍ଣୁ ଅନୁଚରମାନେ ଗରୁଡ଼ ପାଶରେ ବଳିଙ୍କୁ ବନ୍ଧନ କରିଦେଲେ । ବାମନ ନାଭିକମଳରୁ ତୃତୀୟ ପାଦ ବାହାର କରି ବଳିକୁ ସ୍ଥାନ ମାଗିଲେ । ବଳି ତୃତୀୟ ପାଦଟି ନିଜ ମସ୍ତକରେ ରଖିବା ପାଇଁ ବାମନଙ୍କୁ ପ୍ରାର୍ଥନା କଲେ । ବାମନ ପାଦ ରଖିବା ମାତ୍ରେ ବଳି ବିଷ୍ଣୁଙ୍କୁ ସ୍ତବ ସ୍ତୁତି କଲେ । ବିଷ୍ଣୁ ଭକ୍ତ ବଳିଙ୍କ ପିତାମହ ପ୍ରହ୍ଲାଦ ସେଠାରେ ପହଞ୍ଚି ପ୍ରାର୍ଥନା କଲେ । ତାଙ୍କ ପ୍ରାର୍ଥନାରେ ଭଗବାନ ବିଷ୍ଣୁ ବଳିଙ୍କୁ ବନ୍ଧନରୁ ମୁକ୍ତ କରିଦେଲେ । ବାମନ ସନ୍ତୁଷ୍ଟ ହୋଇ ବଳିଙ୍କୁ ପାଦରେ ଚାପି ଏକ ଦେବଦୁର୍ଲ୍ଲଭ ସ୍ଥାନ ସୁତଳରେ ପିତାମହ ପ୍ରହ୍ଲାଦ ସହିତ ବାସସ୍ଥାନ ଦେଲେ । ବିଷ୍ଣୁ ସେଠାରେ ରହି କୌମୋଦକୀ ଗଦା ଧରି ବଳିଙ୍କୁ ରକ୍ଷା କଲେ । ବଳି ସାବର୍ଣ୍ଣ ମନ୍ୱନ୍ତରରେ ଇନ୍ଦ୍ର ପଦବୀ ଲାଭ କରିବେ ବୋଲି ବିଷ୍ଣୁ କହିଲେ । ଇନ୍ଦ୍ରଙ୍କୁ ଇନ୍ଦ୍ର ପଦରେ ସ୍ୱର୍ଗପୁରରେ ସ୍ଥାପନ କଲେ । ଏଣୁ ପ୍ରତିବର୍ଷ ଏହି ଦିନ ଶ୍ରୀମନ୍ଦିରରେ ଶ୍ରୀବାମନ ଜନ୍ମୋତ୍ସବ ନୀତି ଅନୁଷ୍ଠିତ ହୋଇଥାଏ । ଜନ୍ମୋତ୍ସବ ପୂର୍ବଦିନ ପବିତ୍ରା ଚାଙ୍ଗୁଡ଼ିକୁ ତଳୁଛ ମହାପାତ୍ର ସେବକ ପଟୁଆରରେ ବଡ଼ ଦେଉଳକୁ ତିନି ଘେରା ପରିକ୍ରମା କରି ଜୟବିଜୟ ଦ୍ୱାର ଦେଇ ଭିତର ରତ୍ନସିଂହାସନକୁ ବିଜେ କରାନ୍ତି । ଜନ୍ମୋତ୍ସବ ଦିନ ସକାଳ ଧୂପ ପରେ ମଧ୍ୟାହ୍ନ ଧୂପ ପୂର୍ବରୁ ମଇଲମ ହୋଇ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ମହାସ୍ନାନ ଓ ସର୍ବାଙ୍ଗ ହେବା ପରେ ପୂର୍ବ ଦିନରୁ ଅଧିବାସ ହୋଇଥିବା ପବିତ୍ରା ଲାଗି କରାଯାଏ । ଏହାପରେ ନୂଆ ଲୁଗା ପତନି ଓ ଛଅ ମୂର୍ତ୍ତି ଅଳଙ୍କାର ଲାଗି ଓ କର୍ପୂର ଲାଗି ହୋଇ ବେଶ ଶେଷ ହୋଇଥାଏ । ମଧ୍ୟାହ୍ନ ଧୂପ ସରିବା ପରେ ଟେରା ପକାଯାଇ ଜୟବିଜୟ ଦ୍ୱାର ବନ୍ଦ କରାଯାଏ । ଭିତର କାଠ ଚନ୍ଦନ ଅର୍ଗଳୀଠାରେ ଶୁଦ୍ଧସୁଆର ପାଣି ପକାଇ ପୋଛା ମାରିବା ପରେ ପୂଜାପଣ୍ଡା ପାଞ୍ଚବର୍ଣ୍ଣ ମୁରୁଜରେ ଏକ ଭଦ୍ରମଣ୍ଡଳ ଲେଖନ୍ତି । ତିନି ବାଡ଼ରେ ବନ୍ଦାପନା ହୋଇ ପାଣି ପଡ଼ିବା ପରେ ପୂଜାପଣ୍ଡା ପିଢାରେ ବସି ବ୍ରହ୍ମାବରଣ ଓ କଳସରେ ବରୁଣ ପୂଜା କରନ୍ତି । ମୁଦିରସ୍ତ ଓ ପତିମହାପାତ୍ର ସେବକମାନେ ଆଚାର୍ଯ୍ୟ ବରଣ ହୁଅନ୍ତି ।

ଏହାପରେ ମହାଜନମାନେ ଦକ୍ଷିଣ ଘର ଭୋଗ ପରେ ଶ୍ରୀକୃଷ୍ଣଙ୍କୁ ହାତରେ ନେଇ ଭିତର ରତ୍ନସିଂହାସନକୁ ବିଜେ କରାନ୍ତି । ମୁଦିରସ୍ତ ଶ୍ରୀଅଙ୍ଗରେ ଧଣ୍ଡିପ୍ରସାଦ ଲାଗି କରିବା ପରେ ମହାଜନମାନେ କୃଷ୍ଣ (ବାମନ) ଠାକୁରଙ୍କୁ ହସ୍ତରେ ବିଜେ କରାଇ ଭିତର କାଠ ନିକଟରେ ଲେଖା ହୋଇଥିବା ଭଦ୍ରମଣ୍ଡଳ ଉପରେ ବିଜେ କରାନ୍ତି । ଏଠାରେ ବଣିଆ ସେବକ ଦେଇଥିବା ସୁବର୍ଣ୍ଣ – ବାମନ ପ୍ରତିମାକୁ ଏକତ୍ର ଭଦ୍ରମଣ୍ଡଳ ଉପରେ ଶ୍ରୀକୃଷ୍ଣ (ବାମନ) ଠାକୁରଙ୍କ ସହିତ ବିଜେ କରାଯାଏ । ଏହାଙ୍କୁ ପଞ୍ଚାମୃତ ମହାସ୍ନାନ କରାଯାଇ ଶୀତଳଭୋଗ ଓ ବନ୍ଦାପନା କରି ପଞ୍ଚୋପଚାରରେ ଗର୍ଭଉଦକ ପୂଜା କରାଯାଏ । ଏହାପରେ ଖଣ୍ଡୁଆ ଘୋଡାଇ ପୋଥି ପାଠ କରି ଶ୍ରୀବାମନ ଜନ୍ମ ବିଧି ହୋଇଥାଏ । ପରେ ପାଳିଆ ମହାସୁଆର ଦେଇଥିବା କ୍ଷୀର, ସରଳବଣୀ ଓ କୋରା ଭୋଗ ପୂଜାପଣ୍ଡା ଠାକୁରଙ୍କୁ ମଣୋହି କରାନ୍ତି ଏବଂ ମୁଦିରସ୍ତ ପ୍ରସାଦ



ଲାଗି କରାନ୍ତି । ଏହାପରେ ମହାଜନ ସେବକମାନେ ଠାକୁରମାନଙ୍କୁ ହାତରେ ବିଜେ କରାଇ ଜୟବିଜୟ ଦ୍ୱାର ତଳେ ଠିଆ ହୋଇଥିବା ସମୟରେ ମାର୍କଣ୍ଡେଶ୍ୱର ସାହି ଲୋକମାନେ ବାମନ ମୂର୍ତ୍ତି ପଟି ପ୍ରଦାନ କରନ୍ତି । ଠାକୁରମାନଙ୍କୁ ହାତରେ ବଟଦ୍ୱାର ସୋମନାଥ ମଣ୍ଡପ (ମାଜଣା ମଣ୍ଡପ) ଖଟଶେଯ ଉପରେ ବିଜେ କରାଯାଏ । ଭଣ୍ଡାର ଘରୁ ରୂପା ବଟାରେ ଶ୍ରୀଦୁର୍ଗା ଦେବୀଙ୍କୁ ପତିମହାପାତ୍ର ସେବକ ହାତରେ ବିଜେ କରାଇ ଆଣି ଆଜ୍ଞାମାଳ ପ୍ରାପ୍ତ ପରେ ଉକ୍ତ ମଣ୍ଡପ ଖଟଶେଯ ଉପରେ ବିଜେ କରାନ୍ତି । ଏଠାରେ ପୂଜାପଣ୍ଡା ବସୁଧାରା କରାଇ ଯଜ୍ଞ ପବିତ୍ରା ହେବା ପରେ ପାଣି ପକାଯାଇ ଶୀତଳଭୋଗ ଓ ପନ୍ତିଭୋଗ ହୋଇଥାଏ । ପରେ ଦୁଗ୍ଧ ମଣୋହି ହୋଇ ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ଏହାପରେ ପୂଜାପଣ୍ଡା ପଞ୍ଚୋପଚାରରେ ଶୀତଳ ଭୋଗ ପୂଜା କରନ୍ତି । ମାଜଣା ମଣ୍ଡପରେ ବନ୍ଦାପନା ପରେ ବାମନ ରୂପୀ ଶ୍ରୀକୃଷ୍ଣ ଦକ୍ଷିଣ ଘରକୁ ଓ ଶ୍ରୀ ଦୁର୍ଗାଦେବୀ ଭଣ୍ଡାର ଘରକୁ ବିଜେ କରନ୍ତି । ବାମନ ଜନ୍ମୋତ୍ସବ ଦିନ ଓଡ଼ିଆ ନବ ବର୍ଷ ସୁନିଆଁ ପର୍ବ ପାଳିତ ହୁଏ ଏବଂ ଗଜପତି ମହାରାଜାଙ୍କ ନୂତନ ଅଙ୍କ ଓ ନୂତନ ସାଲ ପ୍ରବେଶ ହୋଇଥାଏ ।

ଭାଦ୍ରବ ଶୁକ୍ଳ ତ୍ରୟୋଦଶୀ ତିଥିରେ ଶ୍ରୀମନ୍ଦିରରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପବିତ୍ର ବଳିବାମନ ବେଶ ବା ତ୍ରିବିକ୍ରମ ବେଶ ବାମ ହସ୍ତରେ ଛତା ଓ ଦକ୍ଷିଣ ହସ୍ତରେ କମଣ୍ଡଳ ଆଦି ଧାରଣ କରି ହୋଇଥାଏ । ସୁନିଆଁ ବା ଉତ୍କଳର ପ୍ରାଚୀନତମ ନବବର୍ଷ ଦିନ ମହାରାଜା ଯଯାତି କେଶରୀ ଶ୍ରୀଜଗନ୍ନାଥଙ୍କ ବାମନ ବେଶର ଶୁଭାରମ୍ଭ କରିଥିଲେ । ପରମଲକ୍ଷ୍ମୀ ରାଜଗୁରୁଙ୍କ ସମୟରେ ଗଜପତି ବୀର କିଶୋର ଦେବ ମହାପ୍ରଭୁଙ୍କ ବାମନ ବେଶକୁ ଅତ୍ୟନ୍ତ ଗୁରୁତ୍ୱ ଦେଇଥିଲେ । ମଧ୍ୟାହ୍ନ ଧୂପ ପରେ ମହାପ୍ରଭୁଙ୍କ ଏହି ପବିତ୍ର ବେଶ ଆରମ୍ଭ ହୁଏ । ଭଣ୍ଡାର ଘରୁ ବେଶ ସାମଗ୍ରୀ ଅଣାଯାଇ ଶ୍ରୀଜୀଉମାନଙ୍କୁ ବିଭିନ୍ନ ବେଶରେ ସଜ୍ଜିତ କରାଯାଏ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ବାମନ ବେଶରେ ସଜ୍ଜିତ କରାଯାଇଥିବା ବେଳେ ବଳଭଦ୍ରଙ୍କୁ ରାଜବେଶ ଓ ଦେବୀ ସୁଭଦ୍ରାଙ୍କୁ ସାଧାରଣ ବେଶରେ ସଜାଯାଏ । ଏହି ବେଶରେ ଶ୍ରୀଜୀଉମାନଙ୍କୁ ବିଭିନ୍ନ ସୁବର୍ଣ୍ଣ ଅଳଙ୍କାର ଯଥା– ଶ୍ରୀପୟର, ଶ୍ରୀଭୁଜ, କାନ, ଆଡ଼କାନି, କୁଣ୍ଡଳ, ପଦକ, ଓଡ଼ିଆଣୀ, ଚନ୍ଦ୍ରିକା, ତିଳକ, ତଡ଼ଗୀ, କିରୀଟ, ତାବିଜମାଳି, ବାଘନଖିମାଳି, କଦମ୍ବମାଳି, ବଡ଼କିଆ, ଅର୍ଦ୍ଧଚନ୍ଦ୍ର, ସୂର୍ଯ୍ୟଚନ୍ଦ୍ର, ଶ୍ରୀମୁଖପଦ୍ମ, ସେବତୀ ମାଳି, ବାହାଡାମାଳି, ହରିଡ଼ା ମାଳି, ଅଳକା ଓ ଘାଗଡାମାଳି ଆଦିରେ ଭୂଷିତ କରାଯାଏ ।

ରଥରେ ଆମ୍ଭେ ଯେଉଁ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କୁ ଦେଖୁ, ସେ ହେଉଛନ୍ତି ବାମନ ରୂପୀ ଲୀଳାମୟ ସ୍ୱୟଂ ନାରାୟଣ । ଯାହାଙ୍କୁ ଦେଖିଲେ ଆଉ ପୁନର୍ଜନ୍ମ ହୁଏ ନାହିଁ ବୋଲି ବିଶ୍ୱାସ ରହିଛି ।

ଏ.ଏଲ୍.– ୫୩
ବୀର ସୁରେନ୍ଦ୍ର ସାଏ ନଗର, ଭୁବନେଶ୍ୱର

# ଜ୍ୟୋତିର୍ମୟୀ ମା' ଦୁର୍ଗା

ଉର୍ମିଳା ମିଶ୍ର

ବ୍ରହ୍ମା ବିଷ୍ଣୁ ସଦାଶିବଙ୍କ ଶରୀରୁ, ଉଦ୍ରେକ ବିପୁଳ ତେଜ
ସମସ୍ତ ତେଜର ଏକୀଭୂତ ସତ୍ତା, ଦୁର୍ଗା ଜ୍ୟୋତିର୍ମୟୀ ପୂଜ୍ୟ ।

ଶକ୍ତିଦ୍ୱାରା ପିଣ୍ଡ ହୁଏ ଗତିଶୀଳ, ଶକ୍ତି ବିନା ପିଣ୍ଡ ଶବ
ଅନାଦି ଅନନ୍ତ କାଳରୁ ଏ ବିଶ୍ୱ, ଶକ୍ତିଦ୍ୱାରା ଉଦ୍ଭାସିତ ।

ବିଜୟା ଦଶମୀ ଦିନ ବନ୍ଦନୀୟା, ସର୍ବତ୍ର ତୁମରି ପୂଜା
ଲଭିଛି ଆଦର ଏ ଧରା ଧାମରେ, ଶାରଦୀୟ ଦୁର୍ଗାପୂଜା ।

ମହା ସଙ୍କଟରୁ ଉଦ୍ଧାର କରିଲ, ବଧ କରି ଦଶାନନ
ବିଶ୍ୱ ବ୍ରହ୍ମାଣ୍ଡରେ ମହାମାୟାଙ୍କର, ଉଡେ ବିଜୟ କେତନ ।

ଶକ୍ତି ପୂଜାର୍ଚ୍ଚନା ଦୂର କରିଦିଏ, ଜୀବନର ଭବ ବାଧା
ସର୍ବ ପାପ ତାପ କ୍ଷମା କରିଦିଅ, ଶ୍ରୀପାଦେ ଲୋଟୁଛି ମଥା ।

ମାର୍ଫତ୍– ଶ୍ରୀଚରଣ ମିଶ୍ର
ମହୁଲିଆ, ବଡମ୍ବା
ଜିଲ୍ଲା– କଟକ





# ଭାଇଭଉଣୀର ନିବିଡ ବନ୍ଧନ ଭାଇ ଜିଉଁନ୍ତିଆ

**କୁଞ୍ଜବିହାରୀ ସାହୁ**

ଶରତ ଋତୁ ପର୍ବପର୍ବାଣିର ମିଳନ ଋତୁ । ଚନ୍ଦ୍ର ତାରକିତ ଆକାଶ ହେଉ ଅବା ତମିସ୍ରାଝରା ଆକାଶ ହେଉ, ଏହା କେବଳ ଶୁକ୍ଳପକ୍ଷ ଓ କୃଷ୍ଣପକ୍ଷର ପରିଚୟ ମାତ୍ର । ଏହି ଋତୁରେ ପ୍ରକୃତି ପାଲଟିଯାଏ ଲାବଣ୍ୟବତୀ । ଚତୁର୍ଦ୍ଦିଗେ ବାସ୍ନାୟିତ ଫୁଲର ସମ୍ଭାର । ନଦୀ-ପୁଷ୍କରିଣୀର କାଚକେନ୍ଦୁ ନୀଳ-ଜଳରାଶି ଏବଂ ନଈ-ପାଟ, ବିଲ-ପଠାର ଆକର୍ଷଣୀୟ କାଶତଣ୍ଡୀର ଧୋବଧଉଳିଆ ଦୋଳାୟିତ ଚଅଁର ଶରତ ଋତୁକୁ ରମଣୀୟ କରିଥାଏ । ସବୁ ଋତୁଠାରୁ ଅନନ୍ୟ ରୂପେ ବିବେଚିତ ଶରତ ଋତୁ କବି-ଭାବୁକମାନଙ୍କର ମନଛୁଆଁ-ହୃଦୟସ୍ପର୍ଶୀ ଶବ୍ଦର ଆଧାର ପାଲଟିଯାଏ । ଗଙ୍ଗଶିଉଳିର ମିଠା-ମହକ, କୁମୁଦର ହସନ୍ତ ଚେହେରା, ଅପରାଜିତାର ବାଇଗଣି ମୁହଁ ପ୍ରତ୍ୟେକଙ୍କୁ ଆକୃଷ୍ଟ କରେ । କଅଁଳ ଖରାର ଭିନ୍ନ ଚମକ ଦେହ-ମନକୁ ରୋମାଞ୍ଚିତ କରେ ।

ଶରତ ଋତୁର ନିର୍ମଳ ଶୋଭା
ପ୍ରକୃତି ରାଣୀର ସଜାଏ ଗଭା ।

ଏହି ଋତୁ ଆଶ୍ୱିନ ମାସକୁ ସାଥୀରେ ଧରି ପୃଥିବୀ ବକ୍ଷରେ ବିରାଜ ହୁଏ । ଜନ-ମନ ହରଣ କରି ପାର୍ବଣର ଧ୍ୱଜା ଉଡାଇ ଥାଏ । ବିଭିନ୍ନ ପୂଜାକୁ କୋଳେଇ ନେଇ ଆନ୍ତରିକତା ତିଆରି କରେ । ଭାବ-ଭାଷାକୁ ଏକାଠି କରେ ସୁହୃଦ ଭାବରେ । ସେହି ପର୍ବ ଭିତରେ ପଶ୍ଚିମ ଓଡ଼ିଶାର 'ଭାଇ ଜିଉଁନ୍ତିଆ' ଏକ ନିଆରା ଭାବାବେଗର ଆଲେଖ୍ୟ । ସମଗ୍ର ପୁରପଲ୍ଲୀରେ ଆନନ୍ଦ-ଭକ୍ତି ଚେତନାର ଉତ୍ସ । ଭାଇ-ଭଉଣୀର ନିବିଡ ଆତ୍ମୀୟତା ଶୁକ୍ଳପକ୍ଷ ଅଷ୍ଟମୀ ତିଥିକୁ ରସାଣିତ କରେ ।

ଭାଇ ଜିଉଁନ୍ତିଆ ପର୍ବ ପାଳନ ପ୍ରଚ୍ଛଦରେ ଏକ ଅମୂଲ୍ୟ କାହାଣୀ ନିହିତ ଅଛି । ରାଜକୁମାରୀ ଅରୁଣା ଥିଲା ଚମ୍ପାବତୀ ନଗରୀର ରାଜା ବିକ୍ରମ ସେନ୍‌ଙ୍କ କନ୍ୟା । ସୁନ୍ଦରୀ ଓ ଅଲିଅଳି । ବିବାହ ବୟସ ଉପନୀତ ହୁଅନ୍ତେ ମନ୍ତ୍ରୀଙ୍କ କୁମର ମଦନ ସୁନ୍ଦରଙ୍କୁ ପତି ରୂପେ ପ୍ରାପ୍ତ ହେବା ପାଇଁ ଅଳି କଲା ପିତୃଦେବଙ୍କ ନିକଟରେ । ଏମିତି ଏକ ଅସମ୍ଭବ ଯୋଗାଯୋଗକୁ ରାଜା ବିରୋଧ ପୂର୍ବକ କ୍ରୋଧ ପ୍ରକାଶ କଲେ । ମନ୍ତ୍ରୀଙ୍କ ପୁତ୍ରକୁ ହତ୍ୟା କରିବା ପାଇଁ ଅବିଚାର ଢଙ୍ଗରେ ଆଦେଶ ଦେଲେ ଘାତକକୁ କ୍ରୁର କାର୍ଯ୍ୟ ସମ୍ପାଦନ ସକାଶେ । ଅସଫଳ ହୋଇ ଫେରି ଆସିଲା ଘାତକ । ଚିନ୍ତା-ଦ୍ୱେଷ-ଗ୍ଳାନିର ସ୍ୱେଦବିନ୍ଦୁ ରାଜାଙ୍କ ମୁଖମଣ୍ଡଳରେ । ଗୋଟିଏ ପଟେ ଅଲିଅଳି କନ୍ୟାର ଆକର୍ଷଣ, ଅନ୍ୟ ପଟେ ମନ୍ତ୍ରୀଙ୍କ ପୁତ୍ର ସହ ବିବାହ ପ୍ରତି କୁଠାର ଘାତ କିଂକର୍ତ୍ତବ୍ୟବିମୂଢ଼ ରାଜା ବିକ୍ରମ ସେନ୍ । ମନ୍ତ୍ରୀ କୁମର ମଦନ ସୁନ୍ଦର ବଞ୍ôଚବାର କାହାଣୀର ପୃଷ୍ଠଭୂମି ଥିଲା ଏହିପରି ।

ସେଦିନ ଥିଲା ଆଶ୍ୱିନ ମାସର ଶୁକ୍ଳ ମହାଷ୍ଟମୀ ତିଥି । ଶୁଭମୟ ମାଙ୍ଗଳିକ ଲଗ୍ନ । ମଦନ ସୁନ୍ଦରଙ୍କ ଭଉଣୀ ମାଳତୀ । ମାଳତୀର ମା' କହିଥିଲେ ନିଷ୍ଠା- ସାଧନା ସହ ପାଳନ କରିବାକୁ ଭାଇ ଜିଉଁନ୍ତିଆ ଓଷା ଭାଇର ଚିର ମଙ୍ଗଳ ପାଇଁ ।

କହିଲେ ଜନନୀ, ଆଜି ଲୋ ମହାଅଷ୍ଟମୀ ବ୍ରତ
ଉପବାସେ ଦୁର୍ଗା ପୂଜିଲେ ହୁଏ ଭାଇର ହିତ ।
ଭଉଣୀର ଭାଇ ଭରସା- କଥା ସଂସାରେ ଅଛି
ଭାଇ ସୁଖେ ତୋହର ଊଣା ନୋହିବ କିଛି ।

ଶୁଭାନୁଧ୍ୟାୟୀ ମାଆର ଆଶୀର୍ବଚନକୁ ଏକତରଫା ଭାବେ ଗ୍ରହଣ କରି ନେଲା ମାଳତୀ । ପବିତ୍ର ଦୁର୍ଗାଷ୍ଟମୀରେ ଭାଇ ଜିଉଁନ୍ତିଆ ଓଷା ବିଧିବିଧାନ ସହିତ ପାଳନ କଲା । ସମସ୍ତ ବିଷଦ-ଦୁଃଖ-ଦୁର୍ଦ୍ଦଶାରୁ ମୁକୁଳି ଭାଇ ସୁଖରେ ରହୁ- ମା' ଦୁର୍ଗାଙ୍କୁ ନିବେଦନ କଲା ।

ମା' ଦୁର୍ଗା ସର୍ବମୟୀ– ଶକ୍ତିମୟୀ । ସୃଷ୍ଟି–ସ୍ଥିତି–ପ୍ରଳୟର ଦେବୀ । କୁହାଯାଇଛି–

ୟା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସୈ, ନମସ୍ତସୈ, ନମସ୍ତସେ ନମୋନମଃ ।

ମାଳତୀର ଆକୁଳ ଭକ୍ତିପୂତ ପ୍ରାର୍ଥନା ମା' ଦୁର୍ଗାଙ୍କ କର୍ଣ୍ଣପାତ ହେଲା । ଏକ ଅବଶ୍ୟମ୍ଭାବୀ ବିପଦରୁ ମାଳତୀର ଭାଇ ମଦନ ସୁନ୍ଦରକୁ ପ୍ରଚ୍ଛନ୍ନ ଭାବରେ ଘଣ୍ଟଘୋଡେଇ ରଖିଲେ । ମନ୍ତ୍ରୀ କୁମର ମଦନ ସୁନ୍ଦର ମୃତ୍ୟୁ ମୁଖରୁ ବଞ୍ଚିଗଲେ । ମାଳତୀର 'ଭାଇ ଜିଉଁନ୍ତିଆ' ଓଷା ପାଇଁ ଭ୍ରାତୃପ୍ରେମ ଅତୁଟ ରହିଲା

ଅସଫଳ ହୋଇ ଘାତକ ଫେରି ଆସିବାର ସମ୍ବାଦରେ ବିକ୍ରମ ସେନ୍ଙ୍କ କନ୍ୟା ଅରୁଣା ଆତ୍ମତୃପ୍ତିରେ ପୁଲକି ଉଠିଲା । ରାଜା ଅନ୍ୟନ୍ୟୋପାୟ ହୋଇ ନିଜର ଅଲିଅଳ କନ୍ୟାକୁ ମନ୍ତ୍ରୀଙ୍କ କୁମର ମଦନ ସୁନ୍ଦରଙ୍କ ହାତରେ ସମର୍ପି ଦେଲେ ।

ଅନ୍ୟ ଏକ କାହାଣୀର ପୃଷ୍ଠଭୂମି ହେଉଛି ଯେ– ଦ୍ୱିଜ ଗୌରଚନ୍ଦ୍ର ନିଜ କାହାଣୀରେ ଲେଖିଛନ୍ତି, କୋଶଳ ରାଜଜେମାଙ୍କ ପୁତ୍ର ଶ୍ରୀ ରାମଚନ୍ଦ୍ର । ସେ ଥିଲେ କୋଶଳ ରାଜକୁମାରୀମାନଙ୍କର ମାମୁଁ ପୁଅ ଭାଇ । ତେଣୁ ସେମାନେ ନିଜ ଭାଇର ସର୍ବକୁଶଳ କାମନା କରି ଆଶ୍ୱିନ ଶୁକ୍ଳ ଅଷ୍ଟମୀରେ 'ଭାଇ ଜିଉଁନ୍ତିଆ' ଓଷା ପାଳନ କରୁଥିଲେ । ବୋଧହୁଏ, କୋଶଳ ରାଜ୍ୟ ବା ପଶ୍ଚିମ ଓଡ଼ିଶାରେ ଭ୍ରାତୃ ସ୍ନେହର ପ୍ରତୀକ 'ଭାଇ ଜିଉଁନ୍ତିଆ' ଓଷା ବିଧିବିଧାନ ସହ ମହାଡମ୍ବରରେ ପାଳନ କରାଯାଉଥିବାର ନଜିର ରହିଛି ।

ଆଶ୍ୱିନ ମାସରେ ମା' ଦୁର୍ଗାଙ୍କର ଆରାଧନା ସାଧାରଣତଃ ପୂଜାପୀଠରେ ନଅଦିନ ବ୍ୟାପୀ ପାଳନ କରାଯାଏ । ଏହାକୁ ନବରାତ୍ରି ବୋଲି କୁହାଯାଏ । ଭଉଣୀମାନେ ନିଜ ଭାଇଙ୍କ ଶୁଭ ମନାସି ଏହି ଓଷା ପାଳନ କରୁଥିଲେ ହେଁ ସଧବା, ବିଧବା, ବୃଦ୍ଧା ରମଣୀମାନେ ମନଯୋଗ ସହକାରେ ପାଳନ କରନ୍ତି । ସଧବାମାନେ ମଣ୍ଡଳ ପୂଜା କରୁଥିଲାବେଳେ ବିଧବାମାନେ ଉପବାସ ରହିଥାନ୍ତି । ଶ୍ୱଶୁରାଳୟରୁ ବିବାହିତ ଭଉଣୀକୁ ଭାଇ ନିଜେ ଯାଇ ଡାକି ଆଣିଥାଏ । ଏ ବିଧି ହେଉଛି ପବିତ୍ର ପ୍ରେମ–ବନ୍ଧନର ମୂକସାକ୍ଷୀ । 'ଭାଇ ଜିଉଁନ୍ତିଆ' ଓଷା ପାଳନ ଦିନ ଭଉଣୀମାନେ ପ୍ରାତଃ ସ୍ନାନ କରି ନଈ ତୁଠ ଏବଂ ପୋଖରୀ ହୁଡାରେ ଗୋଲାକାର ବାଲୁକା ବେଦି ସ୍ଥାପନା କରନ୍ତି । ଦିବସ ବ୍ୟାପୀ ଉପବାସ ରହନ୍ତି । ସନ୍ଧ୍ୟା ବେଳେ ଦୁର୍ଗା ମା'ଙ୍କ ନିକଟରେ କଳସ ବସାଇ ଦୀପଜାଳି ୧୦୮ ଦୁର୍ବାକ୍ଷତ ସହ ବ୍ରତ ବାନ୍ଧି ଚଢାଇ ଥାନ୍ତି । ମା'ଙ୍କ ପାଖରେ ଜାଗର ଜାଳି ୧୦୮ ଦୁବ ଜିଉଁନ୍ତିଆ ସହିତ କଖାରୁ ଫୁଲ, ମନ୍ଦାର ଫୁଲ, ଅଁଳା ଡାଳ, ବେଲପତ୍ର, ନଡିଆ, କଦଳୀ, ଆତ ଫଳ ପ୍ରଭୃତି ସମର୍ପି ଦିଅନ୍ତି । ଲୁଗାର (ଲିଆଉଖୁଡା) ପ୍ରସ୍ତୁତ କରି ନାନା ପ୍ରକାର ପିଠା ସହିତ ନଡିଆ, କଦଳୀ ଭୋଗ ଆଦି ଲାଗି କରନ୍ତି । 'ଭାଇ ଜିଉଁନ୍ତିଆ' ବ୍ରତକଥା ବହିକୁ ମନଧ୍ୟାନରେ ପାଠ କରନ୍ତି ଏବଂ ବ୍ରାହ୍ମଣମାନଙ୍କ ପଠନକୁ ବି ଆଗ୍ରହରେ ଶୁଣନ୍ତି । ବିଶ୍ୱାସ ରହିଛି ଯେ, ଏହି ପବିତ୍ର ଦିନରେ ମା' ଦୁର୍ଗାଙ୍କର ପ୍ରିୟ କଖାରୁ ଫୁଲ ନିଷ୍ଠାପର ସହକାରେ ଅର୍ପଣ କଲେ ଶତ ସ୍ୱର୍ଣ୍ଣ କମଳ ଯୁକ୍ତ ହୋଇଥାଏ । ଭକ୍ତିଚିତ୍ତ ମନରେ ମା' ଦୁର୍ଗାଙ୍କୁ ଆରାଧନା କରାଯାଏ । ଭକ୍ତି ମିଶ୍ରିତ ପୂଜା ମାହୋଲ ଭିତରେ ରାତ୍ରି ପାହେ । ପ୍ରାତଃ ନିତ୍ୟକର୍ମ ସମାପ୍ତ କରନ୍ତି ଭଉଣୀମାନେ । ତତ୍ପରେ ଭାଇମାନଙ୍କୁ ଆସନରେ ଉପବିଷ୍ଟ କରାଇ ଦୀପ ଜାଳି, ପ୍ରସାଦ ବାଢି ଦିଅନ୍ତି ସ୍ନେହ–ଶ୍ରଦ୍ଧାରେ । ମା' ଦୁର୍ଗାଙ୍କ ନିକଟରେ ଲାଗି ହୋଇଥିବା ଦୁର୍ବାକ୍ଷତ ଆଣି ନିଜ ଭାଇକୁ ସାତଥର ଝାଡି ଦିଅନ୍ତି । ନିବିଡ ଆତ୍ମୀୟତାରେ ଭାଇର ସର୍ବକୁଶଳ କାମନା କରନ୍ତି । ଭାଇକୁ ଯଥାସାଧ ବସ୍ତ୍ର ଏବଂ ଉପହାର ଦେବା ସହ ମିଷ୍ଟାନ୍ନ ଖୁଆନ୍ତି । ଏହାଦ୍ୱାରା ଭକ୍ତି ତଥା ଭାବମୟ ପରିବେଶ ସୃଷ୍ଟି ହୋଇଥାଏ ।

ଭାଇ ଜିଉଁନ୍ତିଆ ଓଷାର ମାଙ୍ଗଳିକ ଲଗ୍ନର ଚାକ୍ଷୁଷ ଉପଲବ୍ଧି ଭାଇ ପ୍ରତି ଭଉଣୀର ଅନାବିଳ ସ୍ନେହ–ପ୍ରେମ–ଆଦରର ବାର୍ତ୍ତା ବହନ କରେ । ଆଶ୍ୱିନ ମାସର ଶୁକ୍ଳାଷ୍ଟମୀ ପଶ୍ଚିମ ଓଡ଼ିଆବାସୀଙ୍କର ପାର୍ବଣର ରତ୍ନ ପାଲଟିଯାଏ ।

ପ୍ରକଳ୍ପ ନିର୍ଦ୍ଦେଶକଙ୍କ କାର୍ଯ୍ୟାଳୟ
(ଜଳ ବିଭାଜିକା)
ସା/ପୋ/ଜି– ବରଗଡ–୭୬୮୦୨୮



# ଶ୍ରୀମନ୍ଦିରରେ ଉପାସ୍ୟ ଦେବୀଗଣ

**ଡକ୍ଟର ଶ୍ରୀହରି ପଣ୍ଡା**

ଶ୍ରୀମନ୍ଦିରକୁ ଦୁଇଟି ବେଢାରେ ବିଭକ୍ତ କରାଯାଇଛି । ଭିତର ବେଢା ଓ ବାହାର ବେଢା । ମେଘନାଦ ପ୍ରାଚୀରଠାରୁ କୂର୍ମପ୍ରାଚୀର ପର୍ଯ୍ୟନ୍ତ ସ୍ଥାନକୁ ମନ୍ଦିରର ବାହାର ବେଢା କୁହାଯାଏ ।ଏହି ମେଘନାଦ ପ୍ରାଚୀର ଭିତରକୁ ପ୍ରବେଶ କରିବା ପାଇଁ ଚାରୋଟି ଦ୍ୱାର ଅଛି । ଏହି ଚାରି ଦ୍ୱାରକୁ ଚାରି ଦିଗର ନାମାନୁସାରେ ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଦ୍ୱାର ନାମରେ ନାମିତ କରାଯାଇଛି । ଏହି ବାହାର ବେଢାରେ ଯେଉଁ ଦେବୀମାନେ ଆରାଧିତା ହେଉଛନ୍ତି ଏବଂ ଯାହାଙ୍କର ମନ୍ଦିର ଅଛି, ସେମାନଙ୍କ ମଧ୍ୟରେ –

**ବୁଢୀ ମା'ଙ୍କ ମନ୍ଦିର–** ନୃସିଂହ ମନ୍ଦିର ପରେ ଏହି ବୁଢୀ ମା'ଙ୍କ ମନ୍ଦିର ଜନମନକୁ ହରଣ କରେ । ଏହାକୁ ବସନ୍ତେଇ ମଧ୍ୟ କୁହାଯାଏ । ବସନ୍ତ, ମିଳିମିଳା ସମୟରେ ଭକ୍ତମାନେ ଭକ୍ତିର ସହିତ ମା'ଙ୍କୁ ପଣା ଅର୍ପଣ କଲେ ରୋଗ ଛାଡ଼ି ଯାଉଥିବାର ଜନଶ୍ରୁତି ଅଛି । ଏହା ବାହାର ବେଢା ଅନ୍ତର୍ଗତ ଦକ୍ଷିଣ ଦ୍ୱାରରେ ଅବସ୍ଥିତ ।

**ଦୁର୍ଗାମାଧବ ମନ୍ଦିର–** ବାହାର ବେଢାସ୍ଥିତ ପଶ୍ଚିମ ଦ୍ୱାର ନିକଟରେ ମେଘନାଦ ପ୍ରାଚୀରର ଦକ୍ଷିଣ–ପଶ୍ଚିମ କୋଣରେ ପ୍ରାଚୀର ଉପରେ ଏହି ମନ୍ଦିର ଅବସ୍ଥିତ । ଏଠାରୁ ନୀଳାଚଳ ଉପବନକୁ ଯିବା ପାଇଁ ମଧ୍ୟ ରାସ୍ତା ଅଛି ।

**ଶ୍ରୀ ଲକ୍ଷ୍ମୀ ନୃସିଂହ ମନ୍ଦିର–** ଉତ୍ତର ଦ୍ୱାରସ୍ଥିତ ଏହି ମନ୍ଦିର ବାମନ ମନ୍ଦିରର ଉତ୍ତର ଦିଗରେ ଅବସ୍ଥିତ । ନୃସିଂହଙ୍କ ଜାନୁ ଦେଶରେ ଲକ୍ଷ୍ମୀ ବସି ଥିବାରୁ ଏହାଙ୍କର ନାମ ଲକ୍ଷ୍ମୀ ନୃସିଂହ ହୋଇଛି ।

**ଉତ୍ତରାୟଣୀ ମନ୍ଦିର–** ବାହାର ବେଢାର ଉତ୍ତର ଦ୍ୱାର ଆଡ଼କୁ ଆଗେଇ ଗଲେ ଲକ୍ଷ୍ମୀ ନୃସିଂହ ମନ୍ଦିର ପରେ ଏହି ମନ୍ଦିରଟି ପଡ଼େ ।

**ଶୀତଳା ଠାକୁରାଣୀ ମନ୍ଦିର–** ଉତ୍ତର ଦ୍ୱାରର ପଶ୍ଚିମ ଦିଗରେ ଶୀତଳା ଠାକୁରାଣୀଙ୍କର ମନ୍ଦିର ଅଛି । ଏକ କ୍ଷୁଦ୍ର ମନ୍ଦିର ମଧ୍ୟରେ ମା' ଉତ୍ତରାଭିମୁଖୀ ହୋଇ ବସିଛନ୍ତି । ସେ ହସ୍ତରେ ଖର୍ପ ବା କୁଲା ଧାରଣ କରିଛନ୍ତି । ଶୀତଳାଙ୍କ ମନ୍ଦିର ପ୍ରାଙ୍ଗଣରେ ଦେବସଭା ବସେ ବୋଲି କଥିତ ଅଛି । ଜଗନ୍ନାଥଙ୍କୁ ଦର୍ଶନ ନିମନ୍ତେ ଆସୁଥିବା ଦେବତାମାନେ ଏହିଠାରେ ଏକତ୍ରିତ ହୁଅନ୍ତି ବୋଲି ଶୁଣିବାକୁ ମିଳେ । ବସନ୍ତ, ମିଳିମିଳା, ହାଡ଼ଫୁଟି ଆଦି ରୋଗ ବ୍ୟାପିବା ସମୟରେ ଏଠାରେ ପଣା ଭୋଗ ଓ ଚନ୍ଦନ ଲାଗି କଲେ ରୋଗରୁ ଉପଶମ ମିଳେ । ଶୀତଳାଙ୍କୁ ବନ୍ଦନା କଲେ ଦାରିଦ୍ର୍ୟରୁ ତଥା ଦୁଷ୍କୃତିରୁ ମୁକ୍ତି ମିଳେ ବୋଲି ଜନଶ୍ରୁତି ଅଛି । ମା'ଙ୍କ ସାମ୍ନାରେ ଗୋଟିଏ ପୁରାତନ କୂଅ ଅଛି, ଯାହାର ନାମ ସୁବର୍ଣ୍ଣ କୂପ ବା ସୁନା କୂଅ । ସ୍ନାନଯାତ୍ରା ଦିନ ମହାପ୍ରଭୁଙ୍କୁ ଏଠାରୁ ଜଳ ଆଣି ସ୍ନାନ କରାଯାଏ । ଏହି କୂଅ ବର୍ଷସାରା ବନ୍ଦ ଥାଏ ।

କେହି କେହି କହନ୍ତି ଚୋଡ଼ଗଙ୍ଗ ଦେବ ମନ୍ଦିର ନିର୍ମାଣ ପୂର୍ବରୁ ସୁବର୍ଣ୍ଣ କୂଅଟିଏ କରି ମନ୍ଦିର ନିର୍ମାଣାର୍ଥେ ସୁନା ଠୁଳ କରିଥିଲେ । ମନ୍ଦିର ନିର୍ମାଣ ପରେ ସେହି ସୁନାକୁ ଜଗନ୍ନାଥଙ୍କ ରତ୍ନଭଣ୍ଡାରକୁ ନିଆଗଲା । ସେହି ସ୍ମୃତିକୁ ମନେ ପକାଇବା ପାଇଁ ଏହି କୂଅରୁ ଜଳ ନେଇ ସ୍ନାନପୂର୍ଣ୍ଣିମା ଦିନ ମହାପ୍ରଭୁଙ୍କୁ ସ୍ନାନ କରାଯାଏ ।

**ଝାଡ଼େଶ୍ୱରୀ ଠାକୁରାଣୀ ମନ୍ଦିର–** ଶୀତଳାଙ୍କ ମନ୍ଦିର ପାଖକୁ ଉତ୍ତର ଦ୍ୱାରର ପଶ୍ଚିମ ପାଖରେ ଝାଡେଶ୍ୱରୀ ଠାକୁରାଣୀ ମନ୍ଦିର ବିଦ୍ୟମାନ ।

ଶ୍ରୀମନ୍ଦିରର ବାଇଶି ପାହାଚ ଅତିକ୍ରମ କରିଗଲେ ଗୋଟିଏ ପ୍ରାଚୀର ପଡ଼େ । ଏହାକୁ କୂର୍ମ ପ୍ରାଚୀର କୁହାଯାଏ । ଏହି ପ୍ରାଚୀରରେ ମନ୍ଦିର ଭିତରକୁ ପ୍ରବେଶ କରିବା ପାଇଁ ଛଅ ଗୋଟି ଦ୍ୱାର ଅଛି ।

ଏହା ମଧ୍ୟରୁ ଚାରୋଟି ମୁଖ୍ୟ ଓ ଦୁଇଟି ବାଟ ମଧ୍ୟରୁ ଗୋଟିଏ ଆନନ୍ଦ ବଜାରରୁ ପାଟଅଗଣାକୁ ଅନ୍ୟଟି ରୋଷଘର ପାଖଦେଇ ରାସ୍ତା । ଏଠାରେ କେବଳ ଭିତର ବେଢାସ୍ଥିତ ଦେବୀମନ୍ଦିର ସମ୍ବନ୍ଧରେ ସଂକ୍ଷିପ୍ତ ଆଲୋଚନା କରାଯାଉଅଛି । ଶ୍ରୀରାଧାକୃଷ୍ଣ ମନ୍ଦିର–ସତ୍ୟନାରାୟଣଙ୍କ ମନ୍ଦିରର ପଶ୍ଚିମାଭିମୁଖୀ ହୋଇ ଗମନ କଲେ ଏକ ଉତ୍ତରାଭିମୁଖୀ ଛୋଟ ମନ୍ଦିରରେ ରାଧାକୃଷ୍ଣଙ୍କ ବିଗ୍ରହ ପୂଜା ପାଉଛନ୍ତି ।

**ବଟ ମଙ୍ଗଳା, ସର୍ବ ମଙ୍ଗଳା ମନ୍ଦିର–** କଳ୍ପବଟ ମୂଳରେ ଗଣେଶଙ୍କ ମନ୍ଦିରକୁ ପଛ କରି ପଶ୍ଚିମାଭିମୁଖୀ ହୋଇ ଯେଉଁ ମନ୍ଦିର ରହିଛି, ତାହା ବଟମଙ୍ଗଳା ମନ୍ଦିର । ଏହି ମନ୍ଦିରରେ ବିମାନ ଓ ଜଗମୋହନ ଅଛି । ମତ୍ସ୍ୟପୁରାଣ ଅନୁଯାୟୀ ସର୍ବମଙ୍ଗଳା ତନ୍ତ୍ର ସାଧନାର ପୀଠ । ସମସ୍ତ ପ୍ରକାର ମଙ୍ଗଳ ସାଧନ କରୁ ଥିବାରୁ ମା'ଙ୍କର ନାମ ସର୍ବମଙ୍ଗଳା ହୋଇଛି । ଏହି ମଙ୍ଗଳାଙ୍କୁ ପ୍ରଥମେ ଦର୍ଶନ କରି ଜଗନ୍ନାଥଙ୍କୁ ଦର୍ଶନ କରିବାର ବିଧାନ ଅଛି । ସର୍ବମଙ୍ଗଳା ମନ୍ଦିରରେ ବିମଳାଙ୍କ ମନ୍ଦିର ଭଳି ମୂଳାଷ୍ଟମୀଠାରୁ ଷୋଳପୂଜା ଅନୁଷ୍ଠିତ ହୁଏ ଓ ଦେବୀ ବିଭିନ୍ନ ବେଶରେ ସୁସଜ୍ଜିତ ହୁଅନ୍ତି । ମନ୍ଦିର ଭିତରେ ଦଶ ମହାବିଦ୍ୟାଙ୍କ ପ୍ରତିମୂର୍ତ୍ତି ଦୃଷ୍ଟିଗୋଚର ହୁଅନ୍ତି। ଓଢଣ ଷଷ୍ଠୀ, କୁମାର ପୂର୍ଣ୍ଣିମା ଓ ଷୋଳ ପୂଜା ଆଦିରେ ଠାକୁରାଣୀ ନୂତନ ବସ୍ତ୍ର ପିନ୍ଧନ୍ତି । ବଟମଙ୍ଗଳାଙ୍କ ମନ୍ଦିରର ଉତ୍ତର ପଟେ ବାହାର କାନ୍ଥରେ ସଙ୍କଟ ତାରିଣୀ ପୂଜା ପାଉଛନ୍ତି ।

**କୁତ୍ତାମ ଚଣ୍ଡୀ–** ଅନନ୍ତ ବାସୁଦେବଙ୍କ ମନ୍ଦିରର ପଶ୍ଚିମ ପାଖ କାନ୍ଥରେ କୁତ୍ତାମ ଚଣ୍ଡୀଙ୍କ ବିଗ୍ରହ ସ୍ଥାପନ କରାଯାଇଛି । ଏହାଙ୍କ ଶରୀର ଶ୍ୱାନ ପରି ଓ ମୁହଁ ଚଣ୍ଡୀଙ୍କର ଅଟେ । ତାନ୍ତ୍ରିକ ପୂଜା ପରେ ଚଣ୍ଡ ଶ୍ୱାନ ଭୈରବୀଙ୍କୁ ସମର୍ପଣ କରାଯାଏ । ଜଗନ୍ନାଥ ତନ୍ତ୍ରର ଦେବତା ହେତୁ ଏହାଙ୍କର ଚଣ୍ଡ ପ୍ରସାଦ ଶ୍ୱାନ ଭୈରବଙ୍କୁ ସମର୍ପଣ କରିବାର ବିଧି ଥିବାରୁ ପୂର୍ବେ ଏହି କୁତ୍ତାମ ଚଣ୍ଡୀ ସିଂହାସନର ପାର୍ଶ୍ୱ ଦେଶରେ ଥିଲେ । ପରବର୍ତ୍ତୀ କାଳରେ ବୈଷ୍ଣବ ଧର୍ମର ପ୍ରସାର ଫଳରେ କୁତ୍ତାମ ଚଣ୍ଡୀଙ୍କୁ ଏଠାକୁ ସ୍ଥାନାନ୍ତର କରାଯାଇଛି ।

**ମହା ବଜ୍ରେଶ୍ୱରୀ–** ଶ୍ରୀଜଗନ୍ନାଥଙ୍କର ଜଗମୋହନର ଦକ୍ଷିଣ ପଟକୁ ଲାଗି ମହା ବଜ୍ରେଶ୍ୱରୀ ମନ୍ଦିର ଅବସ୍ଥିତ । ଏହାକୁ ଇନ୍ଦ୍ରାଣୀ ବୋଲି ମଧ୍ୟ କୁହାଯାଏ । ଇନ୍ଦ୍ରାଣୀ କ୍ଷେତ୍ରପାଳ ଶିବଙ୍କ ଶକ୍ତି ଭାବରେ ପୂଜିତା । ଏହା କାମଦେବ ରାଜାଙ୍କ କୀର୍ତ୍ତି । ବିମଳା ମନ୍ଦିର–ଶ୍ରୀମନ୍ଦିରର କୂର୍ମବେଢାର ନୈଋତ କୋଣରେ ବିମଳାଙ୍କ ମନ୍ଦିର ଅବସ୍ଥିତ । ଏହି ମନ୍ଦିରରେ ବିମାନ,ଜଗ ମୋହନ,ନାଟମନ୍ଦିର ଓ ଭୋଗ ମଣ୍ଡପ ଅଛି । ଶ୍ରୀଜଗନ୍ନାଥ ମନ୍ଦିରର ମୁଖ୍ୟ ଦେବୀ ହେଉଛନ୍ତି ବିମଳା । ତେଣୁ କୁହାଯାଇଛି ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବ । ଜଗନ୍ନାଥଙ୍କ ପାଖରେ ଭୋଗ ହେଉଥିବା ପ୍ରସାଦ ବିମଳାଙ୍କୁ ସମର୍ପଣ ପରେ ମହାପ୍ରସାଦ ହୋଇଥାଏ । ମା' ବିମଳା ପଦ୍ମପୀଠ ଉପରେ ଦଣ୍ଡାୟମାନ । ସେ ଚତୁର୍ଭୁଜା, ତାଙ୍କର ଉର୍ଦ୍ଧ୍ୱ ଦୁଇ ହସ୍ତରେ ଅକ୍ଷମାଳା ଓ ପାଶ ରହିଛି ଏବଂ ତଳ ଦୁଇ ହସ୍ତରେ ସୁଧା କଳସ ଓ ଅଭୟ ମୁଦ୍ରା ରହିଛି । ବିମଳା ହେଉଛନ୍ତି ତ୍ରିଗୁଣାତ୍ମିକା ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀଙ୍କର ସମନ୍ୱୟ ରୂପ । ଶାସ୍ତ୍ରରେ ଉଲ୍ଲେଖ ଅଛି ଯେ ଦକ୍ଷକନ୍ୟା ସତୀଙ୍କର ଶବକୁ ଧରି ଶିବ ଯେତେବେଳେ ସମସ୍ତ ତୀର୍ଥସ୍ଥଳ ବୁଲିବା ଆରମ୍ଭ କରିଦେଲେ, ସେତେବେଳେ ଦେବତାଙ୍କ ଅନୁରୋଧରେ ଶ୍ରୀବିଷ୍ଣୁ ଶିବଙ୍କ ଅଜ୍ଞାତରେ ସତୀଙ୍କ ଶରୀର ସୁଦର୍ଶନ ଚକ୍ର ଦ୍ୱାରା ସମୁଦାୟ ୧୦୮ ଖଣ୍ଡରେ କାଟି ପକେଇଲେ । ଏହି ସବୁ ଶରୀରାଂଶ ପଡ଼ିଥିବା ସ୍ଥାନ ଶକ୍ତିପୀଠ ରୂପେ ପରିଚୟ ହାସଲ କଲା । ବିମଳାଙ୍କ ପୀଠରେ ସତୀଙ୍କର ନାଭି ପଡ଼ିଥିଲା ବୋଲି ତନ୍ତ୍ର ଚୂଡ଼ାମଣିରେ ଉଲ୍ଲେଖ ଅଛି । ବିମଳାଙ୍କ ପୂଜା ମଧ୍ୟରୁ ଷୋଳ ପୂଜା ଶ୍ରେଷ୍ଠ ପୂଜା ଅଟେ । ଆଶ୍ୱିନ ମାସର ଦୁର୍ଗା ପୂଜା ସମୟରେ ଏହି ଷୋଳପୂଜା ଅନୁଷ୍ଠିତ ହୁଏ । ଏହି ପୂଜାରେ ମାଧବ ବିମଳାଙ୍କ ସହ ଆଠଦିନ ଯାଏଁ ବସନ୍ତି, ପରେ ଆଉ ଆଠଦିନ ନାରାୟଣଙ୍କ ପାଖରେ ବସନ୍ତି । ଏହି ସମୟରେ ମା'ଙ୍କର ଅନେକ ବେଶ ହୁଏ । ବିମଳାଙ୍କ ମନ୍ଦିରର ଜଗମୋହନ ନୈଋତ କୋଣରେ ଦକ୍ଷିଣ କାଳୀ ବିରାଜମାନ କରିଛନ୍ତି । ନାଟମନ୍ଦିରରେ ଦଶମହାବିଦ୍ୟା ଓ ଗଣେଶ, କାର୍ତ୍ତିକେୟ, ଛାୟାମାୟା ବିଗ୍ରହ ଦର୍ଶକଙ୍କ ଦୃଷ୍ଟି ଆକର୍ଷଣ କରେ । ଏକାଦଶୀ ଦେବୀ–ସାକ୍ଷୀଗୋପାଳ ମନ୍ଦିର ସାମ୍ନାରେ ଶ୍ରୀମନ୍ଦିର ପଶ୍ଚିମ କାନ୍ଥ ବାହାର ପାଖରେ ଚଟାଣକୁ ଲାଗି ଯେଉଁ କ୍ଷୁଦ୍ର ମନ୍ଦିର ଅଛି, ତାହା ଏକାଦଶୀ ଠାକୁରାଣୀଙ୍କ ମନ୍ଦିର । ଶ୍ରୀକ୍ଷେତ୍ରରେ ନିରାହାର ରହି ଏକାଦଶୀ ପାଳନ କରିବାର ବିଧି ନଥିବାରୁ ମହାପ୍ରଭୁ ଏକାଦଶୀ ଦେବୀଙ୍କୁ ବନ୍ଧନ କରି ଏଠାରେ ରଖିଥିବାର ଜନଶ୍ରୁତି ଅଛି ।

**ପଞ୍ଚଶକ୍ତି ମନ୍ଦିର–** ଗୋପୀନାଥ ମନ୍ଦିରକୁ ଲାଗି ପଞ୍ଚଶକ୍ତି ମନ୍ଦିର ଅଛି । ଏହି ମନ୍ଦିର ଭିତରେ ପଞ୍ଚଶକ୍ତି ଯଥା–ସରସ୍ୱତୀ, ଗାୟତ୍ରୀ, ସାବିତ୍ରୀ, ଷଷ୍ଠୀ ଓ ଭୁବନେଶ୍ୱରୀ ଅଛନ୍ତି । ବାସ୍ତବିକ ଏହି ମନ୍ଦିରଟି ଭୁବନେଶ୍ୱରୀଙ୍କର । ଏହି ମନ୍ଦିରର ବାମ ପଟେ ସରସ୍ୱତୀ, ଡାହାଣ ପଟେ ଷଷ୍ଠୀ, ସାବିତ୍ରୀ, ଗାୟତ୍ରୀ ଅଛନ୍ତି । ମନ୍ଦିର କାନ୍ଥରେ ଜଗନ୍ନାଥଙ୍କର ଏକ ଚିତ୍ର ଅଛି । ଭୁବନେଶ୍ୱରୀଙ୍କୁ କେହି କେହି କମଳା ମଧ୍ୟ କହିଥାଆନ୍ତି । ଏହି ମନ୍ଦିରରେ ଥିବା




ସମସ୍ତ ଦେବୀଙ୍କୁ ସକାଳ ଧୂପରୁ ମହାପ୍ରସାଦ ଅଣାଯାଇ ସମର୍ପଣ କରାଯାଏ । ଆଶ୍ୱିନ ମାସର ଷୋଳ ପୂଜା ସମୟରେ ଭୁବନେଶ୍ୱରୀଙ୍କ ପାଖରେ ପୁଜା କରାଯାଇଥାଏ ଓ ବେଶ କରାଯାଇଥାଏ ମାତ୍ର ବଳି ଦିଆଯାଏ ନାହିଁ । ଷଷ୍ଠୀ ଠାକୁରାଣୀଙ୍କ ପାଖରେ ଷଷ୍ଠୀ ଓଷା ଦିନ ପୂଜା କରାଯାଏ ଏବଂ ପିଲାମାନଙ୍କର ଜନ୍ମ ଦିନରେ ମଧ୍ୟ ପୂଜା କରାଯାଏ । ସାବିତ୍ରୀଙ୍କ ପାଖରେ ସଧବା ସ୍ତ୍ରୀମାନେ ସାବିତ୍ରୀ ଅମାବାସ୍ୟାରେ ସ୍ୱାମୀଙ୍କ ମଙ୍ଗଳ କାମନା କରି ପୂଜା କରି ଥାଆନ୍ତି । ଗାୟତ୍ରୀ ବେଦମାତା ଭାବରେ ପୂଜା ପାଆନ୍ତି । ବସନ୍ତ ପଞ୍ଚମୀ ଦିନ ମା' ସରସ୍ୱତୀଙ୍କୁ ପୂଜା କରାଯାଇଥାଏ । ସରସ୍ୱତୀ ବିଦ୍ୟାଦାତ୍ରୀ ହେଲେ ମଧ୍ୟ ତାଙ୍କର ନିଜର ମନ୍ଦିର ନାହିଁ । ବସନ୍ତ ପଞ୍ଚମୀ ଦିନ ଏଠାରେ ବାଇଶି ଗୋଟି ନଡ଼ିଆ ଭଙ୍ଗାଯାଏ ଏବଂ ପାଞ୍ଜିପୂଜାର ବିଧାନ ଅଛି । ଭୁବନେଶ୍ୱରୀଙ୍କର ମୂର୍ତ୍ତି ନିର୍ମାଣ ବିଷୟରେ ଏକ ସୁନ୍ଦର କଥା ଶୁଣିବାକୁ ମିଳେ । ଥରେ ଜଣେ ବୃଦ୍ଧ ବ୍ରାହ୍ମଣ ଭୁବନେଶ୍ୱରୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ଖଣ୍ଡିଏ ବଡ଼ ପଥର ଉପରେ ବସି ଜପ ଧ୍ୟାନ ଓ ତର୍ପଣ ଆଦି କରେ ।ସେ ଅନେକ ଚେଷ୍ଟା କରି ମଧ୍ୟ ମା'ଙ୍କୁ ସନ୍ତୁଷ୍ଟ କରି ପାରିଲେ ନାହିଁ । ହତାଶରୁ ତା'ର ଦୁଃଖ ଓ କ୍ରୋଧ ପ୍ରଜ୍ୱଳିତ ହେଉଥିବା ସମୟରେ ଭୁବନେଶ୍ୱରୀ ପ୍ରକଟ ହୋଇ ବର ମାଗିବା ପାଇଁ କହିଲେ । ବୃଦ୍ଧ ରାଗରେ ତାଙ୍କୁ ସେ ବସି ଜପ କରୁଥିବା ପଥରଟିକୁ ବୋହି ତା ପଛେପଛେ ଆସିବା ପାଇଁ କହିବାରୁ ଭୁବନେଶ୍ୱରୀ ସେ ପଥର ବୋହି ବ୍ରାହ୍ମଣର ପଛରେ ଚାଲିଲେ । ବ୍ରାହ୍ମଣ ଏହା ପରେ ଅନେକ ସ୍ଥାନ ବୁଲିବାକୁ ଲାଗିଲା, ତା' ସହିତ ଭୁବନେଶ୍ୱରୀ ମଧ୍ୟ ଯିବାକୁ ଲାଗିଲେ । ବ୍ରାହ୍ମଣ ଯାହା ଘରେ ରାତ୍ରୀ ଯାପନ କରେ ସେ ଘର ମାଲିକକୁ ତା' ପରଦିନ ସକାଳେ ବର ମାଗିବା ପାଇଁ କହେ । ଏଣୁ ଭୁବନେଶ୍ୱରୀ ଜଣେ ଘର ମାଲିକକୁ ଏହି ପଥର ଖଣ୍ଡିକ ମାଗିବା ପାଇଁ ଅନୁରୋଧ କରିବାରୁ ଘର ମାଲିକ ସେହିପରି କରନ୍ତେ ଭୁବନେଶ୍ୱରୀ ମୁକ୍ତ ହେଲେ ଓ ପରବର୍ତ୍ତୀ ସମୟରେ ସେହି ପଥରରେ ଭୁବନେଶ୍ୱରୀଙ୍କର ବିଗ୍ରହ ନିର୍ମାଣ ହୋଇଥିବା କଥା ଶୁଣାଯାଏ ।

**ଭଦ୍ରକାଳୀ, ବେଢାକାଳୀ–** ନୀଳମାଧବଙ୍କ ମନ୍ଦିରର ଟିକିଏ ଭିତରକୁ ବେଢାକାଳୀଙ୍କ ମନ୍ଦିର ଅବସ୍ଥିତ । କାଳୀ ଦେଖିବାକୁ ଅତି ଭୟଙ୍କର । କେହି କେହି ଏହି କାଳୀଙ୍କୁ ମନ୍ଦିର ରକ୍ଷକ କହି ଥାଆନ୍ତି । ଏହାଙ୍କୁ ଭଦ୍ରକାଳୀ ବା ଯନ୍ତ୍ରକାଳୀ ମଧ୍ୟ କୁହାଯାଏ ।

**ଲକ୍ଷ୍ମୀନାରାୟଣ ମନ୍ଦିର–** ବେଢାକାଳୀଙ୍କ ମନ୍ଦିର କଡ଼କୁ ଲକ୍ଷ୍ମୀନାରାୟଣ ମନ୍ଦିର । ଏହି ମନ୍ଦିର ମଧ୍ୟରେ ଲକ୍ଷ୍ମୀନାରାୟଣ ବିଗ୍ରହ ପୂଜା ପାଉ ଅଛନ୍ତି । ମହାଲକ୍ଷ୍ମୀ ମନ୍ଦିର ଭିତର ବେଢାର ବାୟୁ କୋଣରେ ଅବସ୍ଥିତ । ଏହି ମନ୍ଦିରର ଜଗମୋହନ କାନ୍ଥରେ ଗଣେଶ, ହନୁମାନ, ନୃସିଂହ, ବରାହ ଓ ଲକ୍ଷ୍ମୀନୃସିଂହଙ୍କ ଚିତ୍ର ଅଛି । ଲକ୍ଷ୍ମୀଙ୍କର ସ୍ୱତନ୍ତ୍ର ରୋଷ ଘର ଅଛି । ଜଗନ୍ନାଥଙ୍କର ଶକ୍ତି ଲକ୍ଷ୍ମୀଙ୍କ ସହ ପ୍ରତି ଗୁରୁବାର ପ୍ରଭୁଙ୍କର ଏକାନ୍ତ ହୁଏ । କୁମାର ପୂର୍ଣ୍ଣିମା ଦିନ ଲକ୍ଷ୍ମୀ ମହାପ୍ରଭୁଙ୍କ ସହ ଦ୍ୟୁତକ୍ରୀଡ଼ା କରନ୍ତି । ଶୟନ ଠାକୁର ହେଉଛନ୍ତି ଲକ୍ଷ୍ମୀନାରାୟଣଙ୍କର ସମନ୍ୱିତ ବିଗ୍ରହ । ଗୁରୁବାର ଦିନ ମାଜଣା ମଣ୍ଡପରେ ଲକ୍ଷ୍ମୀନାରାୟଣଙ୍କର ବନ୍ଦାପନା ହୁଏ । ବଡ଼ ଦେଉଳ ବେଢା ବୁଲିବା ସମୟରେ ଲକ୍ଷ୍ମୀଙ୍କ ମନ୍ଦିରରେ କିଛି ସମୟ ବସିବାର ବିଧାନ ଅଛି । ମନ୍ଦିରରେ ବସି ସ୍ତ୍ରୀ ଲୋକମାନେ ପଦ୍ମଫୁଲ ଅଙ୍କନ କଲେ ମା' ସନ୍ତୁଷ୍ଟ ହୁଅନ୍ତି ବୋଲି କଥିତ ଅଛି । ଶୀତଳ ଷଷ୍ଠୀଦିନ ଏହି ମନ୍ଦିରରେ ଶିବପାର୍ବତୀଙ୍କୁ ବନ୍ଦାପନା କରାଯାଏ ।

ଲକ୍ଷ୍ମୀ ମନ୍ଦିର ଉତ୍ତର ପଶ୍ଚିମ ଦିଗରେ ଲକ୍ଷ୍ମୀଙ୍କ ଭଣ୍ଡାର ଘର ଅଛି । ଏହି ଭଣ୍ଡାରରୁ ଲକ୍ଷ୍ମୀ ଓ ଜଗନ୍ନାଥଙ୍କ କୋଠ ଭୋଗ ପାଇଁ ସମସ୍ତ ସାମଗ୍ରୀ ଯୋଗାଇ ଦିଆଯାଏ । ଲକ୍ଷ୍ମୀନାରାୟଣ ମନ୍ଦିର ନବଗ୍ରହ ମନ୍ଦିରର ପୂର୍ବ ଦିଗରେ ଅଛି । ଏହି ମନ୍ଦିର ମଧ୍ୟରେ ରାଧାବଲ୍ଲଭ ଓ ଲକ୍ଷ୍ମୀନାରାୟଣ ଆଦି ପୂଜା ପାଉଛନ୍ତି । ଶ୍ରୀରାଧାକୃଷ୍ଣ ମନ୍ଦିର ଶ୍ରୀମନ୍ଦିର କାର୍ଯ୍ୟାଳୟ ସାମ୍ନାର ଭୋଗ ମଣ୍ଡପ କଡ଼ରେ ଓ ସାତ ପାହାଚ ଦ୍ୱାରର ପୂର୍ବ ଦିଗରେ ଅବସ୍ଥିତ । ସାରୀମନ୍ଦିର ପାଦପଦ୍ମ ନିକଟରେ ଅବସ୍ଥିତ । ଶ୍ରୀମନ୍ଦିରରେ ସମସ୍ତ ଦେବାଦେବୀମାନଙ୍କୁ ଦର୍ଶନ କରି ଘରକୁ ଫେରିବା ସମୟରେ ପାଟଅଗଣାରେ ଛିଡ଼ା ହୋଇ ଲକ୍ଷ୍ମୀନାରାୟଣ ଓ ନୀଳଚକ୍ରକୁ ପ୍ରଣତି ଜଣାଇ ଆନନ୍ଦ ବଜାରରେ ମହାପ୍ରସାଦ ପାଇ ସିଂହଦ୍ୱାର ବାଟେ ଘରକୁ ଫେରିବାକୁ ହୁଏ । ଶ୍ରୀମନ୍ଦିର ମଧ୍ୟରେ ଥିବା ଦେବାଦେବୀମାନଙ୍କର ବିବରଣୀ ପାଇ ସାରିବା ପରେ ଶ୍ରୀମନ୍ଦିର ଯେ ଏକ ବୃହତ ଅନୁଷ୍ଠାନ ତାହା ପ୍ରମାଣିତ ହୁଏ । ଏହିଭଳି ଏକ ମନ୍ଦିରର ପରିକଳ୍ପନା ଆମ ଓଡ଼ିଶାର ଲୋକ କରିଥିଲେ ବୋଲି ଜାଣି ମନରେ ଗର୍ବ ଆସିବା ସ୍ୱାଭାବିକ ।

ଅଧ୍ୟାପକ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
କପ୍ତିପଦା ମହାବିଦ୍ୟାଳୟ, ନୂଆସାହି, ମୟୂରଭଞ୍ଜ

# ଚିଲିକା କାବ୍ୟରେ ରାଧାନାଥଙ୍କ ବିଷାଦବାଦର ସ୍ୱର

ଡକ୍ଟର ବିରଂଚି ସାହୁ

ଆଧୁନିକ ଓଡ଼ିଆ ସାହିତ୍ୟର ପୃଷ୍ଠା ପ୍ରଥମେ ଉନ୍ମୋଚନ କଲେ ଯିଏ ଆମ ଆଖି ସାମ୍ନାକୁ ଆସନ୍ତି, ସେ ହେଲେ ଯୁଗସ୍ରଷ୍ଟା ରାଧାନାଥ ରାୟ (୧୮୪୮–୧୯୦୮) । ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ନାମକରଣ ତାଙ୍କରି ନାଁରେ ହିଁ ସମ୍ଭବ ହୋଇଛି, ରାଧାନାଥ ଯୁଗ ଭାବରେ । ବିଶେଷ କରି କାବ୍ୟ ନିର୍ମାଣ କରି ସେ ଓଡ଼ିଆ ସାହିତ୍ୟକୁ ନୂତନତାର ମନ୍ତ୍ରରେ ଅଭିମନ୍ତ୍ରିତ କରାଇ ସମୃଦ୍ଧ କରିଛନ୍ତି । ଏହା ସହିତ ମଧ୍ୟ ସେ ପ୍ରବନ୍ଧ ରଚନା କରିଛନ୍ତି, ଅନୁବାଦ କରିଛନ୍ତି ଓ ସ୍କୁଲ ପାଠ୍ୟକ୍ରମ ପାଇଁ ମଧ୍ୟ କିଛି ଲେଖିଛନ୍ତି । ରାଧାନାଥଙ୍କୁ ନେଇ କେତେ ଯେ ହଟ ଚମଟ ଓଡ଼ିଆ ସାହିତ୍ୟରେ ଲାଗିଥିଲା, ତା'ର ଇୟତା ନାହିଁ । 'ଇନ୍ଦ୍ରଧନୁ' ଓ 'ବିଜୁଳି' ତା'ର ଉଦାହରଣ । ଗୋଟେ ପଟେ ପ୍ରାଚୀନ ସାହିତ୍ୟ (ଉପେନ୍ଦ୍ର ଭଂଜ) ଅନ୍ୟ ପଟେ ରାଧାନାଥଙ୍କୁ ନେଇ ଝଡ଼ । ରାଧାନାଥଙ୍କ ସାରା ଜୀବନ ଥିଲା ବିବିଧ ଘୂର୍ଣ୍ଣିରେ ପୂର୍ଣ୍ଣ । ପିଲାବେଳୁ ରୋଗାକ୍ରାନ୍ତ ଶରୀର । ମଝିରେ ମଝିରେ ସାହିତ୍ୟକୁ ନେଇ ବିଭିନ୍ନ କୁତ୍ସାରଟନା, ଏସବୁକୁ ସହ୍ୟ କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ ସେ ଯେଉଁ ଭୂମିକା ଗ୍ରହଣ କରିଥିଲେ, ତାହା ଅବିସ୍ମରଣୀୟ । ପାଶ୍ଚାତ୍ୟ ସାହିତ୍ୟରେ ଅବଗାହୀ ରାଧାନାଥଙ୍କ ଲେଖନୀର ଅମୃତ ସ୍ପର୍ଶରେ କାବ୍ୟର ମନ୍ଦାକିନୀ ଧାରା ପ୍ରବାହିତ ହୋଇଛି । ପାଶ୍ଚାତ୍ୟର ଆହରଣ ଆଉ ଓଡ଼ିଶୀ ପରିବେଶରେ ତା'ର ସମୀକରଣ, ବାସ୍ତବିକ ଏକ ଭିନ୍ନ ସ୍ରଷ୍ଟାର ଆସନରେ ତାଙ୍କୁ ଅଧିଷ୍ଠିତ କରାଇ ପାରିଛି । କେଦାର ଗୌରୀ, ନନ୍ଦିକେଶ୍ୱରୀ, ଚିଲିକା, ମହାଯାତ୍ରା, ପାର୍ବତୀ, ଉଷା, ଦରବାର, ଯଯାତିକେଶରୀ, ତୁଳସୀ ସ୍ତବକ, ଦଶରଥ ବିୟୋଗ ଆଦି କାବ୍ୟ, ମହାକାବ୍ୟ ଓ ଖଣ୍ଡ କାବ୍ୟ ରଚନା କରି ରାଧାନାଥ ପାଲଟି ଯାଇଛନ୍ତି ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ନିର୍ମାତା । ରାଧାନାଥ ଥିଲେ ଆଜନ୍ମ ରୋଗାକ୍ରାନ୍ତ । ରୋଗାକ୍ରାନ୍ତ ଜୀବନ, ଭଗ୍ନ ମନୋରଥ ତାଙ୍କ ସାହିତ୍ୟ ସାଧନାରୁ ତାଙ୍କୁ ବିଚ୍ୟୁତ କରି ପାରିନାହିଁ । ତା'ଛଡ଼ା ତାଙ୍କର ଏକ ମାତ୍ର ପୁତ୍ର ଶଶୀଭୂଷଣ ମଧ୍ୟ ରୋଗାକ୍ରାନ୍ତ । 'ପାର୍ବତୀ' କାବ୍ୟରେ ଯେତେବେଳେ ସେ ପିତା ଓ କନ୍ୟା ମଧ୍ୟରେ ଦୈହିକ ସଂପର୍କର କଥା ବର୍ଣ୍ଣନା କଲେ, ସେତେବେଳେ ତାଙ୍କୁ ତୀବ୍ର ସମାଲୋଚନା କରାଯାଇଥିଲା । 'ମହାଯାତ୍ରା' ମହାକାବ୍ୟରେ ଇଂରେଜମାନଙ୍କ ସଂପର୍କରେ କିଛି ବର୍ଣ୍ଣନା ଥିବାରୁ ତହିଁରୁ କିଛି ଅଂଶ ପୋଡ଼ି ପକାଇଥିଲେ । ଉତ୍ତୀର୍ଣ୍ଣ ବୟସରେ ବଂଗୀୟ ବିଦୂଷୀ ନଗେନ୍ଦ୍ରବାଳାଙ୍କ ସହିତ ତାଙ୍କର ପ୍ରେମ ସଂପର୍କକୁ ନେଇ ମାନସିକ ଅଶାନ୍ତି, ଏସବୁ ଏକାଠି ହୋଇ ରାଧାନାଥଙ୍କୁ ଦଂଶନ କରୁଥିଲେ ଯେମିତି । ତା'ରି ଭିତରୁ ମୁକ୍ତି ପାଇବାକୁ ସେ ବ୍ୟାକୁଳ ହୋଇ ଉଠୁଥିଲେ । 'ଚିଲିକା' ଖଣ୍ଡ କାବ୍ୟରେ ରହିଛି କବିଙ୍କର ଏତାଦୃଶ ଜୀବନର ଦୁଃଖଦ ବର୍ଣ୍ଣନା, ବିଷାଦପୂର୍ଣ୍ଣ ଜୀବନର ବାର୍ତ୍ତା ।

'ଚିଲିକା' ଖଣ୍ଡ କାବ୍ୟଟି ୧୮୯୧ ସାଲ ସେପ୍ଟେମ୍ବରରେ 'ଉତ୍କଳ ପ୍ରଭା'ରେ ଗୋଟିଏ ସଂଖ୍ୟାରେ ସମୁଦାୟ ଅଂଶ ପ୍ରକାଶିତ । ସର୍ବମୋଟ ନଅଟି ଅନୁଚ୍ଛେଦରେ ବିଭକ୍ତ । ଚିଲିକା ରାଧାନାଥଙ୍କ ସୃଷ୍ଟିର ଅଦ୍ୱିତୀୟ ଓ ଅନୁପମ କଳା । ଚିଲିକାର ବର୍ଣ୍ଣୋତ୍ସବମୟ ସଂଧ୍ୟାକାଳୀନ ମନୋଲୋଭା ଦୃଶ୍ୟଠାରୁ ଆରମ୍ଭ କରି ଚାରୁଚିତ୍ରପଟ ବର୍ଣ୍ଣନା ଅତ୍ୟନ୍ତ ରମଣୀୟ । ତା' ସହ ରହିଛି ଏକ ବିଶେଷ ଉପସ୍ଥାପନା ତାଙ୍କର ବିଷାଦବାଦିତା । ଏ ଦୁଇଟି ମିଶି କାବ୍ୟକୁ କରିଛି ରସାଣିତ । 'ଚିଲିକା' ପାଲଟିଛି କାବ୍ୟ ନାୟିକା । ନାୟିକା ପାଖରେ ନିଜ ମନର ସଂଗୁପ୍ତ ବେଦନାକୁ ବଖାଣିଛନ୍ତି । ସଂସାରରେ ଥାଇ ଯେତେବେଳେ ସଂସାର ତାଙ୍କୁ ଅସହ୍ୟବୋଧ ହୋଇଛି, ସେତେବେଳେ ରାଧାନାଥ ଚାହିଁଛନ୍ତି ଚିଲିକାର ପଶ୍ଚିମ ତୀରରେ ଅବଶିଷ୍ଟ ଜୀବନକୁ ଅତିବାହିତ କରିବା ପାଇଁ । ଚିଲିକାର ପ୍ରାକୃତିକ ଶୋଭା ତାଙ୍କୁ ଆକୃଷ୍ଟ କରିଛି । ରାଧାନାଥ ଥିଲେ ପ୍ରକୃତି ପ୍ରେମୀ । ପ୍ରକୃତିର ନିସର୍ଗ ଉଦ୍‌ଗାତା




ରାଧାନାଥଙ୍କୁ ପ୍ରାକୃତିକ ଶୋଭା ଆକୃଷ୍ଟ କରିଛି । ଏକ ସାୟଂ କାଳରେ ଚିଲିକାର ବର୍ଣ୍ଣୋତ୍ସବମୟ ଦୃଶ୍ୟକୁ କବି ଅବଲୋକନ କରି ବିହ୍ୱଳିତ ହୋଇ ଉଠିଛନ୍ତି । ପ୍ରକୃତିର ଚାରୁ ଆଲେଖ୍ୟରେ କବି ଚିତ୍ତ ଆନମନା ହୋଇ ଉଠିଛି । ସନ୍ଧ୍ୟା କାଳରେ ବିଭିନ୍ନ ଆଲୋକରେ ସଜ୍ଜିତ ଗୃହର ଦୃଶ୍ୟରେ କବି ଘୋର ଦୁଃଖିତ । କାରଣ, ନିଜେ ସେ ଏ ସୁଖର ଭାଜନ ନୁହନ୍ତି । ସଂସାରର ନିଗଡ଼ ବନ୍ଧନରେ ଥାଇ ମଧ୍ୟ କବି ଚାହିଁ ଥିଲେ ଚିଲିକାର ପଶ୍ଚିମ ତୀରରେ ଅବସ୍ଥାନ କରି ବାକି ଜୀବନ କଟାଇବେ, ଆଉ ଚିଲିକାର ସୌନ୍ଦର୍ଯ୍ୟକୁ ଆକଣ୍ଠ ପାନ କରିବେ । କବିଙ୍କ ଭାଗ୍ୟ କବିଙ୍କୁ ସାହାଯ୍ୟ କରିପାରି ନାହିଁ । ଭାଗ୍ୟର ପ୍ରତିକୂଳ ଯୋଗୁଁ ତାଙ୍କ ଆଶା ଆକାଶ କୁସୁମରେ ପରିଣତ ହୋଇଛି । କବିଙ୍କ ଭାଷାରେ –

ସଂସାରେ ଥାଇ ମୁଁ ସଦା ଉଦାସୀନ
ଉଦାସୀନ ପ୍ରାୟେ କଟାଇଲି ଦିନ
ସଂସାରୀ ସଂଗତେ ସଂଗୀ ହେବା ପାଇଁ
କେବେ ହେଁ ମୋହର ମନ ବଳେ ନାହିଁ ।

କବି ଦୁଃଖର ଆବର୍ତ୍ତରେ ଯେମିତି ଛଟପଟ ହୋଇଛନ୍ତି । ସଂସାରରେ ଥିବା ବ୍ୟକ୍ତିମାନଙ୍କ ସହିତ ସାଥୀ ହୋଇପାରି ନାହାନ୍ତି କିମ୍ବା ତାଙ୍କର ସେ ଦିଗ ପ୍ରତି ଆଶା ମଧ୍ୟ ବଳି ନାହିଁ । କବି ଏଠି ଖୁବ୍ ଭାଗ୍ୟବାଦୀ ହୋଇ ପଡ଼ିଛନ୍ତି । ଭାଗ୍ୟ ତାଙ୍କୁ ଯେମିତି ସାହା ହୋଇ ନାହିଁ, ବାରଂବାର ସେ ଭାଗ୍ୟକୁ ନିନ୍ଦା କରିଛନ୍ତି ।

ଛାର ଭାଗ୍ୟ ମୋର ପିହିତ ପାଷାଣେ
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ
ଚିର ହାହାମୟ ଏ ଛାର ଜୀବନ
ଜୀବନ ନୁହଇଁ ଜୀବନ୍ତ ମରଣ ।

କବି ବାଲ୍ୟକାଳରୁ ଦୁଃଖ ସହିତ ଏତେ ପରିଚିତ ଥିଲେ ଯେ, ସେ ନିଜକୁ ମନେ କରିଛନ୍ତି ଦୁଃଖ-ଗୁରୁଙ୍କର ପଟ୍ଟଶିଷ୍ୟ । ସେ ଦୁଃଖଦତ୍ତ ଜ୍ଞାନ ଚକ୍ଷୁରେ ଜଗତକୁ ଦେଖିବାର ଚେଷ୍ଟା କରିଛନ୍ତି । ସେ ଜାଣିଛନ୍ତି ସାଂସାରିକ ସୁଖ ପ୍ରକୃତ ସୁଖ ନୁହେଁ, ତାହା ସାମୟିକ ଭାବେ ଆସେ ଓ ଚାଲିଯାଏ । ଜାଗତିକ ସୁଖକୁ କବି ଧୂମ ଭାବରେ ପରିକଳ୍ପନା କରିଛନ୍ତି, ଯାହା ଆକାଶ କୁସୁମ ଭଳି ଅବାସ୍ତବ ମନେ ହୋଇଥାଏ । ତାଙ୍କ ଲେଖନୀରେ ତାହା ଏହିପରି ପ୍ରକାଶିତ –

ସୁଖ ବୋଲି ଯାକୁ ବୋଲଇ ସଂସାର
କରୁଥାଇ ତାକୁ ଦୂରୁ ମୁଁ ଜୁହାର
ସୁଖ ରୂପେ ଯାହା ଜନନେତ୍ରେ ଦିଶେ
ହାତେ ଆସେ, ହାତୁଁ ପଡ଼ିବା ପାଇଁ ସେ
ବସ୍ତୁ ନୁହଁଇ ଅଟଇଟି ଧୂମ
ଅନ୍ୟ ନାମ ତା'ର ଆକାଶ କୁସୁମ ।

ଚିଲିକା କାବ୍ୟରେ ରାଧାନାଥଙ୍କ ଜୀବନବୋଧ ସଂପର୍କରେ ଏକ ସ୍ୱତନ୍ତ୍ର ଦୃଷ୍ଟିଭଂଗୀ ଲକ୍ଷ୍ୟ କରାଯାଏ । ସୁଖ ଗୋଟେ ବସ୍ତୁ ନୁହେଁ, ଧୂଆଁବାଣ । ରାଧାନାଥ ଦୁଃଖର କରୁଣ ରାଗିଣୀ ବୁହାଇ ତାଙ୍କ ଅନ୍ତରର ଭାବକୁ ବ୍ୟକ୍ତ କରିବାରେ ତିଳେମାତ୍ର କୁଣ୍ଠାବୋଧ କରି ନାହାନ୍ତି କିମ୍ବା କପଟଚାରିତା ମଧ୍ୟ ଦେଖାଇ ନାହାନ୍ତି । କିନ୍ତୁ ଏଥିରୁ ଗୋଟିଏ କଥା ସ୍ୱଷ୍ଟ ହୋଇଯାଇଛି ଯେ, ଦୁଃଖର ଏ ପ୍ରକାର ସାମ ସଂଗୀତ ଶୁଣାଉଥିବା କବି ମଣିଷଟି ଓଡ଼ିଆ ବାଣୀ ଭଣ୍ଡାରକୁ, ପୁଣି କାବ୍ୟ– କବିତାର ଅପୂର୍ବ ସମ୍ଭାର ଭେଟି ଦେଇଛନ୍ତି, ଯେଉଁଥିରେ ଆଶାର ବାଣୀ ସଂଚାର ହୋଇଛି ।

'ଚିଲିକା'ର ରଚନା ସମୟ ୧୮୯୧ ଏବଂ ପରେ ୧୯୦୭ ମସିହା ପର୍ଯ୍ୟନ୍ତ ତାଙ୍କ ଲେଖନୀ ଚାଲୁ ରହିଥିଲା । ୧୯୦୮ ମସିହାରେ ତାଙ୍କର ମହାପ୍ରୟାଣ ହୋଇଥିଲା । ଅର୍ଥାତ୍ ୧୮୯୧ ମସିହାରେ ଯେତେବେଳେ କବି ଦୁଃଖର ରାଗିଣୀ ଶୁଣାଇ 'ଚିଲିକା'ର ପଶ୍ଚିମ ତୀରରେ ପରବର୍ତ୍ତୀ ଜୀବନକୁ କଟାଇ ବାକୁ ଚାହୁଁଥିଲେ । ତା'ପରେ ପ୍ରାୟ ୧୬ ବର୍ଷ କଲମକୁ ଶକ୍ତ କରି ମହାଯାତ୍ରା, ତୁଳସୀ ସ୍ତବକ, ଯଯାତିକେଶରୀ, ଉର୍ବଶୀ, ଦରବାର, ଦଶରଥ ବିୟୋଗ, ସାବିତ୍ରୀ ଚରିତ ଆଦି କାବ୍ୟ କବିତାମାନ ରଚନା କରି ଅପୂର୍ବ କବି ଶକ୍ତିର ପରିଚୟ ଦେଇ ଯାଇଛନ୍ତି । ଦୁଃଖ-ଜର୍ଜରିତ, ସମାଲୋଚିତ, ରୋଗାକ୍ରାନ୍ତ ଶରୀରକୁ ନେଇ ରାଧାନାଥ ଓଡ଼ିଆ କାବ୍ୟ ବିତାନକୁ ଯେପରି ସୁଶୋଭିତ, ମହିମାମଣ୍ଡିତ କରି ଯାଇଛନ୍ତି, ତା'ର ପଟାନ୍ତର ନାହିଁ । ସର୍ବସ୍ୱ ତ୍ୟାଗ କରି କବି ଯଦି ବାକି ଜୀବନକୁ ଚିଲିକାରେ କଟାଇଥାନ୍ତେ ତେବେ ଆମେ ତାଙ୍କର ଏସବୁ ସୃଷ୍ଟି ସମ୍ଭାରକୁ ପାଇଥାନ୍ତେ କି ନା' ତାହା କହିବା କଷ୍ଟକର ହୋଇଥା'ନ୍ତା । ତେଣୁ ତାଙ୍କ ବିଷାଦବାଦ ନୂଆ ଆଶାବାଦରେ ପରିଣତ ହୋଇଛି । ତାଙ୍କ ଦୁଃଖରୁ ହିଁ ପରବର୍ତ୍ତୀ ଓଡ଼ିଆ ସାହିତ୍ୟ ସୁଖ ଓ ସମୃଦ୍ଧିରେ ପରିପୂର୍ଣ୍ଣ ହୋଇଛି, ଏକଥାକୁ ନିର୍ବିବାଦରେ ହୁଏତ ଗ୍ରହଣ କରାଯାଇପାରେ ।

ଅଧ୍ୟାପକ, ଓଡ଼ିଆ ବିଭାଗ
ଆର୍.ଡ଼ି.ଏସ୍. ଡିଗ୍ରୀ ମହାବିଦ୍ୟାଳୟ
କୁଣ୍ଡାବାଇ, ମୟୂରଭଂଜ





# ସ୍ୱଭାବ କବି ଗଙ୍ଗାଧରଙ୍କ ସାରସ୍ୱତ ସୃଷ୍ଟି– ଏକ ସଂକ୍ଷିପ୍ତ ଆକଳନ

**ନାରାୟଣ ପଣ୍ଡା**

ଶ୍ରାବଣର ବଉଦ ଦୋଳିରେ ଯେଉଁ ନବଜାତକଟି ଦିନେ ଝୁଲି ଝୁଲି ଆସି, ସମ୍ବଲପୁର ବରପାଲିର ଚୈତନ୍ୟ ମେହେରଙ୍କ ଗୃହମଣ୍ଡନ କରିଥିଲା, ପରବର୍ତ୍ତୀ କାଳରେ ସେ ସମଗ୍ର ଉତ୍କଳରେ ସୁପରିଚିତ ହେଲେ ସ୍ୱଭାବ କବି ଭାବରେ । ସେ ହେଲେ ଓଡ଼ିଶାର ବରପୁତ୍ର ଗଙ୍ଗାଧର ମେହେର । ତାଙ୍କର ଜନ୍ମଦିନ ଥିଲା ପବିତ୍ର ଶ୍ରାବଣ ପୂର୍ଣ୍ଣିମା ଓ ଇଂରାଜୀ ଅଗଷ୍ଟ ୯ ତାରିଖ ୧୮୬୨ ମସିହା । ସେ ଥିଲେ ତନ୍ତୁବାୟ ଭୁଲିଆ ସମ୍ପ୍ରଦାୟର, ଯେଉଁମାନଙ୍କର ପେଷା ବସ୍ତ୍ର ବୟନ କରିବା । ଦାରିଦ୍ର୍ୟର ପଙ୍କିଳ ପରିବେଶରେ ଜନ୍ମିତ ଏହି ପ୍ରତିଭାବନ୍ତ ଶିଶୁ ନିଜ ସିଦ୍ଧିର ଶତ ପଙ୍କଜରେ ସମାଜକୁ ସୁରଭିତ କରିଥିଲେ । ୭/୮ ବର୍ଷ ବୟସରେ ଗାଁ ଚାଟଶାଳୀରେ ସେ ବିଦ୍ୟାରମ୍ଭ କରନ୍ତି । ତାଙ୍କର ପ୍ରତିଭା ଥିଲା ଜନ୍ମଗତ ଓ ଜ୍ଞାନ ପିପାସା ଥିଲା ଅସାମାନ୍ୟ । ପ୍ରଚଣ୍ଡ ଅଧ୍ୟବସାୟ ଥିବାରୁ ସେ ସଂସ୍କୃତ, ହିନ୍ଦୀ ଓ ବଙ୍ଗଳା ଭାଷା ଅଧ୍ୟୟନ କରି ସେଥିରେ ବ୍ୟୁତ୍ପତ୍ତି ଲାଭ କରିଥିଲେ । ଦାରିଦ୍ର୍ୟ ତାଙ୍କର ଇଚ୍ଛା ଶକ୍ତି ଆଗରେ ହାର ମାନିଥିଲା । ତାଙ୍କର ସମୁଦାୟ ଶିକ୍ଷା କାଳରେ ପୁସ୍ତକ କ୍ରୟ ବାବଦରେ ସେ ମାତ୍ର ୨ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ କରିବାକୁ ସମର୍ଥ ଥିଲେ । ସମୁଦାୟ ସ୍କୁଲ ଶିକ୍ଷା କାଳରେ ଖଣ୍ଡିଏ କୁରୁତା ପରିଧାନ କରିବା ତାଙ୍କର ସ୍ୱପ୍ନ ହୋଇ ରହିଗଲା । ଶାନ୍ତିପୁରୀ ଚଦରଟିଏକୁ ଅତି ଜୀର୍ଣ୍ଣ ହେବା ପର୍ଯ୍ୟନ୍ତ ସେ ବ୍ୟବହାର କରିଥିଲେ । ଏଥିପାଇଁ ତାଙ୍କର ଅବଶୋଷ ନଥିଲା । ପରେ ସେ କହିଥିଲେ, ଦରିଦ୍ର ଭାବରେ ଜୀବନ କାଟିବାରେ ସେ ଲଜ୍ଜିତ ନୁହଁନ୍ତି, କିନ୍ତୁ ସାଧୁତା ରକ୍ଷା କରିବା ତାଙ୍କ ଜୀବନରେ ହୋଇଥିଲା ପ୍ରତିଫଳିତ ।



କର୍ମମୟ ଜୀବନର ପ୍ରଥମ ସୋପାନରେ ୧୮୮୫ ମସିହାରେ ବରପାଲି ଜମିଦାର ରାୟ ବାହାଦୂର ଲାଲା ନୃପରାଜ ସିଂହଙ୍କ ଜମିଦାରୀରେ ଜଣେ ଅମିନ ଭାବରେ ତାଙ୍କୁ ନିଯୁକ୍ତି ମିଳିଲା । ସେଯୁଗରେ ଏପରି ଏକ ଚାକିରି ମଧ୍ୟ ଏକ ଦୁର୍ଲ୍ଲଭ ରାଜାନୁଗ୍ରହ ବୋଲି ବିବେଚିତ ହେଉଥିଲା । ପରେ ସେହିଠାରେ ଜୁଡିସିଆଲ୍ ମୋହରିର ରୂପେ ସେ ଅବସ୍ଥାପିତ ହେଲେ । ସମ୍ବଲପୁର ଏବଂ ବିଜେପୁରରେ ୧୯୦୭ରୁ ୧୯୧୪ ପର୍ଯ୍ୟନ୍ତ କାର୍ଯ୍ୟକରି ସ୍ଥାନାନ୍ତରିତ ହେଲେ ପଦ୍ମପୁରକୁ । ପଦ୍ମପୁରରେ ତିନିବର୍ଷ କାମ କରି ୫୫ ବର୍ଷ ବୟସରେ ଅର୍ଥାତ୍ ୧୯୧୭ରେ ତାଙ୍କୁ ଅବସର ଗ୍ରହଣ କରିବାକୁ ପଡିଲା । ତାଙ୍କର ସଚ୍ଚୋଟତା ଓ ସାଧୁତା ଯୋଗୁଁ ଅବସର ଗ୍ରହଣ ପରେ ସେ କିଛି ଦିନ ଅଡିଟର ଓ ମୋହରିର ପଦବୀରେ କାର୍ଯ୍ୟ କରିବା ପାଇଁ ସ୍ଥାନୀୟ ଜମିଦାରଙ୍କ ଦ୍ୱାରା ନିମନ୍ତ୍ରିତ ହୋଇଥିଲେ । ବଡାସମ୍ବର ରାଜା ଲାଲ ରାଜେନ୍ଦ୍ର ସିଂହ ବରିହା ତାଙ୍କର ସାଧୁତା ପାଇଁ ନିଜ ରାଜଧାନୀ ଉପକଣ୍ଠରେ ଖଣ୍ଡିଏ ପଲ୍ଲୀ ପୁରୁଷାନୁକ୍ରମେ ପୁରସ୍କାର ଦେଇଥିଲେ । ସତ୍ୟ ଓ ସରଳତା ତାଙ୍କ ଜୀବନ ଚର୍ଯ୍ୟାର ମୂଳମନ୍ତ୍ର ଥିବାରୁ ସେ ପଇସାଟିଏ ମଧ୍ୟ କାହା ପାଖରୁ ନେଇ ନିଜ ଆତ୍ମାକୁ ମଳିନ କରିନାହାନ୍ତି । ମଧ୍ୟଯୁଗୀୟ ସାମନ୍ତ ଜମିଦାରଙ୍କ ଦରବାରରେ ନିଜର ସ୍ୱାଧୀନ ଚେତନାକୁ କେବେହେଲେ ବଳି ଦେଇନାହାନ୍ତି ।





ଚାକିରି କରିବା ତାଙ୍କର ପେଶା ଥିଲେ ମଧ୍ୟ ନିଶା ଥିଲା ତାଙ୍କର ସାହିତ୍ୟ ସାଧନା । ସ୍କୁଲ ଛାଡ଼ିବା ପରେ ସେ ଲାବଣ୍ୟବତୀ, ସୁଭଦ୍ରା ପରିଣୟ, ରସିକ ହାରାବଳୀ, ବୈଦେହୀଶ ବିଳାସ ଓ ରସକଲ୍ଲୋଳ ଆଦି କାବ୍ୟ ଗ୍ରନ୍ଥମାନ ଅଧ୍ୟୟନ କରିଥିଲେ । ଏହା ବ୍ୟତୀତ ଭଞ୍ଜ ସାହିତ୍ୟ, ଭବଭୂତି ଓ କାଳିଦାସ, ବ୍ୟାସଙ୍କର ରଚନାମାନ ଅଧ୍ୟୟନ କରି ଜ୍ଞାନ ଅର୍ଜନ କରିଥିଲେ । ଏହି ସମୟରେ ରୀତି ଯୁଗୀୟ ଶୈଳୀରେ ସେ ଅନେକ କବିତା ଲେଖିଥିବାର ଜଣାପଡେ । ସେଗୁଡିକ ମଧ୍ୟରୁ ରସ ରତ୍ନାକର ଏକ ବୃହତ୍ କାବ୍ୟାଂଶ । ଭଞ୍ଜଙ୍କର 'କଳା କଉତୁକ'ର ଆଦ୍ୟ ପଦ 'କ' ବର୍ଣ୍ଣ ପରି 'ରସ ରତ୍ନାକର'ର ଆଦ୍ୟ ପଦ 'ର' ବର୍ଣ୍ଣ ନିୟମ ରଚିତ । ଉଷାଭିଳାସର କଥାବସ୍ତୁ ଉପରେ ଏହା ଆଧାରିତ । ତେବେ ଏହି କାବ୍ୟାଂଶ ତାଙ୍କ ଜୀବଦଶାରେ ମୁଦ୍ରିତ ହୋଇନାହିଁ ।

'ଇନ୍ଦୁମତୀ' କାବ୍ୟ କବିଙ୍କର ପ୍ରଥମ ସାରସ୍ୱତ ସୃଷ୍ଟି । କାଳିଦାସଙ୍କ ରଘୁବଂଶର ସୂର୍ଯ୍ୟବଂଶୀ ସମ୍ରାଟ ଅଜ ଓ ବିଦର୍ଭ ରାଜକୁମାରୀ ଇନ୍ଦୁମତୀଙ୍କ ସୁମଞ୍ଜଳ ଦାମ୍ପତ୍ୟ ପ୍ରେମ ଉପରେ ଆଖ୍ୟାୟିତ ଏହି କାବ୍ୟ ୧୮୮୪ରେ ପ୍ରକାଶିତ ହୋଇ ବିପୁଳ ପାଠକୀୟ ଆଦୃତି ଲାଭ କରିଥିଲା । ତାଙ୍କର ଅପୂର୍ବ ଉପସ୍ଥାପନା ଶୈଳୀ, ଭାଷା ସଂଯୋଜନା, ଇନ୍ଦୁବାଳାଙ୍କ ଆକସ୍ମିକ ମୃତ୍ୟୁ ପରେ ରାଜଦମ୍ପତିଙ୍କ ପ୍ରଣୟ ସଂଭୋଗରେ ଭଙ୍ଗା, ଅଜଙ୍କ ଉତ୍ତର ଜୀବନରେ ଏହି ମର୍ମଦାହୀ ବିଚ୍ଛେଦର କାରୁଣ୍ୟ ଇନ୍ଦୁମତୀଙ୍କ ଛତ୍ରେ ଛତ୍ରେ ଚିତ୍ରିତ ହୋଇ ଜୀବନ୍ତ ହୋଇ ଉଠିଥିଲା । ମୟୂରଭଞ୍ଜର ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କୁ ଉତ୍ସର୍ଗୀକୃତ ହୋଇଥିବା ଏହି କାବ୍ୟକୁ କବିବର ରାଧାନାଥ ଉଚ୍ଚ ପ୍ରଶଂସା କରିଥିବା ବେଳେ ସୁପ୍ରସିଦ୍ଧ କବି ନନ୍ଦକିଶୋର ବଳ କବିତାରେ କାବ୍ୟ ପ୍ରଣେତାଙ୍କୁ ଅଭିନନ୍ଦନ ଜଣାଇଥିଲେ । ତାଙ୍କ ଭାଷାରେ– ପଢିଅଛି 'ଇନ୍ଦୁମତୀ' କାବ୍ୟ କେତେଥର, ସେହିଠାରେ ପରିଚୟ ତୁମ୍ଭର ମୋହର । ଶୁଣିଅଛି, ଦରିଦ୍ରତା କଠୋର ନିଘାତ, ସେହି କଣ୍ଟେ କବି ତୁମେ କର ଦିନପାତ । ସୁଦୂରେ ତୁମ୍ଭରି ପରି ମୁଁ ଆଉ ଜଣେ, ଦାରୁଣ ଦୁଃଖ ପ୍ରହାରେ ବଞ୍ଚେ କ୍ଷୁଣ୍ଣ ମନେ । ... ଭିକ୍ଷୁକୁ ସଙ୍ଗତେ ନୃପ ମୁକୁଟ– ମଣ୍ଡିତ, କାଳବଳେ ହେବ ସର୍ବେ ଭବୁ ଅନ୍ତର୍ହିତ । କିନ୍ତୁ ତୁମ୍ଭେ ଦିନ କବି ରହିବ ଜୀବିତ, ଯେତେଦିନ ଭବେ ଥିବ ଓଡ଼ିଆ ସାହିତ୍ୟ । ... କବିଙ୍କୁ ସମ୍ବୋଧିତ କବିବରଙ୍କ ଏକ ପତ୍ରରେ 'ଇନ୍ଦୁମତୀ' ସମ୍ପର୍କରେ ଲିଖିତ ଅଛି, 'ଇନ୍ଦୁମତୀ' କାବ୍ୟ ମୁଁ ଆଦ୍ୟୋପାନ୍ତ ପାଠ କରି ଆଶାତୀତ ପ୍ରୀତି ଲାଭ କରିଅଛି । ଏ କାବ୍ୟର କବି ସାମାନ୍ୟ ଶକ୍ତିଶାଳୀ ଲେଖକ ନୁହଁନ୍ତି । ଏହାର ଭାଷା ସରଳ, ସାବଲୀଳ ଏବଂ ଶ୍ରୁତି ମଧୁର ହୋଇଅଛି । ମୋ ମତରେ, 'ଇନ୍ଦୁମତୀ' ସ୍ୱଭାବ ସୁନ୍ଦରୀ ଉତ୍କଳ ଭାରତୀଙ୍କର ଅନୁପଯୁକ୍ତ ଭୂଷଣ ନୁହେଁ । ପରେ ପ୍ରକାଶିତ ହୁଏ ତାଙ୍କର ଅନ୍ୟ ଏକ ଉତ୍ତୁଙ୍ଗ ରଚନା 'କୀଚକବଧ' । ମହାଭାରତର ଆଖ୍ୟାୟିକା ଉପରେ ଆଧାରିତ ଏହି କାବ୍ୟରେ କାମୁକ କୀଚକର ଅଖଣ୍ଡ କ୍ଷମତା ଅସହାୟା ଦ୍ରୌପଦୀଙ୍କୁ ତା' ନିକଟକୁ ଯିବା ପାଇଁ ବାଧ୍ୟ କରିଛି । ସେହି ଲମ୍ପଟ କବଳରୁ ନିଜ ସତୀତ୍ୱ ରକ୍ଷା କରିବା ନିମନ୍ତେ ଭୟ ବିହ୍ୱଳିତା ଦ୍ରୌପଦୀ ପଳାୟନ କରନ୍ତି । ପରେ ବିନାଶ ଯା'ନ୍ତି କୀଚକ । ସୈରେନ୍ଦ୍ରୀଠାରୁ ସୁଦେଷ୍ଣା, ଚପଳାଠାରୁ କୀଚକ ଓ ଆଖ୍ୟାୟିକାର ପ୍ରଚ୍ଛଦ ନାୟକ ଭୀମ ଆବେଗ ଓ ଉତ୍କଣ୍ଠାର ସୂକ୍ଷ୍ମ ବାସ୍ତବଧର୍ମୀ ବିଶ୍ଳେଷଣ କାବ୍ୟକୁ ଅପୂର୍ବ ଲଳିତ କାବ୍ୟ କଳାରେ ମଣ୍ଡିତ କରିଛି । 'କୀଚକବଧ'ର ବ୍ୟୟଭାର ଉତ୍କଳଗୌରବ ମଧୁସୂଦନ ବହନ କରିଥିଲେ ।

୧୯୧୨ରେ ପ୍ରକାଶିତ ହୁଏ କବିଙ୍କର ଅନ୍ୟ ଏକ ସାର୍ଥକ ସୃଷ୍ଟି 'କବିତା କଲ୍ଲୋଳ' । କବିଗୁରୁ ରାଧାନାଥଙ୍କୁ ମରଣୋତ୍ତର ଭାବେ ଏହା ଉତ୍ସର୍ଗୀକୃତ । ୧୯୧୪ରେ କବି ଗଙ୍ଗାଧରଙ୍କ ୪ଗୋଟି କବିତା ପୁସ୍ତକ ପ୍ରକାଶିତ ହୋଇଛି । 'ଅର୍ଘ୍ୟଥାଳି', ପାରଳା ଗଜପତି କୃଷ୍ଣଚନ୍ଦ୍ର ଦେବଙ୍କୁ ସମର୍ପିତ ଥିବାବେଳେ ପାଟନାର ବାଳମୁକୁନ୍ଦ ବହିଦାରଙ୍କ ବ୍ୟୟରେ ମୁଦ୍ରିତ ଓ କବିବନ୍ଧୁ ଲରମ୍ଭାର ବ୍ରଜମୋହନ ପଣ୍ଡାଙ୍କୁ ଉତ୍ସର୍ଗୀକୃତ 'ଅଯୋଧ୍ୟା ଦୃଶ୍ୟ' ତାଙ୍କର ଏକ ସାର୍ଥକ ସୃଷ୍ଟି । ସାହିତ୍ୟ ପ୍ରେମୀ ମଧୁସୂଦନ ପଣ୍ଡା ଓ ବ୍ରଜମୋହନ ପଣ୍ଡାଙ୍କ କେତେକ ପ୍ରାକୃତିକ ଦର୍ଶନୀୟ ସ୍ଥାନ ଯଥା: ବାମଣ୍ଡାର ପ୍ରଧାନ ପାଟ, ମହାନଦୀ ଗର୍ଭର କୁଦ ହୀରାକୁଦ, ହୁମା, ମାଲ୍ୟଗିରି, ମହେନ୍ଦ୍ର ଗିରି, କର୍ଲାପାଟ, ଟିକିରିଗୁଡ଼ା, ସମ୍ବଲପୁରର ହରିଶଙ୍କର ଓ ନୃସିଂହନାଥ, ସହସ୍ରାଧାର ଜଳପ୍ରପାତ ସମ୍ପର୍କରେ ସୁନ୍ଦର ବର୍ଣ୍ଣନା ରହିଛି । ନଦୀ ମାତୃକା କୋଇଲି, ବ୍ରାହ୍ମଣୀ, ଇବ୍, ଅଙ୍ଗ, ତେଲ ଓ ଜିରା ଆଦି କବିଙ୍କର ସାରସ୍ୱତ ସୃଷ୍ଟିରୁ ବାଦ୍ ପଡି ନାହାନ୍ତି । କବି ନିଖୁଣ ଭାବରେ ଉତ୍କଳର ଅର୍ଦ୍ଧାଧିକ ଅଞ୍ଚଳର ଶୋଭା ସମ୍ପଦର ଭୂଗୋଳକୁ ଚିତ୍ରଣ କରିଛନ୍ତି । ୧୯୧୪ରେ ପ୍ରକାଶିତ ହୋଇଛି ତାଙ୍କର ଅନ୍ୟ ଏକ ସଫଳ ସୃଷ୍ଟି 'ତପସ୍ୱିନୀ' । ରାମାୟଣର ଶ୍ରୀରାମ ବନରେ ସୀତାଙ୍କୁ ପରିତ୍ୟାଗ କରିବା କାହାଣୀ ଉପରେ ଏହା ଦୁଃଖ ମଧ୍ୟରେ ଆଶାର ଆଲୋକ ଲବ କୁଶଙ୍କର ଜନ୍ମ । ଶେଷରେ ଅଶ୍ୱମେଧ ଯଜ୍ଞର କରୁଣ ପରିଣାମର ଅସାଧାରଣ ବର୍ଣ୍ଣନା ଏଥିରେ ରହିଛି । ପ୍ରାଞ୍ଜଳ ଭାଷା ବିନ୍ୟାସ ମାଧ୍ୟମରେ କବିଙ୍କର ଅସାମାନ୍ୟ ଦକ୍ଷତାରେ ସଜ୍ଜିତ ଚରିତ୍ର ସମୂହର ରସସ୍ନିଗ୍ଧ ଅର୍ନ୍ତଧ୍ୱନୀ ଏହି କାବ୍ୟକୁ ଏକ ଅନନ୍ୟ ମହିମାନ୍ୱିତ





ସୃଷ୍ଟିର ମର୍ଯ୍ୟାଦା ଦେଇଛି । ଏଗାରଟି ଅଧ୍ୟାୟ ବିଶିଷ୍ଟ ଏହି କାବ୍ୟଟି ସେସମୟରେ ଜଣେ ବଦାନ୍ୟ ଶିକ୍ଷାପ୍ରେମୀ ନାରାୟଣ ମିଶ୍ରଙ୍କୁ ସମର୍ପିତ ହୋଇଛି । କାଳିଦାସଙ୍କ 'ଶକୁନ୍ତଳା' ଅବଲମ୍ବନରେ କବିଙ୍କ ଲେଖନୀରୁ ଜନ୍ମ ନେଇଛି ଅନ୍ୟ ଏକ ଅନବଦ୍ୟ ସୃଷ୍ଟି 'ପ୍ରଣୟ ବଲ୍ଲରୀ' । ଋଷି କୁମାରୀ ଶକୁନ୍ତଳାଙ୍କ ପ୍ରେମ, ପ୍ରଣୟ, ବିଚ୍ଛେଦ ମିଳନର ଚରମ ଅଭିବ୍ୟକ୍ତି ଏଥିରେ ଘଟିଛି । କଣ୍ୱ-କୁମାରୀ କେତେବେଳେ ପୁଲ୍ଲକିତା ତ କେତେବେଳେ ଉପେକ୍ଷିତା, କେତେବେଳେ ସେ ଅନୁତପ୍ତା ତ କେତେବେଳେ ପୁଣି ରୋରୁଦ୍ୟମାନ । ଶେଷରେ ସମସ୍ତ ଆତ୍ମଗ୍ଲାନିର ଅନ୍ତଘଟି ପ୍ରଣୟୀ ସହିତ ସୁଖଦ ମିଳନ ଏହି କାବ୍ୟର ଶାଶ୍ୱତ ଅନ୍ତଃସ୍ୱର । ସମ୍ବଲପୁର ବଡାସମ୍ବରର ଜମିଦାର ରାୟ ରାଜେନ୍ଦ୍ର ସିଂହ ଲାଲ ବରିହାଙ୍କୁ ଏହା ସମର୍ପିତ ହୋଇଛି । ସେହିପରି ୧୯୨୧ରେ ପ୍ରକାଶିତ 'କୃଷକ ସଂଗୀତ' ଉକ୍ତ ଜମିଦାର ମହୋଦୟଙ୍କୁ ସେ ଉତ୍ସର୍ଗ କରିଛନ୍ତି । କବି ଏଠାରେ ଜଣେ କୃଷି ବିଜ୍ଞାନୀ । ଅନ୍ନର ମହିମା, କୃଷିର ଗୌରବ, କୃଷକର ଆତ୍ମକଥା, ଆଖୁଚାଷ, ଧାନଚାଷ, ଚଣାମୁଗ, ଓଲୁଅ, ଗହମ, ମରିଚ, ବାଇଗଣ, କନ୍ଦମୂଳ, ପୋଟଳ, କୋବି, କଦଳୀ, ଧନିଆ, ସାରୁ, କାଉଁରିଆ, କପା, ଛଣ, ପାନଭୂମି ଭେଦରେ ଚାଷ ପ୍ରଣାଳୀ ଏଥିରେ ସୁନ୍ଦର ଭାବରେ ବର୍ଣ୍ଣିତ । ଏତଦ୍‌ବ୍ୟତୀତ 'ପଦ୍ମିନୀ' କବିଙ୍କର ଏକ ଐତିହାସିକ କ୍ଷୁଦ୍ର କାବ୍ୟ । କବିଙ୍କର 'ଅହଲ୍ୟାସ୍ତବ', ଭାରତୀ ଭାବନା', 'କୁମାର ଜନ୍ମୋତ୍ସବ', କବିତାମାଳା', ଉତ୍କଳର ସାରସ୍ୱତ ଭଣ୍ଡାରର ଅମୂଲ୍ୟ ସମ୍ପଦ । କବିଙ୍କର ସମସ୍ତ ରଚନା ରସପୂର୍ଣ୍ଣ, ପ୍ରାଣସ୍ପର୍ଶୀ ଓ ହୃଦୟଗ୍ରାହୀ । ତେବେ 'ଇନ୍ଦୁମତୀ', 'ପ୍ରଣୟ ବଲ୍ଲରୀ' ଓ 'ତପସ୍ୱିନୀ' କାବ୍ୟତ୍ରୟ ତାଙ୍କର ସ୍ୱକୀୟ ଗରିମାରେ ପାଠକୀୟମାନଙ୍କୁ ମୁଗ୍ଧ କରେ ।

ବିଭିନ୍ନ ସମୟରେ କବିଙ୍କର ଏହି ଅପୂର୍ବ ସୃଷ୍ଟି ସମୂହ ରାଜ୍ୟର ରାଜା ମହାରାଜା ଓ ବଦାନ୍ୟ ବ୍ୟକ୍ତିଙ୍କ ଆର୍ଥିକ ପ୍ରୋତ୍ସାହନରେ ମୁଦ୍ରିତ ହୋଇଛି । ପ୍ରତ୍ୟେକ ସ୍ଥଳରେ କବି ସେମାନଙ୍କୁ ଅନ୍ତରର କୃତଜ୍ଞତା ଅର୍ପଣ କରି ନିଜ ମହାନତାର ପରିଚୟ ଦେଇଛନ୍ତି । ସେ ଚାହିଁଥିଲେ ରାଜା ମହାରାଜାଙ୍କଠାରୁ ବ୍ୟକ୍ତିଗତ ଭାବରେ ଦାନ ଓ ପାରିତୋଷିକ ଗ୍ରହଣ କରି ନିଜର ଆର୍ଥିକ ସୃଷ୍ଟିକୁ ସୁଦୃଢ଼ କରିପାରିଥାନ୍ତେ । ସେ ଥିଲେ ସ୍ୱାଭିମାନୀ । ନିଜର ମର୍ଯ୍ୟାଦାକୁ କେବେ ସେ ବଳି ଦେଇନାହାନ୍ତି । ବାମଣ୍ଡାର ରାଜା ସଚ୍ଚିଦାନନ୍ଦ ଦେଓ ଅନେକ ସମୟରେ ପଣ୍ଡିତ ଓ ଗୁଣୀଜନମାନଙ୍କୁ ନିଜ ରାଜସଭାରେ ହିତୈଷିଣୀ ସମ୍ପାଦକ ନୀଳମଣି ବିଦ୍ୟାରତ୍ନ ତାଙ୍କୁ ଏକଦା ଏହି ରାଜ ଅନୁଗ୍ରହ ଲାଭ ପାଇଁ ପ୍ରଲୋଭିତ କରିଥିଲେ । କବି ଏହାକୁ ବିନମ୍ରତାର ସହିତ ପ୍ରତ୍ୟାଖ୍ୟାନ କରି କହିଥିଲେ, ସାରସ୍ୱତ କାନନର ଅମୃତଭୋଜୀ ମୁକ୍ତ ବିହଙ୍ଗ ସ୍ୱର୍ଣ୍ଣ ପଞ୍ଜୁରୀରେ ପରିବେଷିତ ଦୁଗ୍ଧାନ୍ନରେ ଆକୃଷ୍ଟ ହେବା ଅସମ୍ଭବ । କବି କେତେ ଆତ୍ମସମ୍ମାନ ସଚେତନ ଓ ସ୍ୱାଭିମାନୀ ଥିଲେ ଏଥିରୁ ତାହା ପ୍ରମାଣ ମିଳେ । ଏକଦା ବରପାଲୀର ଜମିଦାରଙ୍କ ସହିତ ବାମଣ୍ଡା ରାଜ ଦରବାରକୁ ଯାଉଥିବା ଅବସରରେ ଜମିଦାର କବିଙ୍କୁ ନିଜର ଜଣେ ପ୍ରଜା ବୋଲି ରାଜା ସଚ୍ଚିଦାନନ୍ଦଙ୍କୁ ପରିଚୟ କରାଇ ଦେଇଥିଲେ । କବିଙ୍କର କୃତୀ ଓ ଖ୍ୟାତି ସମ୍ପର୍କରେ ଅବ୍ୟହିତ ଥିବା ରାଜା ଉତ୍ତରରେ କହିଥିଲେ, ସେ ବରପାଲିର ଜଣେ ପ୍ରଜା ହୋଇପାରନ୍ତି, କିନ୍ତୁ ଉତ୍ତରରେ କହିଥିଲେ, ସେ ହେଉଛନ୍ତି, ତାଙ୍କର ହୃଦୟର ରାଜା । କେବଳ ଗଙ୍ଗାଧରଙ୍କ ପାଇଁ ହିଁ ଜଣେ ରାଜାଙ୍କ ମୁହଁରୁ ଏଭଳି ସମ୍ମାନ ଉଚ୍ଚାରିତ ହୋଇପାରେ ।

ବିବିଧ ପ୍ରତିକୂଳ ପରିସ୍ଥିତିରେ ମାତ୍ର ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରିଥିବା ଏହି ସାରସ୍ୱତ ପୁରୁଷଙ୍କର ସୃଷ୍ଟି ଦିନେ ବିଶ୍ୱବିଦ୍ୟାଳୟର ପାଠ୍ୟପୁସ୍ତକ ରୂପେ ଗୃହୀତ ହୋଇଥିଲା । ହିନ୍ଦୀ ଭାଷାର ପ୍ଲାବନରେ ସମ୍ବଲପୁରର ଯେବେ ଓଡ଼ିଆ ଭାଷା ପ୍ରଶାସନିକ ସ୍ତରରୁ ତା'ର ଅସ୍ତିତ୍ୱ ହରାଇଥିଲା, ମାତୃଭାଷାକୁ ବଞ୍ଚାଇ ରଖି, ମାତୃଭାଷାରେ ଉଚ୍ଚାଙ୍ଗ କାର୍ଯ୍ୟ ରଚନା କରି ଗଙ୍ଗାଧର ମାତୃ ଭୂମିର ମସ୍ତକ ଉତ୍ତୋଳିତ କରି ରଖିପାରିଥିଲେ । ଗହ୍ମା ପୂର୍ଣ୍ଣିମାର ଆଲୋକ ବର୍ଷାରେ ଭୂମିଷ୍ଠ ହୋଇଥିବା ଏହି ସାହିତ୍ୟ ରଥିଙ୍କର ମହାନ୍ ଆତ୍ମା ୧୯୨୪ ଚୈତ୍ର ଅମାବାସ୍ୟାର ଘନ ତମିସ୍ରା ମଧ୍ୟରେ ପଞ୍ଚଭୂତ ସହିତ ବିଲୀନ ହୋଇଯାଇଥିଲା ।

ନୂଆବନ୍ଧ ସାହି
ନବରଙ୍ଗପୁର



# ଦେଶ ସେବକ ପ୍ରାଣନାଥ

**ଡକ୍ଟର ହେମନ୍ତ କୁମାର ଛୋଟରାୟ**

୧୯୦୫ ମସିହା ନଭେମ୍ବର ମାସ ୧୬ ତାରିଖ ଭଳି ଏକ ଶୁଭ ଦିନରେ ପୁରୀ ଜିଲ୍ଲା କଣାସ ନିକଟବର୍ତ୍ତୀ ଡ଼ିମିର ଗାଁ ଗୋବରଗଡ଼ିଆରେ ପଦ୍ମଫୁଲଟିଏ ଫୁଟିଲା । ଗାଁଟି ଅପୂର୍ବ ମହକରେ ମହକି ଗଲା । ଗ୍ରାମ ପରିବେଶର ଘନ ଅନ୍ଧକାରକୁ ଅତିକ୍ରମ କରି ଜଳି ଉଠିଲା ଗୋଟିଏ ମୁକ୍ତି ମଶାଲ । କିଛି ସମୟ ପରେ ଯନ୍ତ୍ରଣାର ଅନ୍ତ ଘଟାଇ ଚିତ୍ରାଦେବୀଙ୍କ କୋଳକୁ ଆସିଲା ଶିଶୁଟିଏ । ତା'ର କୁଆଁ କୁଆଁ ରାବ ଗାଁଟା ସାରା ପ୍ରତିଧ୍ୱନିତ ହେଲା । ସତେ ଯେମିତି ସେ ପ୍ରତିଧ୍ୱନିରେ ଉଚ୍ଚାରିତ ହେଉଥିଲା ସାମ୍ୟବାଦର ସ୍ଲୋଗାନ । ସର୍ବହରା ମଣିଷ ପାଇଁ ଦରଦୀ ପ୍ରାଣର ସାଲିସହୀନ ଉଚ୍ଛ୍ୱାସ । ପୁତ୍ର ସନ୍ତାନଟିଏ ଜାତ ହୋଇଥିବାରୁ ମଦନ ମୋହନ ଆଶ୍ୱସ୍ତ ହେଲେ ଇଷ୍ଟଙ୍କୁ ପ୍ରଣିପାତ କଲେ, ପିଲାଟିକୁ ଠାକୁରେ ଆୟୁଷ ଦିଅନ୍ତୁ । ପ୍ରଥା ଅନୁସାରେ ଏକବିଂଶ ଦିବସ ପାଳନ ବେଳେ ସର୍ବସମ୍ମତିକ୍ରମେ ପୁତ୍ର ସନ୍ତାନର ନାମ ପ୍ରାଣନାଥ ଦେଇଦେଲେ । ଚାରାଟିଏ ରୋପଣ କଲାବେଳେ ରୋପଣକାରୀ କେବେ ଭାବି ନଥାଏ ଦିନେ ଚାରାଟି ମହାଦ୍ରୁମ ପାଲଟିଯିବ, ଆଉ ଶହ ଶହ ହଜାର ହଜାର ପଥଶ୍ରାନ୍ତଙ୍କୁ ସୁଶୀତଳ ଛାୟା ପ୍ରଦାନ କରିବ । ପରିବେଶ ପାଇଁ ଗୋଟିଏ ଅମୂଲ୍ୟ ସମ୍ପଦ ପାଲଟି ଯିବ । ମଦନ ମୋହନଙ୍କ କ୍ଷେତ୍ରରେ ତାହା ହିଁ ଘଟିଲା । ସେ ଚିନ୍ତା କରି ନଥିଲେ, ତାଙ୍କର ଏଇ ଶିଶୁ ପୁତ୍ର ବଡ଼ ହୋଇ ଲକ୍ଷ ଲକ୍ଷ ମଣିଷଙ୍କ ପାଇଁ ଆଦର୍ଶ ପାଲଟିଯିବ !

କଣାସ ପ୍ରାଥମିକ ବିଦ୍ୟାଳୟ, ପୁରୀ ଜିଲ୍ଲା ସ୍କୁଲ, ରେଭେନ୍‌ସା କଲେଜ ଓ ପରେ କାଶୀ ବିଦ୍ୟାପୀଠରେ ଶିକ୍ଷା ଗ୍ରହଣ କରି ପ୍ରାଣନାଥ ଦେଶ ସେବାକୁ ନିଜର ବ୍ରତ ରୂପେ ବାଛି ନେଲେ । ଭୋକିଲା ମଣିଷ ଓ ଗରିବ କୃଷକର ଦୁଃଖ ଯନ୍ତ୍ରଣା ତାଙ୍କୁ ବିବ୍ରତ କଲା । ଦେଶର ମୁକ୍ତି ସଂଗ୍ରାମରେ ସେ ଝାସ ଦେଲେ । ସେ ବୁଝି ପାରିଲେ, ଭୋକିଲା ମଣିଷର ମୁହଁରେ ହସ ଫୁଟାଇବାକୁ ହେଲେ ଏ ଦେଶରୁ ପ୍ରଥମେ ବର୍ବର ବିଦେଶୀମାନଙ୍କୁ ହଟାଇବାକୁ ପଡ଼ିବ । ଇଂରେଜ ହାତରୁ ଭାରତମାତାକୁ ମୁକ୍ତ କରିବାକୁ ହେବ । ପୁରୀ ଜିଲ୍ଲା ସ୍କୁଲରେ ଛାତ୍ର ଥିବାବେଳେ ଗୋପବନ୍ଧୁଙ୍କ ସଂସ୍ପର୍ଶରେ ସେ ବାରମ୍ବାର ଆସୁଥିଲେ । ଗୋପବନ୍ଧୁଙ୍କ କାଳଜୟୀ ବାଣୀ – ମିଶୁ ମୋର ଦେହ ଏ ଦେଶ ମାଟିରେ..... ତାଙ୍କୁ ଉଦ୍‌ବୁଦ୍ଧ କଲା । ସେ ଦାସେ ଆପଣଙ୍କ ଜୀବନ ଶୈଳୀ ପ୍ରତି ଅତି ମାତ୍ରାରେ ଆକୃଷ୍ଟ ହୋଇ ଉଠିଲେ । ସତ୍ୟାଗ୍ରହ ଭଳି କଣ୍ଟକିତ ପଥର ଯାତ୍ରୀ ହୋଇ ପରେ ପରେ ଗେରୁଆ ବସ୍ତ୍ର, ଗେରୁଆ ରଙ୍ଗର ବ୍ୟାଗ, ବ୍ୟାଗ ଭିତରେ ଛୋଟ ଗଡ଼ୁଟିଏ, ଗୋଟିଏ ସତରଞ୍ଜି ଓ ଛୋଟ ତେଲ ଶିଶି ଧରି ସେ ସାରା ଓଡ଼ିଶା ବୁଲିଲେ । ଏହି ସମୟରେ ଗାନ୍ଧିଜୀଙ୍କ ଚିନ୍ତାଧାରା ପ୍ରତି ତାଙ୍କର ଆକର୍ଷଣ ବୃଦ୍ଧି ପାଇଲା । ସେ ଛାତ୍ର ଥିଲାବେଳେ ସାହସ ସଂଚୟ କରି ଗାନ୍ଧିଜୀଙ୍କ ନିକଟକୁ ପତ୍ରଟିଏ ଲେଖିଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଜଣେ ଛାତ୍ରର ଭୂମିକା ଶୀର୍ଷକ ଏହି ପତ୍ରଟି ଥିଲା ତାଙ୍କ ଦେଶପ୍ରେମର ଅନନ୍ୟ ଉଦାହରଣ । ଛାତ୍ର ଜୀବନରୁ ହିଁ ସେ ଦେଶପ୍ରେମ ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ । ମଳୟର ସ୍ପର୍ଶ ଲାଭ କରି ନିମ୍ବବୃକ୍ଷ ଚନ୍ଦନରେ ପରିଣତ ହେଲା ପରି ମହତ ଲୋକଙ୍କ ସଂସ୍ପର୍ଶରେ ଆସି ପ୍ରାଣନାଥ ଜଣେ ସଚ୍ଚା ଦେଶପ୍ରେମୀ ଓ ଆଦର୍ଶବାଦୀ ମଣିଷରେ ପରିଣତ ହେଲେ ।

ସେତେବେଳେ କଟକ ସହର ରାଜନୀତିର ପ୍ରାଣକେନ୍ଦ୍ର ଥିଲା । ପ୍ରାଣନାଥ ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ । ଛାତ୍ରମାନଙ୍କ କର୍ତ୍ତବ୍ୟ ସମ୍ପର୍କରେ ଗାନ୍ଧିଜୀ ଲେଖାଟିଏ ପ୍ରକାଶ କରିଥିଲେ । ଏହାକୁ ପଢ଼ି ପ୍ରାଣନାଥ ନିଜର ଆବେଗକୁ ସମ୍ଭାଳି ପାରିଲେ ନାହିଁ । କଟକ ଟାଉନ ହଲ୍‌ରେ ବିଶିଷ୍ଟ ସଂଗ୍ରାମୀ

ବିପିନ ଚନ୍ଦ୍ର ପାଲ ସ୍ୱାଧୀନତା ଆନ୍ଦୋଳନକୁ ଆଗେଇ ନେବା ପାଇଁ ଦେଲେ ଉଦ୍‌ବୋଧନ । ସଭାରେ ଯୋଗ ଦେବା ପାଇଁ ନିଷେଧାଜ୍ଞା ଜାରି ହୋଇଥାଏ । ସମସ୍ତ ପ୍ରତିବନ୍ଧକକୁ ଅତିକ୍ରମ କରି ପ୍ରାଣନାଥ ସେହି ସଭାରେ ଯୋଗଦାନ କରି ପ୍ରଦାନ କଲେ ଦେଶ ଭକ୍ତିର ପରିଚୟ । ୧୯୩୦ ଜାନୁଆରୀ ୨୬ ତାରିଖ ଦିନ ସବୁ ସତ୍ୟାଗ୍ରହୀ ଶପଥ ନେଲେ । ସରକାରୀ କାର୍ଯ୍ୟାଳୟ କୋଠାବାଡ଼ି ଉପରୁ ବ୍ରିଟିଶ ପତାକା କାଢ଼ିଆଣି ତା' ସ୍ଥାନରେ ତ୍ରିରଙ୍ଗା ପତାକା ଉଡ଼ାଇ ଦିଆଗଲା । ରେଭେନ୍‌ସା କଲେଜର ଶିକ୍ଷା ବର୍ଜନ କରି ପ୍ରାଣନାଥ ଆଗେଇ ଆସିଲେ ସତ୍ୟାଗ୍ରହର ମହାସ୍ରୋତକୁ । ଦେଶ ସେବାର ମହାଯଜ୍ଞ ତାଙ୍କୁ ବାରମ୍ବାର ଆନମନା କରୁଥାଏ । ସେ ଛଟପଟ ହେଉଥାନ୍ତି ଏହି ମହାନଳରେ ଘିଅ ଢ଼ାଳିବା ପାଇଁ । ପରିବାରର ଅଭିଭାବକମାନଙ୍କ ପ୍ରବଳ ପ୍ରତିରୋଧ ତାଙ୍କୁ ଲକ୍ଷ୍ୟ ପଥରୁ ବିଚ୍ୟୁତ କରି ପାରିଲା ନାହିଁ । ରେଭେନ୍‌ସା କଲେଜ ପାଠପଢ଼ାରେ ଡ଼ୋରି ବାନ୍ଧି ସେ ବାହାରି ପଡ଼ିଲେ ଏକ ନୂତନ ଜୀବନ ସନ୍ଧାନରେ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହର ଦାୟିତ୍ୱ ନେଇ ଗିରଫ ହେଲେ । ପୁରୀ ଜିଲ୍ଲା କାରାଗାରରେ ବନ୍ଦୀ ଜୀବନ ବିତେଇଲେ । ଏହା ପରେ ବାଲେଶ୍ୱରରେ ସ୍ୱାଧୀନତା ଆନ୍ଦୋଳନ ତୀବ୍ର ବେଗରେ ଆଗେଇ ଚାଲିଲା । ବାଲେଶ୍ୱର ଯାଇ ମଦ, ଗଞ୍ଜେଇ ଓ ଅଫିମ ଦୋକାନ ଆଗରେ ପିକେଟିଂ କଲେ ପ୍ରାଣନାଥ । ଆଉ ଥରେ ଗୋରା ସରକାରର ଆକ୍ରୋଶ ବଳରେ ଗିରଫ ହୋଇ କାରାବରଣ କଲେ ।

କିଛି ଦିନ ପରେ ତାଙ୍କ ମନରେ ଭାବାନ୍ତର ସୃଷ୍ଟି ହେଲା ଯେ, ପାଇକ ବିଦ୍ରୋହର ଭଙ୍ଗା ପଡ଼ି ଯିବାରୁ ଖୋରଧାବାସୀ ନିଦ୍ରିତ ହୋଇଛନ୍ତି । ଖୋରଧା ମାଟିର ପାଇକମାନେ ହିଁ ବ୍ରିଟିଶ ସରକାରକୁ ଯଥାର୍ଥ ଜବାବ ଦେଇପାରିବେ, ସେମାନଙ୍କୁ ଜାଗ୍ରତ କରିବାକୁ ପଡ଼ିବ । ଓଡ଼ିଶାର ସବୁ ସ୍ଥାନ ବୁଲିବା ପରେ ସେ ଚାଲି ଆସିଲେ ଖୋରଧା ମାଟିକୁ । ବହୁ ଝଡ଼ ଝଞ୍ଜା ସ୍ୱୀକାର କରି ପୋଲିସ ଭୟରେ ଲୁଚିଛପି ସାଥୀ ଗତିକୃଷ୍ଣ, ପର୍ଶୁରାମ, ବଳରାମ ଓ ଗୋକୁଳାନନ୍ଦଙ୍କ ସହ ଦୟାନଦୀ ପାର ହୋଇ ଜଟଣୀ ରେଳଷ୍ଟେସନ ନିକଟ ମହାଦେବଙ୍କ ମନ୍ଦିର ପାଖରେ ପହଞ୍ଚିଲେ । ଉପବାସ ରହି ସେ ଗାଁ ଗାଁ ବୁଲି ବିଦେଶୀ ବସ୍ତ୍ର ବର୍ଜନ ଆନ୍ଦୋଳନକୁ ବ୍ୟାପକ କଲେ । ଜଟଣୀ ବଜାରରେ ଆନ୍ଦୋଳନର ନେତୃତ୍ୱ ନେଲାବେଳେ ସେ ପୁନଶ୍ଚ ଗୋରାମାନଙ୍କ ଆକ୍ରୋଶର ଶିକାର ହୋଇ ଗିରଫ ହେଲେ । ପ୍ରଥମେ ପୁରୀ ଜେଲ୍ ଓ ତା'ପରେ ତାଙ୍କୁ ପାଟଣା ଜେଲ୍‌କୁ ସ୍ଥାନାନ୍ତର କରାଗଲା । ସେଠାରେ ସେ ଜାତୀୟ ନେତାମାନଙ୍କ ସହ ସାକ୍ଷାତର ସୁଯୋଗ ପାଇଲେ । ସେଠାରେ ନିର୍ମିତ ଅସ୍ଥାୟୀ ଜେଲରେ ଓଡ଼ିଶା ପ୍ରଦେଶର ପ୍ରାୟ ଏକ ହଜାର କଂଗ୍ରେସ କର୍ମୀ ବନ୍ଦୀ ହୋଇ ରହିଥାନ୍ତି । ପୁରୀ ଅଞ୍ଚଳରୁ ଆସିଥିବା କଂଗ୍ରେସ କର୍ମୀମାନଙ୍କୁ ବସାଇ ପ୍ରାଣନାଥ ଶିକ୍ଷାଦାନ କଲେ ଓ ବ୍ୟାପକ ଆନ୍ଦୋଳନର ଖସଡ଼ା ପ୍ରସ୍ତୁତ କଲେ । ପ୍ରାଣନାଥଙ୍କ ଚିନ୍ତାଚେତନାରୁ ସୃଷ୍ଟି ହୋଇଥିଲା 'ବନ୍ଧୁ ସମାଜ' ବା friends society। ୧୯୩୩ ମସିହା ବେଳେ ଏହି କ୍ୟାମ୍ପ ଜେଲ୍‌ରେ ରହି ପ୍ରାଣନାଥ ଓ ତାଙ୍କ ସାଥୀ ଗୋକୁଳ ରାୟ ଚୂଡ଼ାମଣି, ପର୍ଶୁରାମ ପଦାତିକରାୟ, ବଳରାମ ପାଇକରାୟ, ଗଙ୍ଗାଧର ମିଶ୍ର ଓ ଶ୍ରୀହର୍ଷ ମିଶ୍ର ପ୍ରମୁଖ ବଜ୍ର ଶପଥ ନେଇଥିଲେ ସ୍ୱାଧୀନତା ହାସଲ ନହେବା ଯାଏଁ ଘରକୁ ଫେରିବେ ନାହିଁ । ପ୍ରାଣନାଥଙ୍କ ମାନସ ସୃଷ୍ଟି ବନ୍ଧୁସମାଜ ପକ୍ଷରୁ ପୁରୀରେ ନ୍ୟାସନାଲ ହିନ୍ଦୁ ହୋଟେଲ ପ୍ରତିଷ୍ଠା ହେଲା । କଂଗ୍ରେସ କର୍ମୀମାନେ ଘର ଘର ବୁଲି ଆନ୍ଦୋଳନର ବାର୍ତ୍ତା ପ୍ରଚାର କରି ଫେରିଲା ପରେ ଏହି ହୋଟେଲରେ ମାଗଣା ଖାଇବା ବ୍ୟବସ୍ଥା ହୋଇଥିଲା । ହୋଟେଲ ଲାଭାଂଶରୁ କଂଗ୍ରେସର ପ୍ରଚାର କାର୍ଯ୍ୟ ପାଇଁ କିଛି ଅର୍ଥ ପ୍ରଦାନ ହେବା ଫଳରେ ଆନ୍ଦୋଳନ କାର୍ଯ୍ୟ ଅଗ୍ରସର ହେବାରେ ସହାୟକ ହୋଇଥିଲା ।

ପାଟଣାରୁ ଖଲାସ ହୋଇ ପ୍ରାଣନାଥ କଲିକତା ଫେରି ଆସିଲେ । ସେଠାରେ ରହି ପଶ୍ଚିମବଙ୍ଗରେ ଚାଲୁଥିବା ଆନ୍ଦୋଳନର ଶୈଳୀ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଆହରଣର ସୁଯୋଗ ଲାଭ କଲେ । କଲିକତାରେ କିଛି ସମୟ କଟାଇ ନିଜ ଭାଇ ଶ୍ରୀନାଥ ପଟ୍ଟନାୟକଙ୍କ ଘରେ ରହି ଖଡଗପୁରରେ ଥିବା ଓଡ଼ିଆ ଶ୍ରମିକମାନଙ୍କ ଦୁରବସ୍ଥା ଅନୁଧ୍ୟାନ କଲେ । ଶ୍ରମିକମାନଙ୍କୁ ଏକତ୍ରିତ କରାଇ ସେମାନଙ୍କର ଦୁର୍ଦ୍ଦଶା ଓ ଦାବୀ ସମ୍ପର୍କରେ ସଚେତନ କରାଇଲେ । ଅନ୍ୟର ଦୁଃଖ ଦୁର୍ଦ୍ଦଶା ଯାହାକୁ ବ୍ୟଥିତ କରେ ସେ କେବେ ଥୟ ହୋଇ ରହିପାରିବ ନାହିଁ । ଯେଉଁଠି ରହିଲେ ମଧ୍ୟ ଦୁର୍ବଳ, ଅସହାୟ ପାଇଁ ଲଢ଼ିବ ହିଁ ଲଢ଼ିବ । ପ୍ରାଣନାଥ ୧୯୩୬ ମସିହା ନିର୍ବାଚନରେ ଖୋରଧା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ସୋସାଲିଷ୍ଟ ପାର୍ଟି ତରଫରୁ ପ୍ରାର୍ଥୀ ହୋଇ ବିଜୟ ଲାଭ କଲେ । ଭୋକ ଉପାସରେ ସେ ଖାଲି ପାଦରେ ଚାଲିଚାଲି ନିର୍ବାଚନ ପ୍ରଚାର କରୁଥିଲେ । ତାଙ୍କର ମନ୍ତ୍ର ଥିଲା– ଧନ ନଥିଲେ କ'ଣ ହେବ, ମୋର ମନ ତ ଅଛି । ଲୋକେ ଯେଉଁଠି ଅଛନ୍ତି ସେଠାରେ ପଇସା କ'ଣ ଦରକାର, ସେମାନେ ମତେ ଖାଇବାକୁ ଦେବେ । ଭୋଟ ଦେଇ ଜିତାଇବେ । ଏଥିଲାଗି ଯେ ମୁଁ ତାଙ୍କ କଥା ବୁଝିବି । ୩୨ ବର୍ଷର ଯୁବକ ବ୍ୟାଗ୍‌ରେ ମୁଢ଼ି ନଡ଼ିଆ ଧରି ଭୋଟ ମାଗି ସୀମିତ ସମ୍ବଳରେ ନିର୍ବାଚନ ଜିତିବା କେବଳ ପ୍ରାଣନାଥଙ୍କ ପକ୍ଷରେ





ସମ୍ଭବ ହୋଇଥିଲା । ବିଧାନ ସଭାରେ ସଦସ୍ୟ ହୋଇ ସେ ପ୍ରଜାସ୍ୱତ୍ୱ ଆଇନର ସଂଶୋଧନ ପାଇଁ ପ୍ରସ୍ତାବ ଆଗତ କଲେ । ସଂସ୍କାର ମନସ୍କ ପ୍ରାଣନାଥଙ୍କୁ ଏହି ପ୍ରସ୍ତାବ ଲାଗି ଜମିଦାରମାନଙ୍କ ପ୍ରବଳ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଜନମଙ୍ଗଳ ପାଇଁ ଅଣ୍ଟା ଭିଡ଼ିଥିବା ଜଣେ ଦୃଢ଼ ମନୋଭାବର ମଣିଷ କୌଣସି ବିରୋଧ ପ୍ରତିରୋଧରେ ଦବିଯାଏ ନାହିଁ । ପ୍ରାଣନାଥ ସେସବୁକୁ ଖାତିର ନକରି ତାଙ୍କ ପ୍ରସ୍ତାବ କାର୍ଯ୍ୟକାରୀ ପାଇଁ ଲଢ଼ି ଚାଲିଲେ । କଂଗ୍ରେସ-ସୋସାଲିଷ୍ଟ ପାର୍ଟିର ସମସ୍ତ ପ୍ରତିନିଧି ତାଙ୍କୁ ସମର୍ଥନ କଲେ । ଶେଷରେ ବିହାର ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନର ସଂଶୋଧନ ହେଲା । ଗଛ, ମାଛ ଉପରେ ପ୍ରଜାମାନଙ୍କୁ ଅଧିକାର ମିଳିଲା । ବେଠି, ଭେଟି, ରୋସନ, ଦାଖଲ ଖାରଜ ବ୍ୟବସ୍ଥାର ଉଚ୍ଛେଦ ହେଲା । ଖାଲି ସେତିକି ନୁହେଁ, ମଠ ମନ୍ଦିର ପାଇଁ ଉଦ୍ଦିଷ୍ଟ ସମ୍ପତ୍ତିର ସଦ୍‌ବ୍ୟବହାର ପାଇଁ ଦେବୋତ୍ତର ଆଇନ ଓ ଜଙ୍ଗଲ ସମେତ ଶିକ୍ଷା ସମ୍ପର୍କୀୟ ଆଇନର ପରିବର୍ତ୍ତନରେ ପ୍ରାଣନାଥଙ୍କ ଚିଠା ପ୍ରସ୍ତାବ ବିଧାନ ପରିଷଦରେ ଗୃହୀତ ହେବା ଗୋଟିଏ ଗୋଟିଏ ଉଲ୍ଲେଖନୀୟ ସଫଳତା ।

ଅର୍ଦ୍ଧାହାର, ଅନାହାର ତାଙ୍କର ଦୃଢ଼ ମନକୁ ଦୁର୍ବଳ କରିପାରି ନଥିଲା । ପତ୍ନୀ ମଞ୍ଜରୀ ଦେବୀଙ୍କ ସହ ସେ ଦିନେ ଦିନେ ଉପବାସରେ ବିତାଇଛନ୍ତି । ଖୋରଧା ଅଞ୍ଚଳର ଗାଁ ଗାଁ ବୁଲି ଜନସାଧାରଣଙ୍କ ଅଭାବ ଅନଟନ, ବନ୍ୟା, ବାତ୍ୟା, ମରୁଡ଼ି ପ୍ରଭୃତି ବିପର୍ଯ୍ୟୟରେ ଦୁର୍ଗତମାନଙ୍କ ଦୁଃଖ ଦୁର୍ଦ୍ଦଶା ସହ ନିଜକୁ ହଜାଇ ଦେଇଥିଲେ । ଗାଁ ଗଣ୍ଡାର ଦୁଃଖ ତାଙ୍କୁ ଅହରହ ବିଚଳିତ କରୁଥିଲା । ଶିକ୍ଷାର ଅଭାବ ହିଁ ଗ୍ରାମାଞ୍ଚଳ ଅନଗ୍ରସରର ମୁଖ୍ୟ କାରଣ । ଏହାକୁ ମର୍ମେ ମର୍ମେ ଉପଲବ୍ଧି କରିଥିଲେ ପ୍ରାଣନାଥ । ପର୍ଯ୍ୟାପ୍ତ ଶିକ୍ଷାନୁଷ୍ଠାନ ଅଭାବରୁ ଯୁବକମାନେ ଉଚ୍ଚଶିକ୍ଷାରୁ ବଞ୍ଚିତ ହେଉଥିବା ତାଙ୍କୁ ମର୍ମାହତ କରୁଥିଲା । ବିଭିନ୍ନ ସ୍ଥାନରେ ବିଦ୍ୟାଳୟ, ଉଚ୍ଚ ବିଦ୍ୟାଳୟ ଓ ମହାବିଦ୍ୟାଳୟ ପ୍ରତିଷ୍ଠାର ଆବଶ୍ୟକତା ପୂରଣ କରିବାକୁ ଯାଇ ସେ ବହୁ କଷ୍ଟ ସ୍ୱୀକାର କରିଛନ୍ତି । ଆଜି ପ୍ରତିଷ୍ଠିତ ଖୋରଧା ପ୍ରାଣନାଥ ସ୍ୱୟଂଶାସିତ ମହାବିଦ୍ୟାଳୟ ତାଙ୍କ ସ୍ୱପ୍ନ ଓ ତ୍ୟାଗର ପ୍ରତିଫଳନ ।

ତାଙ୍କ ଦରଦୀପଣର ପଟାନ୍ତର ନାହିଁ । ଶୈଶବ ଅବସ୍ଥାରେ ପିତା ମଦନମୋହନଙ୍କୁ ନିଜ ପୁତ୍ରର ଦରଦୀପଣ ଆଶ୍ଚର୍ଯ୍ୟ କରିଥିଲା । ସାଙ୍ଗ ରାଜୁଆଠାରୁ ପ୍ରାଣନାଥ ପୂର୍ବଦିନ ଶୁଣିଥିଲେ, ତା' ଘରେ ଚାଉଳ ନାହିଁ । ସେଥିପାଇଁ ତାକୁ ଉପବାସ ରହିବାକୁ ପଡ଼ିଛି । ତାଙ୍କ କୋମଳ ପ୍ରାଣରେ ଆଉ ଗୋଟିଏ ଶିଶୁ ପେଟର ଭୋକ ତାଙ୍କୁ ବିଚଳିତ କଲା । ରକ୍ଷଣଶୀଳତାର ଉଚ୍ଚ ପାହାଚରୁ ସେ ବିନା ଦ୍ୱିଧାରେ ତଳକୁ ଓହ୍ଲାଇ ଆସିଲେ । ସେ ରାଜୁଆକୁ ଦେବା ପାଇଁ ବସ୍ତାନୀରେ ଘରୁ ଲୁଚେଇ ଚାଉଳ ଆଣିଲେ । ଭଉଣୀ ଧନମଣି ଜାଣିପାରି ପିତାଙ୍କ ନିକଟରେ ଅଭିଯୋଗ କଲା । ପ୍ରାଣନାଥ ନିର୍ଭୀକ ଭାବରେ ଉତ୍ତର ଦେଇଥିଲେ, ସେ ରାଜୁଆର ଦୁଃଖ ସହି ନପାରି ଏଭଳି କରିଛନ୍ତି । ତାଙ୍କ ଦରଦୀପଣର ରାଶିରାଶି ଉଦାହରଣ ଥିଲେ ହେଁ ନିଜ ବିବାହ ବେଳର ଗୋଟିଏ ଘଟଣା ତାଙ୍କ ବ୍ୟକ୍ତିତ୍ୱର ମର୍ଯ୍ୟାଦା ବୃଦ୍ଧି କରିଛି । ତାଙ୍କୁ ପାଲିଙ୍କିରେ ବୋହି ନେବା ପାଇଁ ଅପେକ୍ଷା କରିଥିବା ବାହକମାନଙ୍କ କାନ୍ଧରେ ଯିବାକୁ ସେ ରୋକ୍‌ଠୋକ୍ ମନା କରିଦେଲେ । ଜଣେ ମଣିଷ ଅନ୍ୟ ମଣିଷମାନଙ୍କ କାନ୍ଧରେ ଯିବା ଭଳି ସାମନ୍ତପଣକୁ ସେ ଘୃଣା କରନ୍ତି । ବାଜା, ରୋଷଣୀ, ପାଲିଙ୍କି, ପଟୁଆରରେ ନଯାଇ ଚାଲିଚାଲି ପହଞ୍ଚି ଥିଲେ କବି ଜମିଦାର କୃଷ୍ଣ ମୋହନ ପଟ୍ଟନାୟକଙ୍କ ଦ୍ୱାର ମୁହଁରେ । ପାଣିଢ଼ାଳ ନେଇ ନିଜ ହାତରେ ପାଦ ଧୋଇଥିଲେ । ସେ ଅନୁଭବ କରିଥିଲେ, ସେବକ ଜଣକ ମଧ୍ୟ ଆମ ଭଳି ଜଣେ ମଣିଷ । ତା' ସ୍ୱାଭିମାନ ଉପରେ କୁଠାରଘାତ କରିବାକୁ ଚାହିଁ ନଥିଲେ ପ୍ରାଣନାଥ । ଗୋଟିଏ ସରଳ ନିରାଡ଼ମ୍ବର ବିବାହ ଉତ୍ସବରେ ସେ ଚଣାହାଟ କୃଷ୍ଣମୋହନଙ୍କ କନ୍ୟା ମଞ୍ଜରୀ ଦେବୀଙ୍କ ପାଣିଗ୍ରହଣ କରିଥିଲେ । ନବବିବାହିତ ସହଧର୍ମିଣୀଙ୍କ ପ୍ରଥମ ବାର୍ତ୍ତାଳାପରେ ସୂଚାଇଥିଲେ, ବୁଝିଲ ଆମର ମିଳନ ସେବା ପାଇଁ ।

ପ୍ରାଣନାଥଙ୍କ ଜୀବନ ଥିଲା ତ୍ୟାଗ, ତୀତିକ୍ଷାର ଗୋଟିଏ ଲମ୍ବା ଫର୍ଦ୍ଦ । ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରି ଭୋଗବିଳାସଠାରୁ ସେ ଦୂରେଇ ରହିଥିଲେ । ଆଜୀବନ ଚାଷୀ, ମୂଲିଆ, ଗରିବ, ମେହନତି ମଣିଷ ଆତ୍ମା ଭିତରେ ବିଲୀନ ହୋଇଥିବା ସେହି ମହାପୁରୁଷ ଗୋଟିଏ ଅଲିଭା ଦୀପ ।

ନାଗାବଗିଚା, ପ୍ରଥମ ଗଳି
ମଧୁବନ, ପୁରୀ-୨






# ଗଙ୍ଗାଧରଃ ପୂର୍ଣ୍ଣିମାରୁ ଅମାବାସ୍ୟା

**ଶିବ ପ୍ରସାଦ ତ୍ରିପାଠୀ**

ସ୍ୱଭାବକବି ଗଙ୍ଗାଧର ମେହେରଙ୍କ କାବ୍ୟ ପ୍ରତିଭା ଓଡ଼ିଆ ସାହିତ୍ୟକୁ ବୁଦ୍ଧିମନ୍ତ ଓ ସମୃଦ୍ଧ କରିଛି । ଓଡ଼ିଆ ଜାତିର ମାନସରେ ତାଙ୍କର ଅମ୍ଳାନ ସ୍ମୃତି ସଂଜୀବିତ । ଓଡିଆ ସାହିତ୍ୟର ବିକାଶ କକ୍ଷେ ବହୁ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ତାଙ୍କର କଠୋର ସାଧନା ଅବିସ୍ମରଣୀୟ ।

୧୮୬୨ ମସିହା ଅଗଷ୍ଟ ୯ ତାରିଖ ଶ୍ରାବଣ ପୂର୍ଣ୍ଣିମା ଶନିବାର ମଧ୍ୟରାତ୍ରଠାରୁ ୧୯୨୪ ମସିହା ଏପ୍ରିଲ ୪ ତାରିଖ ଚୈତ୍ର ଅମାବାସ୍ୟା ଶୁକ୍ରବାର ପର୍ଯ୍ୟନ୍ତ ୬୧ ବର୍ଷ ୭ମାସ ୨୩ ଦିନ ତାଙ୍କର ଜୀବନକାଳ । ସମ୍ବଲପୁର ଜିଲ୍ଲାର (ଅଧୁନା ବରଗଡ ଜିଲ୍ଲା) ବରପାଲିରେ ଜନ୍ମିତ ଗଙ୍ଗାଧରଙ୍କ ପିତାଙ୍କ ନାମ ଚୈତନ୍ୟ ମେହେର ଓ ମାତାଙ୍କ ନାମ ସେବତୀ ଦେବୀ ।

୧୮୫୦ରେ ସମ୍ବଲପୁର ବ୍ରିଟିଶ ଶାସନାଧୀନ ହୋଇଥିଲା । ୧୮୬୧ରେ ମଧ୍ୟପ୍ରଦେଶ ଗଠିତ ହେବା ପରେ ୧୮୬୨ରେ ସମ୍ବଲପୁରକୁ ଏଥିସହ ମିଶାଇ ଦିଆଗଲା । ୧୯୦୫ରେ ସମ୍ବଲପୁର ଓଡ଼ିଶା ଡିଭିଜନ ସହ ମିଶିଲା । ୧୯୦୩ ପୂର୍ବରୁ ସାତ ବର୍ଷ କାଳ ହିନ୍ଦୀ ଭାଷା ସମ୍ବଲପୁରରେ ବିଭିନ୍ନ କ୍ଷେତ୍ରରେ ତଥା ସରକାରୀ ଭାଷା ଭାବରେ ବ୍ୟବହୃତ ହୋଇଥିଲେ । ଏଥିପୂର୍ବରୁ ୧୮୫୪ରୁ ୧୮୬୦ ପର୍ଯ୍ୟନ୍ତ ସମ୍ବଲପୁରରେ ହିନ୍ଦୀ ଭାଷା ରାଜଭାଷା ଭାବରେ ପ୍ରଚଳିତ ହୋଇଥିଲା । ଏପରି ସଂକଟମୟ କାଳରେ ୧୮୮୨ରେ ଗଙ୍ଗାଧରଙ୍କ ସାହିତ୍ୟ ସାଧନାର ଆରମ୍ଭ ହୋଇଥିଲା ।

ସ୍ୱଭାବକବିଙ୍କ ବ୍ୟକ୍ତିଗତ ଜୀବନ ମଧ୍ୟ ଅତ୍ୟନ୍ତ ଦୁର୍ବିସହ ଥିଲା । ଦାରିଦ୍ର୍ୟର କଷାଘାତ ମଧ୍ୟରେ ତାଙ୍କର ସାହିତ୍ୟ ସୃଷ୍ଟି ପଙ୍କରୁ ପଦ୍ମର ଜନ୍ମ ସଦୃଶ । ତେଣୁ କବି କଲମରୁ ନିଃସୃତ ହୋଇଛି– 'ଦରିଦ୍ରତା ପଙ୍କପୂର୍ଣ୍ଣ ମୋ ଜୀବନ ସର/ଜଞ୍ଜାଳ ଜଳଦ ଜଳେ ଆବିଳ ଉଦର । ଶରଦ ସଦୃଶ ତୋତେ କରି ଦରଶନ/ ହୋଇ ଯାଉଅଛି ସେତ ସ୍ୱତଃ ପରସନ୍ନ ।'

ସେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ । ଉଚ୍ଚଶିକ୍ଷାର କୌଣସି ସୁଯୋଗ ପାଇ ନଥିଲେ ମଧ୍ୟ ନିଜର ଅଦମ୍ୟ ଜ୍ଞାନ ଲିପ୍‌ସା ଓ କଠୋର ପରିଶ୍ରମ ବଳରେ ବହୁଶାସ୍ତ୍ର ଅଧ୍ୟୟନ କରି ସେ ଅବର୍ଣ୍ଣନୀୟ ପ୍ରତିଭାର ଅଧିକାରୀ ହୋଇଥିଲେ । ସଂସ୍କୃତ, ବଙ୍ଗଳା ଓ ହିନ୍ଦୀ ସାହିତ୍ୟ ମଧ୍ୟ ପାଠ କରି ସେ ଜ୍ଞାନ ଆହରଣ କରିଥିଲେ । ପିତା ଚୈତନ୍ୟ ମେହେରଙ୍କୁ କୌଳିକ କାର୍ଯ୍ୟ ବସ୍ତ୍ରବୟନ କ୍ଷେତ୍ରରେ ସାହାଯ୍ୟ କରିବା ସହ ତାଙ୍କର ଅଧ୍ୟୟନ ଅବ୍ୟାହତ ରହିଥିଲା । ଇଂରାଜୀ ଭାଷାରେ ମଧ୍ୟ ତାଙ୍କର ବ୍ୟୁତ୍ପତ୍ତି ରହିଥିଲା । ୧୮୮୫ରେ ସେ ବରପାଲିରେ ଅମୀନ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ୧୮୯୯ରୁ ୧୯୦୧ ପର୍ଯ୍ୟନ୍ତ ଜୁଡିସିଆଲ ମୋହରିର ଭାବରେ କାର୍ଯ୍ୟ କରି ସେ ୧୯୧୨ ପର୍ଯ୍ୟନ୍ତ ସମ୍ବଲପୁର ଡେପୁଟି କମିନରଙ୍କ ଅଦାଲତରେ, ୧୯୧୩ରୁ ୧୯୧୪ ପର୍ଯ୍ୟନ୍ତ ବିଜେପୁର ଅନରାରୀ ମାଜିଷ୍ଟ୍ରେଟଙ୍କ ଅଦାଲତରେ ଓ ୧୯୧୪ରୁ ୧୯୧୭ ପର୍ଯ୍ୟନ୍ତ ପଦ୍ମପୁରରେ ଅବସ୍ଥାପିତ ହୋଇଥିଲେ । ୧୯୧୭ରେ ସେ ସରକାରୀ ଚାକିରିରୁ ଅବସର ଗ୍ରହଣ କରିଥିଲେ । ଅବସର ଗ୍ରହଣ ସମୟରେ ତାଙ୍କର ମାସିକ ଦରମା ଥିଲା ୩୫ଟଙ୍କା । ଚାକିରିକାଳ ମଧ୍ୟରେ ସେ ତାଙ୍କର ବିନମ୍ରତା ଓ କର୍ମକ୍ଷେତ୍ରରେ ପାରଦର୍ଶିତା ଲାଗି ସାଧାରଣରେ ସୁପରିଚିତ ଥିଲେ ।

ଉତ୍କଳ ସମ୍ମିଳନୀର ବିଭିନ୍ନ ବୈଠକରେ ସେ ସକ୍ରିୟ ଭାବରେ ଅଂଶଗ୍ରହଣ କରିବା ସଙ୍ଗେ ସଙ୍ଗେ ବରପାଲିରେ ସାଧୁ ସମିତି ଗଠନ କରିଥିଲେ ଓ ମୁଷ୍ଟି ଭିକ୍ଷା ପ୍ରଚଳନ କରିଥିଲେ ତଥା ଜାତୀୟ ମହାସଭା ପ୍ରତିଷ୍ଠା କରିଥିଲେ ।




ରସରତ୍ନାକର (୧୮୮୨-୮୫), ଅହଲ୍ୟାସ୍ତବ (୧୮୯୨), ଇନ୍ଦୁମତୀ (୧୮୯୪), ଉତ୍କଳ ଲକ୍ଷ୍ମୀ (୧୮୯୪ରୁ ୧୯୧୪), ମହିମା (୧୮୯୭), କୀଚକବଧ (୧୯୦୪), କବିତା କଲ୍ଲୋଳ (୧୯୧୨), ଅଯୋଧ୍ୟା ଦୃଶ୍ୟ (୧୯୧୧), ତପସ୍ୱିନୀ (୧୯୧୪), ପ୍ରଣୟ ବଲ୍ଲରୀ (୧୯୧୫), ଅର୍ଘ୍ୟଥାଳୀ (୧୯୧୮) ପ୍ରଭୃତି ତାଙ୍କର ଶ୍ରେଷ୍ଠ କାବ୍ୟକୃତି । ଗଦ୍ୟ ରଚନାରେ ମଧ୍ୟ ସେ ପାରଦର୍ଶିତା ହାସଲ କରିଥିଲେ । ଗଦ୍ୟ ରଚନା ସମୂହ ମଧ୍ୟରେ ତାଙ୍କର ସଂକ୍ଷିପ୍ତ ଆତ୍ମଜୀବନୀ ମଧ୍ୟ ଅନ୍ତର୍ଭୁକ୍ତ । ତାଙ୍କ ରଚିତ କାବ୍ୟ ସମୂହ ବିବିଧ ବର୍ଗର ପାଠକ ଓ ସାହିତ୍ୟିକ ମହଲରେ ପ୍ରଶଂସିତ ଓ ଆଦୃତ ତଥା ଅନ୍ୟାନ୍ୟ ଭାଷାରେ ଅନୁଦିତ ।

ସ୍ୱଭାବକବି ଗଙ୍ଗାଧର ଏକାଧାରରେ କୁଶଳୀ କବି ଓ ବୁଣାକାର, ସମାଜ ସଂସ୍କାରକ ତଥା ଜାତୀୟତାବାଦୀ ଥିଲେ । ତାଙ୍କର ବିଭିନ୍ନ କାବ୍ୟରେ ଉତ୍କଳୀୟ ଚେତନା ଓ ସ୍ୱଦେଶପ୍ରୀତି ବିକଶିତ । ତାଙ୍କ ରଚନାର ଶ୍ରେଷ୍ଠ ଦିଗ ହେଉଛି ପ୍ରକୃତି ଉପାସନା । ତାଙ୍କ ରଚନାରେ ପ୍ରାକୃତିକ ଚିତ୍ର ସମ୍ଭାର ଯୋଗୁଁ ସେ ପ୍ରକୃତି କବି ଭାବରେ ମଧ୍ୟ ସୁପରିଚିତ । ସମ୍ବଲପୁରରେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନକୁ ସେ କଲମ ମୁନରେ ପୂର୍ଣ୍ଣ ସମର୍ଥନ ଜଣାଇଥିଲେ ।

'ଇନ୍ଦୁମତୀ' କାବ୍ୟ ସମ୍ପର୍କରେ ମତବ୍ୟକ୍ତ କରି କବିବର ରାଧାନାଥ ରାୟ ଲେଖିଛନ୍ତି, 'ଏ କାବ୍ୟର କବି ସାମାନ୍ୟ ଶକ୍ତିଶାଳୀ ଲେଖକ ନୁହନ୍ତି । ମୂଳ ଚରିତ ରଘୁବଂଶରୁ ଗୃହୀତ ହୋଇଥିଲେ ହେଁ ଏହାର ଭାବ ଓ ଭଙ୍ଗୀ ଦୃଷ୍ଟିରୁ ମୁଁ ଏହାକୁ ଅଭିନବ ଓ ଉତ୍କୃଷ୍ଟ କାବ୍ୟ ରୂପେ ଗ୍ରହଣ କରିବାକୁ ଲବେ ମାତ୍ର କୁଣ୍ଠିତ ହେବି ନାହିଁ ।'

ପଲ୍ଲୀକବି ନନ୍ଦକିଶୋର ବଳଙ୍କ ଭାଷାରେ, 'ଭିକ୍ଷୁକ ସଙ୍ଗତେ ନୃପ ମୁକୁଟ ମଣ୍ଡିତ/ କାଳବଳେ ହେବେ ସର୍ବେ ଭବୁ ଅନ୍ତର୍ହିତ ।/ କିନ୍ତୁ ତୁମେ ଦୀନକବି ରହିବ ଜୀବିତ/ଯେତେଦିନ ଭବେ ଥିବ ଓଡ଼ିଆ ସାହିତ୍ୟ ।'

ସ୍ୱଭାବକବିଙ୍କ କଲମ ନିଃସୃତ 'ମାତୃଭୂମି ମାତୃଭାଷାରେ ମମତା...' 'ଉଚ୍ଚ ହେବା ପାଇଁ କର ଯେବେ ଆଶା...' ଆଦି ସର୍ବଜନବିଦିତ । ଓଡ଼ିଆ ସାହିତ୍ୟରେ ଏକ ବିସ୍ମୟଜନକ ସୃଷ୍ଟି ଭକ୍ତି କବିତା 'ବିଶ୍ୱଜୀବନ ହେ...' ଅଧିକାଂଶ ଶିକ୍ଷାନୁଷ୍ଠାନରେ ପ୍ରାର୍ଥନା ସଙ୍ଗୀତ ଭାବରେ ଗୃହୀତ ।

ଉଚ୍ଚ ଶିକ୍ଷା ଲାଭ ନକରି ମଧ୍ୟ ସେ ଯେଉଁ ବୌଦ୍ଧିକ ପରାକାଷ୍ଠା ଦେଖାଇ ଯାଇଛନ୍ତି, ତାହା ଅନସ୍ୱୀକାର୍ଯ୍ୟ । 'ଅର୍ଘ୍ୟଥାଳୀ'ର ଭୂମିକାରେ ସେ ଲେଖିଛନ୍ତି 'ମୋର ହୃଦୟ ନିବିଡ ଅରଣ୍ୟତୁଲ୍ୟ କିନ୍ତୁ ପ୍ରଶସ୍ତ ନୁହେଁ, କ୍ଷୁଦ୍ର । ତହିଁର ଅଭ୍ୟନ୍ତରକୁ ସଭ୍ୟତା ଲୋକ ପ୍ରବିଷ୍ଟ ହୋଇପାରିନାହିଁ । ତେବେ ସମଗ୍ର ଧରଣୀରେ ଯେତେବେଳେ ଆଲୋକ ବିକୀର୍ଣ୍ଣ ହୋଇଅଛି, ଅରଣ୍ୟର ଉପର ଭାଗ ଆଲୋକିତ ହେବା ସ୍ୱାଭାବିକ । ରନ୍ଧ୍ର ପ୍ରଥମେ ମଧ୍ୟ ଅଭ୍ୟନ୍ତରକୁ ଆଲୋକର ପ୍ରବେଶ ଅବାରଣୀୟ । ଗଛଟିଏ ହେଲେ ଆବଶ୍ୟକ ତହିଁରେ ଫୁଲ ଫୁଟେ, ତେବେ ଅରଣ୍ୟରେ ସୁପୁଷ୍ପ ଫୁଟେ ନାହିଁ ।'

ସେ ଥିଲେ ଖଦ୍ୟୋତ, ନିଜ ଆଲୋକରେ ଉଦ୍ଭାସିତ । ରକ୍ଷାବନ୍ଧନ ପୂର୍ଣ୍ଣିମାର ପବିତ୍ର ବେଳାରେ ଭୂମିଷ୍ଠ ହୋଇ ଅମାବାସ୍ୟାର ଅନ୍ଧକାରରେ ଅସ୍ତ ହେଲେ ।

ବଡବଜାର
ସମ୍ବଲପୁର-୭୬୮୦୦୩



# କବି ବ୍ରଜନାଥ ରଥ– ଏକ ସ୍ମୃତି ଅର୍ଘ୍ୟ

**ଶାନ୍ତି ମହାପାତ୍ର ବଳ**

ତମ୍ବା ତାର ପରି ନହନହକା ଦେହ, ତୀକ୍ଷ୍ଣ ନାସିକା, ଉନ୍ନତ କପାଳ, ପରିଧାନ ଖଦଡ ଧୋତି ଓ ପଞ୍ଜାବୀ । ଗୋପାଳ ଗାଁରୁ ଟାଉନ୍ ହଲ୍ ଦେଇ ମୋର ନିତି ଯିବା ଆସିବା ଫକୀର ମୋହନ କଲେଜକୁ । ଏହି ଅବସରରେ ଜାଣିବାକୁ ପାଇଲି ତାଙ୍କର ପରିଚୟ । ମନେ ପଡିଲା, ଆରେ ତାଙ୍କ କବିତା ତ ମୁଁ ପଢିଛି । ଇଏ ତେବେ ସେହି ସାମ୍ୟବାଦୀ ଛାନ୍ଦସିକ କବି । କ୍ରମଶଃ ହୃଦ୍‌ବୋଧ ହେଲା, ଠିକ୍ ଛକ ଉପରେ ତାଙ୍କର ପ୍ରେସ୍ ଘରଟି । ବାଲେଶ୍ୱର ସହରର ସାହିତ୍ୟ-ସାହିତ୍ୟିକ, କୃତି-କୀର୍ତ୍ତିର ଆଲୋଚନା ସମାଲୋଚନାର ଖଟି– ଆଡ୍‌ଡା ସ୍ଥଳୀ । ବିଶେଷତଃ ସଂଧ୍ୟା ନଇଁଲେ ସାହିତ୍ୟିକ, ସାହିତ୍ୟ ଅନୁରାଗୀ କବି, ଛାତ୍ର, ଅଧ୍ୟାପକଙ୍କର ସେଠାରେ ହୁଏ ମେଳ । ଚା, ବରା, ପକୋଡି, ମସଲା ମୁଢିର ହୁଏ ସଦୁପଯୋଗ । ବାଲେଶ୍ୱରର ସାହିତ୍ୟ ପାଣିପାଗ, ସାହିତ୍ୟ-ସାଂସ୍କୃତିକ, ଅନୁଷ୍ଠାନ, ସଭା-ସମ୍ମିଳନୀ ବିଶେଷ କରି ପ୍ରାଚୀନ ଅନୁଷ୍ଠାନ । 'ଫକୀର ମୋହନ ସାହିତ୍ୟ ପରିଷଦ' କହିଲେ ପ୍ରଥମେ ଦୃଷ୍ଟିକୁ ଆସନ୍ତି କବି, ବକ୍ତା, ସଂଗଠକ ବ୍ରଜନାଥ ରଥ । ଅନ୍ୟୂନ ଦୀର୍ଘ ତିରିଶ ବର୍ଷ ଧରି ସେ ତାଙ୍କର ବ୍ୟକ୍ତିତ୍ୱ, ସଂଗଠନ ଶକ୍ତି, ନୀତି ଓ ଆଦର୍ଶ ଏବଂ ଜନପ୍ରିୟତା ଓ ଖ୍ୟାତି ବଜାୟ ରଖିଥିଲେ ।

ଏତ ଅର୍ଦ୍ଧ-ଶତାବ୍ଦୀ ପାଖାପାଖି କଥା– ସାଇତା ହୋଇ ରହିଛି ମନ– ଗନ୍ତାଘରେ । ନିଚ୍ଛକ ସତ ଘଟଣାଗୁଡା, ସତସତିକା ମଣିଷମାନେ ପାଲଟି ଯାଇଛନ୍ତି ଅସରନ୍ତି ସ୍ମୃତି । ଯାହାର ରୋମନ୍ଥନ ଟାଣି ନେଉଛି ମୋତେ ବହୁ ପଛକୁ, ଫେରି ଫେରି ଚାହିଁଲେ, ଦେଖା ଦିଅନ୍ତି କହ୍ନେଇ, ପଞ୍ଚାନନ, ଶରତବାବୁ, ପ୍ରଶାନ୍ତ, କମଳାକାନ୍ତ, ଚନ୍ଦ୍ରବାବୁ, ଉପେନ୍ଦ୍ର ବାବୁ, ଦୀପ୍ତି ଓ ଅନ୍ୟମାନେ- ଘଟଣା ପ୍ରବାହରେ ଭେଟ ହୋଇଯାଏ ଟାଉନ୍ ହଲ୍, ସହିଦ୍ ସ୍ମୃତି ଭବନ, ଶାନ୍ତି କାନନ, ନୃତ୍ୟ ସଂଗୀତ କଳା ମନ୍ଦିର, କବିତା ଆସର, ଚାନ୍ଦିପୁର ପିକ୍‌ନିକ୍ ପ୍ରଭୃତି– କାନରେ ଗୁଞ୍ଜରଣ ସୃଷ୍ଟି କରେ କୁମାରୋତ୍ସବ, ମକର-ଉତ୍ସବ, ନାଟ୍ୟ ଉତ୍ସବର ସଂଗୀତ ଓ ନୃତ୍ୟର ଝଙ୍କାର, ଭାଷଣ ଓ ଘଟଣାବଳୀ, ଫକୀର ମୋହନ କବିତାବଳୀ ପ୍ରତିଯୋଗିତା, ଏ ସବୁଥିରେ ଆଖିରେ ପଡନ୍ତି ଅତି ଉଜ୍ଜ୍ୱଳ ଭାବରେ ଭାସ୍ୱର ହୋଇ ଉଠନ୍ତି କବି ବ୍ରଜନାଥ ରଥ । ତାଙ୍କର ମୂଲ୍ୟବାନ ପରାମର୍ଶ, ସାହିତ୍ୟ ସଭାରେ ଅଧ୍ୟକ୍ଷତା, କବିତା ପାଠୋତ୍ସବରେ ଆଲୋଚନା, ବାଲେଶ୍ୱର ନାଗରିକ ମଞ୍ଚରେ ଉଦ୍‌ବୋଧନ ଯେମିତି ମନେହୁଏ ଅପରିହାର୍ଯ୍ୟ । ବାଲେଶ୍ୱର ବାହାରୁ, ଏପରିକି ରାଜ୍ୟ ବାହାରୁ ଯୋଗ ଦିଅନ୍ତି ବହୁ ଖ୍ୟାତନାମା କବି, କଥାକାର, ସାହିତ୍ୟ ସଂସ୍କାରକ, ଉଚ୍ଚ ପଦବୀଧାରୀ ସାହିତ୍ୟ-କର୍ଣ୍ଣଧାର, ରାଜନେତା ଓ ବାଗ୍ମୀ ପୁରୁଷ । ପାଳିତ ହୁଏ ମହାମନୀଷୀମାନଙ୍କର ଜୟନ୍ତୀ, ଶ୍ରାଦ୍ଧ ବାର୍ଷିକୀ । ଦୀର୍ଘଦିନ ଧରି ଫକୀର ମୋହନ ସାହିତ୍ୟ ପରିଷଦର ସଭାପତି ପଦକୁ ମଣ୍ଡନ କରି ଆସିଛନ୍ତି ସେ, ସମସ୍ତଙ୍କ ଇଚ୍ଛା, ସମ୍ମତି ଓ ସମର୍ଥନରେ । କେଉଁ କୃତି କବି କଳାକାରଙ୍କ ଅଭିନନ୍ଦନ ଗ୍ରନ୍ଥ ସମ୍ପାଦନା, ମହାପ୍ରୟାଣରେ ସ୍ମରଣିକା ଓ ଜାତୀୟ ଦିବସ ଉପଲକ୍ଷେ ଉତ୍ସବର କରିଛନ୍ତି ଉଦ୍‌ଘାଟନ । ଏଭଳି ବହୁ ସାହିତ୍ୟ-ସାହିତ୍ୟିକ ଅନୁଷ୍ଠାନର ସେ ଥିଲେ ତତ୍ତ୍ୱାବଧାରକ, ପୃଷ୍ଠପୋଷକ ଓ ସଂଗଠକ ।

ବାଲେଶ୍ୱର ରହଣି ଭିତରେ ମୁଁ ଏହି ସମସ୍ତ ଅନୁଷ୍ଠାନ ଉତ୍ସବ, ବିଶେଷ ଭାବରେ 'ଫକୀର ମୋହନ ସାହିତ୍ୟ ପରିଷଦ' ଓ 'ନୃତ୍ୟ ସଂଗୀତ କଳା ମନ୍ଦିର' ସହିତ ହୋଇଗଲି ଅଙ୍ଗାଙ୍ଗୀଭାବେ ଜଡିତ । ସଂକ୍ରାନ୍ତି ପୁରୁଷ ଫକୀର ମୋହନଙ୍କ ଜନ୍ମବାସର ଉତ୍ସବ ଅବସରରେ ଚଳଚଞ୍ଚଳ ହୋଇଉଠେ ବାଲେଶ୍ୱର ସହରର କର୍ମକର୍ତ୍ତା ଓ ଶାନ୍ତି କାନନର ତାଙ୍କର ସେହି ସାଧନାର ପୀଠଟି । ଅତିଥି ଚୟନ, ସଭା ପରିଚାଳନା, ସେମାନଙ୍କର ରହଣି, ସ୍ମରଣିକା ପ୍ରକାଶ କାର୍ଯ୍ୟରେ ବ୍ରଜବାବୁଙ୍କର ନେତୃତ୍ୱରେ ନିଆଯାଏ ସମସ୍ତ ନିଷ୍ପତ୍ତି ।




ସେହିପରି ନୃତ୍ୟ ସଂଗୀତ କଳା ମନ୍ଦିରର କୁମାରୋତ୍ସବ ଓ ସ୍ୱତନ୍ତ୍ର ଉତ୍ସବରେ ମୁଁ କେତେଥର ରଚନା କରିଛି ନୃତ୍ୟ–ନାଟିକା ଓ ପ୍ରାରମ୍ଭିକ ସଂଗୀତ । ସେସବୁକୁ ସଂଶୋଧନ ଓ ଅଧିକ ମନଛୁଆଁ କରେ ବ୍ରଜବାବୁଙ୍କ କାବ୍ୟିକ କୃତି ଓ ଚିନ୍ତାଧାରା । ସାହିତ୍ୟ ସମ୍ପର୍କରୁ ଗଢି ଉଠିଲା ବ୍ୟକ୍ତିଗତ ଓ ପାରିବାରିକ ସମ୍ପର୍କ । ମୋର ଓମର ଚଉପଦୀ (କ୍ୱାଟରେଟ ଫର୍ମ) ରଚନାକୁ ସେ କରିଥିଲେ ଆବଶ୍ୟକୀୟ ସଂଶୋଧନ । ଅଧିକ ହୃଦୟଗ୍ରାହୀ, ଛନ୍ଦୋବଦ୍ଧ ଓ ସୁଖପାଠ୍ୟ ।

ଆମର ଭଦ୍ରକ ରହଣି ଓ କଟକର ବିଭିନ୍ନ ସ୍ଥାନରେ ଅବସ୍ଥାନ ବେଳେ ସେ ଆସୁଥିଲେ ଆମ ଘରକୁ । ମୋ ପୂର୍ବରୁ ତାଙ୍କ ସହ ମୋ ସ୍ୱାମୀ ଶିକ୍ଷାବିତ୍ ଓ ସାହିତ୍ୟିକ ପ୍ରଫେସର ଗଙ୍ଗାଧର ବଳଙ୍କ ସହ ଥିଲା ଆତ୍ମୀୟତା ଓ ଘନିଷ୍ଠତା । ଏହା ଆମର ସମ୍ପର୍କକୁ କରିଥିଲା ଅଧିକ ଦୃଢ ଓ ଘନିଷ୍ଠତର । ବାଲେଶ୍ୱରରୁ ବିଦାୟ ନେବା ପରେ ବି ଲେଖାଲେଖି, ପୁସ୍ତକ ପ୍ରକାଶନ ସମ୍ପର୍କରେ ସେ ମୋତେ ଦେଇଥିଲେ ପ୍ରୋତ୍ସାହନ ଓ ପ୍ରେରଣା । ଯାଙ୍କ ଦେହାନ୍ତ ପରେ କଟକରେ ଏକ ସାହିତ୍ୟ ଆସରରେ ହୋଇଥିଲା ସାକ୍ଷାତ । ଜାଣିବାକୁ ପାଇଲି ତାଙ୍କ ପାଖରେ ପ୍ରଫେସର ବଳଙ୍କର ଏକ କ୍ଷୁଦ୍ର କାବ୍ୟ ପାଣ୍ଡୁଲିପି 'ପାର୍ବତୀ ତପସ୍ୟା' ରହିଯାଇଥିଲା, ଯାହା ସମ୍ପର୍କରେ ମୁଁ ବିନ୍ଦୁ ବିସର୍ଗ ହିଁ ଜାଣି ନଥିଲି । ସେ ତାହାକୁ ସଂଶୋଧନ କରି ପ୍ରକାଶନର ବ୍ୟବସ୍ଥା କରିଥିଲେ । ଏହି ପ୍ରକାର ସଚ୍ଚୋଟତା କେତେଜଣଙ୍କ ପାଖରେ ଦେଖିବାକୁ ମିଳିଥାଏ ?

ନିକଟରୁ ବୁଝିବାକୁ ଚେଷ୍ଟା କରିଛି ମୁଁ କବି ଶ୍ରୀ ରଥଙ୍କୁ । ସେ ନୀତିବାଦୀ, ସ୍ୱାଭିମାନୀ, ସ୍ପଷ୍ଟବାଦୀ ଏବଂ ପରୋପକାରୀ । ଜୀବନଶୈଳୀ ତାଙ୍କର ସରଳ, ନିରାଡମ୍ବର ଓ ଶୃଙ୍ଖଳିତ, ମାର୍ଜିତ । ସାହିତ୍ୟ ସାଧନାରେ ନିୟୋଜିତ ସମୟ ବ୍ୟତୀତ ସେ ନିଜକୁ ସହରର ସର୍ବାଙ୍ଗୀନ ଉନ୍ନତି ଓ ପ୍ରଗତି କଳ୍ପେ କରିଛନ୍ତି ଉତ୍ସର୍ଗ । ଫକୀରମୋହନ ବିଶ୍ୱବିଦ୍ୟାଳୟ ମେଡିକାଲ୍ କଲେଜ ପ୍ରତିଷ୍ଠା ଦିଗରେ ତାଙ୍କର ନେତୃତ୍ୱ, ଉଦ୍‌ଯୋଗ ଓ ଶ୍ରମ ସ୍ୱୀକାର ଅବଶ୍ୟ ଅନସ୍ୱୀକାର୍ଯ୍ୟ । କିନ୍ତୁ ସେ କେଉଁଠି ନିଜ ପାଇଁ ଅହେତୁକ ସୁଯୋଗ ଦେବାକୁ ବ୍ୟାକୁଳତା ପ୍ରକାଶ କରି ନାହାନ୍ତି । ତତ୍କାଳୀନ ପରରାଷ୍ଟ୍ର ବିଭାଗ ମନ୍ତ୍ରୀ ସ୍ୱର୍ଗତଃ କୁଣ୍ଡୁ ତାଙ୍କର ବନ୍ଧୁ । ସେ ଇଚ୍ଛା କରିଥିଲେ ଅନ୍ୟମାନଙ୍କ ପରି ସରକାରୀ ଅର୍ଥରେ ବହୁ ଦେଶ ଭ୍ରମଣ କରିପାରିଥାନ୍ତେ । କିନ୍ତୁ ସେ ସୁବିଧାବାଦୀ ନଥିଲେ । ସତ୍ୟ, ନ୍ୟାୟ ଓ ଔଚିତ୍ୟ ମାର୍ଗରେ ନିଜର ଜୀବନ– ଦର୍ଶନକୁ ପରିଚାଳିତ କରି ସ୍ୱ ଜୀବନାଦର୍ଶକୁ ଲେଖନୀ ମୁନରେ କରିଛନ୍ତି ପରିପ୍ରକାଶ । ୧୯୭୫ରେ ଜରୁରିକାଳୀନ ପରିସ୍ଥିତିରେ ସେ ଯେପରି ଅତି ଚତୁରତାର ସହ ଗଣତାନ୍ତ୍ରିକ କଣ୍ଠରୋଧର ପ୍ରତିବାଦ କରିଛନ୍ତି, ତାଙ୍କ ରଚନାରେ ତାହା ତାଙ୍କର ନିର୍ଭୀକତା ଓ କାବ୍ୟିକ କଳା କୁଶଳତାର ପରିଚୟ ଦିଏ । ସଭା ସମିତି ଓ ଆଲୋଚନାଚକ୍ରରେ ସେ ତାଙ୍କର ବାଗ୍ମିତାର ପରିଚୟ ଦେବା ସହିତ ଅତି ଉଚ୍ଚ ପଦବୀଧାରୀ, କ୍ଷମତାଶାଳୀ ରାଜନେତାଙ୍କୁ ଅତି ଶାଣିତ ସ୍ୱରରେ ସେମାନଙ୍କର ଦୋଷ ଦୁର୍ବଳତାର କଟୁ ସମାଲୋଚନା କରିବାକୁ ପଶ୍ଚାତ୍‌ପଦ ହୋଇ ନାହାନ୍ତି ।

ସେ ଥିଲେ ବନ୍ଧୁ ବତ୍ସଳ, ସ୍ନେହୀ ଓ ଅତିଥି ପରାୟଣ । ପିତୃ, ମାତୃ ଋଣ ପରିଶୋଧ କରିବାକୁ ସେ କରିଛନ୍ତି ବହୁ ପ୍ରୟାସ । ଆବାଲ୍ୟ ମାତୃ ସ୍ନେହ–ବଞ୍ଚିତ, ପିତାଙ୍କ ଦ୍ୱାରା ଲାଳିତ ପାଳିତ ହୋଇ ତାଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ସେ ତାଙ୍କର ଜୀବିକାର ମୁଖ୍ୟ କେନ୍ଦ୍ର ଛାପାଖାନା ନାମ ରଖିଛନ୍ତି ବିଶ୍ୱଶ୍ରୀ ପ୍ରେସ୍– ପିତା ବିଶ୍ୱନାଥଙ୍କ ନାମ ବହନ କରି । ସେହିପରି ତାଙ୍କର ଅନ୍ୟ ଏକ ଅନନ୍ୟ ଉଦ୍ୟମ ହେଉଛି ବିଶ୍ୱତାରା ପାଠାଗାର– ଯେଉଁଥିରେ ସେ ତାଙ୍କର ସାରା ଜୀବନର ଶକ୍ତି, ଶ୍ରମ ଓ ଅର୍ଥ ବ୍ୟୟ କରିଛନ୍ତି । 'ବିଶ୍ୱତାରା' ତାଙ୍କ ପିତାମାତାଙ୍କ ନାମ ଅନୁସାରେ ଅଭିପ୍ରେତ । ମନେ ଅଛି, ଭଦ୍ରକ କଲେଜକୁ ବଦଳି ହୋଇ ଆସିବା ବର୍ଷ ତାଙ୍କର ପିତୃ ବିୟୋଗ ଘଟିଥିଲା । ସେ ମୋତେ ଚିଠି ଲେଖିଥିଲେ– ବାଲ୍ୟାବସ୍ଥାରୁ ମା'ଙ୍କୁ ହରାଇ ମୁଁ ନିଜକୁ ଯେତେ ଅସହାୟ ମଣି ନଥିଲି, ଆଜି ଏଇ ପରିଣତ ବୟସରେ ବାପାଙ୍କୁ ହରାଇ ମୁହ୍ୟମାନ ହୋଇ ପଡିଛି । ଏଥିରୁ ତାଙ୍କର ପିତାଙ୍କ ପାଇଁ ପ୍ରଗାଢ ମମତା, ଶ୍ରଦ୍ଧା, ଭକ୍ତି, ସମ୍ମାନ ଅନୁମିତ ହେଉଛି । ତାଙ୍କ ଅବର୍ତ୍ତମାନରେ ଏହି ମହାନ୍ ଅନୁଷ୍ଠାନକୁ ବଜାୟ ରଖିବା ସହ, ତା'ର ରକ୍ଷଣାବେକ୍ଷଣ ଓ ପରିଚାଳନା ଭାର ତାଙ୍କ ଉତ୍ତରାଧିକାରୀଙ୍କ ହାତରେ, ସେ ତାହାକୁ ନିର୍ବାହ କରିବେ ବୋଲି ଆଶା ।

ଡିଗ୍ରୀଧାରୀ ସେ ନୁହଁନ୍ତି, କିନ୍ତୁ ଇଂରାଜୀ, ବଙ୍ଗଳା ଓ ହିନ୍ଦୀ ଭାଷା– ସାହିତ୍ୟରେ ତାଙ୍କର ଥିଲା ଗଭୀର ଅଧ୍ୟୟନ ଓ ଅନୁଧ୍ୟାନ । ବିଶେଷ କରି ବଙ୍ଗଳା– ସାହିତ୍ୟ କ୍ଷେତ୍ରରେ ତାଙ୍କର ଥିଲା ପ୍ରଗାଢ ଅଭିନିବେଶ । ଏହି ସ୍ୱଳ୍ପ ଶିକ୍ଷା ସତ୍ତ୍ୱେ ସେ ରାଜ୍ୟର ପାଠକ ମହଲ, ବୁଦ୍ଧିଜୀବୀ, ଅଧ୍ୟାପକ, ପ୍ରକାଶକ ଏବଂ ପତ୍ର–ପତ୍ରିକାର ସମ୍ପାଦକ ଓ ସ୍ତମ୍ଭକାର ମଧ୍ୟରେ ଥିଲେ ସୁପରିଚିତ, ସମ୍ମାନାସ୍ପଦ ଓ ଆଦରଣୀୟ । ଏହା ସମ୍ଭବ ହୋଇଥିଲା ତାଙ୍କର କବି ସୁଲଭ ପାଣ୍ଡିତ୍ୟ ଓ ବହୁ ଶାସ୍ତ୍ର ପାଇଁ । ସହରରେ ବେସରକାରୀ ବହୁ ଅନୁଷ୍ଠାନର ସେ ଥିଲେ ସଦସ୍ୟ, କର୍ମକର୍ତ୍ତା । ରାଜ୍ୟ ଭିତରେ ଓ ବାହାରେ ବହୁବାର ସେ କବିତା ଆସରରେ ଯୋଗଦେବା ସହିତ

ସେଥିରେ କରିଛନ୍ତି ଅଧ୍ୟକ୍ଷତା । ନୂତନ ପିଢିର କବି ଲେଖକମାନଙ୍କ ପାଇଁ ସେ ଥିଲେ ପ୍ରେରଣାର ଉତ୍ସ । ନାନା ଦିଗରେ ସେ ସେମାନଙ୍କୁ ଦେଉଥିଲେ ପ୍ରୋତ୍ସାହନ । ଯୁବ ଲେଖକ ସମ୍ମେଳନ ସହିତ ସେ ଥିଲେ ଓତଃପ୍ରୋତଃ ଭାବେ ଜଡିତ । ଭଲ ଲେଖାଟିଏ ପଢିଲେ ତା'ର ପ୍ରଶଂସା କରନ୍ତି । ଆଗେଇବା ପାଇଁ ଉତ୍ସାହିତ କରନ୍ତି । ଚିଠି ଲେଖନ୍ତି, ଦେଖାହେଲେ କହି ପକାନ୍ତି । ଅନ୍ୟର ପ୍ରତିଭାର ବିକାଶରେ ତା' ଗୁଣବତ୍ତାର ପ୍ରଶଂସା କରିବା ଗୁଣଟି (ଏପ୍ରିସିଏସନ୍) ଈର୍ଷୁକ ଓ ଅହଂବାଦୀଙ୍କଠାରେ ଦେଖିବାକୁ ମିଳେନାହିଁ, ଯାହା ତାଙ୍କ ପାଖରେ ଥିଲା ପୂର୍ଣ୍ଣ ମାତ୍ରାରେ ।

ସେ ଥିଲେ ସ୍ନେହୀ, ଦରଦୀ, ମାନବବାଦୀ ମଣିଷଟିଏ । ପୁଞ୍ଜି ବିପ୍ଳବର ବହ୍ନି ଶିଖା । ଉଭୟର ସମନ୍ୱୟ ଘଟିଛି ତାଙ୍କ କବିତାରେ । ବାମପନ୍ଥୀ, ବିପ୍ଳବୀ-ବାସ୍ତବବାଦୀ କବି ଭାବରେ ସେ ପରିଚିତ ଥିଲେ ମଧ୍ୟ ରୋମାଣ୍ଟିକ ଚେତନା, କଳ୍ପନା ବିଳାସ ଓ ଆଶାବାଦୀ ତାଙ୍କ ରଚନାରେ ଅନେକ ସ୍ଥାନରେ ସ୍ପଷ୍ଟ ହୋଇପଡିଛି–

'ଫୁଟିବାର ଅନେକ ଆଶା ନେଇ
ଆଜି କିନ୍ତୁ ଉଠିବାର ଆଶା ନେଇ
ମୁଁ ବୁଡିବାକୁ ଚାହେଁ
ମୁଁ ଲୋଟିବାକୁ ଚାହେଁ ।'

ଅନେକ ସୂର୍ଯ୍ୟାସ୍ତ ପରେ–

ଆଜି ମୁହିଁ ସେଥିପାଇଁ
ସଂଖ୍ୟାହୀନ ଅଜାତ ସୂର୍ଯ୍ୟଙ୍କୁ
ତେଜୀୟାନ୍ କରିଗଲି ମୋହରି ରକ୍ତରେ
ମୋ ଜୀବନ ସୂର୍ଯ୍ୟାସ୍ତର ପରେ, ଯୁଗ ଯୁଗ ଧରି
ଫୁଟି ଯା' ପୂର୍ବାଶ କପୋଳେ ।

ବିଂଶ ଶତକର ଷାଠିଏ ଦଶକରୁ ୯୦ ଦଶକ ମଧ୍ୟରେ ଓଡ଼ିଆ କବିତାର ଆଦର ହ୍ରାସ ପାଇ ଆସିଥିଲା । କବିତାର ଛନ୍ଦହୀନତା, ଗଦ୍ୟ-ଶୈଳୀ, ଦୁର୍ବୋଧତା, ଅଯଥା ଦୀର୍ଘତା, ଉଦ୍ଭଟ ଚିନ୍ତାଧାରା ପାଇଁ ପାଠକ ମହଲ ହୋଇଥିଲେ କବିତା ପ୍ରତି ବିମୁଖ ଓ ବୀତସ୍ପୃହ । କିନ୍ତୁ କବି ଶ୍ରୀ ରଥ ଏହାଦ୍ୱାରା ପ୍ରଭାବିତ ନହୋଇ ନିଜସ୍ୱ ରୀତିରେ ଛନ୍ଦୋବଦ୍ଧ କବିତା ରଚନା କରିବା ରଖିଥିଲେ ଅବ୍ୟାହତ । ମୁକ୍ତ ଛନ୍ଦ କବିତାରେ ମଧ୍ୟ ସେ ତାଙ୍କ କାବ୍ୟିକ ଭାବଧାରା, ମାଧୁର୍ଯ୍ୟ ଓ ସାବଲୀଳତା ପାଠକୀୟ ମନଛୁଆଁ ହୋଇ ଆଦର ଲାଭ କରିଛି । ତାଙ୍କ ଲେଖନୀରୁ ଝରିପଡିଛି ଅଜସ୍ରାବୀ କବିତାର ଧାରା । ଭାଷା ସରଳ, ହୃଦୟସ୍ପର୍ଶୀ । ଟାଗୋର ପୁରସ୍କାର ଲବ୍ଧ ତାଙ୍କର 'ସାମାନ୍ୟ-ଅସାମାନ୍ୟ' କବିତା ସଂକଳନରେ ଅତି କ୍ଷୁଦ୍ର ଜିନିଷ ଯଥା– ଖଟିଆ, ମଶାରୀ, ଚୌକି, ପୋଖରୀ ପ୍ରଭୃତି ମଣିଷ ସେବା ଓ ଉପକାର କରି ହୋଇ ଉଠିଛନ୍ତି ଅସାମାନ୍ୟ । ଶାଣିତ-ବ୍ୟଙ୍ଗ ମାଧ୍ୟମରେ ବ୍ୟକ୍ତି, ଅନୁଷ୍ଠାନ, ସରକାର, ପୁଞ୍ଜିବାଦ ବିରୋଧରେ କରିଛନ୍ତି ସ୍ୱର ଉତ୍ତୋଳନ । କବି ନିର୍ଭୀକ । ତେଣୁ ସ୍ପଷ୍ଟବାଦୀ । ସେହିପରି ଲଘୁଶତକ ତାଙ୍କର ଅନ୍ୟ ଏକ କାବ୍ୟ ଗ୍ରନ୍ଥ, ଯେଉଁଥିରେ ଲଘୁ ପରିହାସ ଛଳରେ ବାରି ହୋଇ ପଡିବ ନୀତି-ଅନୀତି, ଉଚିତ୍-ଅନୁଚିତ୍ ଓ ନ୍ୟାୟ-ଅନ୍ୟାୟ । ଶାନ୍ତି, ସଂହତି, ସାମ୍ୟ, ଐକ୍ୟର ଜୈତ୍ରଗାନ କରି ମାନବବାଦୀ କବି ବ୍ରଜନାଥ ଯୁଦ୍ଧ ବିରୁଦ୍ଧରେ ମସି ଚାଳନା କରି କଠୋର ଓ ତୀବ୍ର ନିନ୍ଦା କରିଛନ୍ତି ।

କବି ବ୍ରଜନାଥ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । କାବ୍ୟ ସୃଷ୍ଟି ଥିଲା ତାଙ୍କର ସହଜାତ ପ୍ରବୃତ୍ତି । ଉଚ୍ଚକୋଟୀର ସମ୍ପାଦନ ଥିଲା ଅନ୍ୟ ଏକ ବୈଶିଷ୍ଟ୍ୟ । ଏତଦ୍‌ବ୍ୟତୀତ ସେ ଥିଲେ ଦକ୍ଷ ଅନୁବାଦକ । ମୁସଲମାନ ମୌଳବାଦୀମାନଙ୍କ ରକ୍ଷଣଶୀଳତା, ଧର୍ମାନ୍ଧତା ଓ ଜେହାଦୀ ମନୋଭାବର ତୀବ୍ର ବିରୋଧ କରିଥିଲେ । ବାଙ୍ଗଲାଦେଶୀ କବୟିତ୍ରୀ, ବିପ୍ଳବିନୀ ତସ୍‌ଲିମା ନାସ୍‌ରିନ୍ ଲେଖନୀ ଚାଳନା କରି ନିର୍ବାସିତ ହେବା ଘଟଣା ସମଗ୍ର ବିଶ୍ୱରେ ସୃଷ୍ଟି କରିଥିଲା ଆଲୋଡନ । କବି ଶ୍ରୀ ରଥ ତସ୍‌ଲିମାଙ୍କ ତିନୋଟି କବିତା ପୁସ୍ତକକୁ ଓଡ଼ିଆରେ ଅନୁବାଦ କରି ହୋଇଥିଲେ ପ୍ରଶଂସା ଭାଜନ । ତାଙ୍କର ଶ୍ରେଷ୍ଠ କବିତା ଦୁଃଖିନୀ ଝିଅର ଗୀତ ଓ ନିର୍ବାଚିତ କଲାମ ।

ଲେଖାଲେଖି ସମ୍ପର୍କ ବହି ପ୍ରକାଶନରେ ତାଙ୍କର ମୂଲ୍ୟବାନ ପରାମର୍ଶ ଲୋଡିବା ସହିତ ମୋର ଘରୋଇ ଓ ବ୍ୟକ୍ତିଗତ ସମସ୍ୟା ମଧ୍ୟ ତାଙ୍କ ଦୃଷ୍ଟି ପରିସରକୁ ଆସିଛି । ସେ ବିଶ୍ୱସ୍ତ । ତାଙ୍କ ବିଶ୍ୱସନୀୟତା ଗୁଣଟି ପାଇଁ ସେ ବୋଧହୁଏ ଅନେକଙ୍କର ହୋଇ ପାରିଛନ୍ତି ଆପଣାର, ଘନିଷ୍ଠ ଓ ଅନ୍ତରଙ୍ଗ । ବିଶେଷତଃ ପ୍ରଫେସର ବଳଙ୍କ ଦେହାନ୍ତ ପରେ ମୁଣ୍ଡ ଟେକିଥିବା କେତେକ ପାରିବାରିକ ସମସ୍ୟାର ସମାଧାନ ଓ କାର୍ଯ୍ୟାନୁଷ୍ଠାନ ଦିଗରେ ସେ ମୋତେ ଦେଇଛନ୍ତି ଉଚିତ୍ ଦିଗ୍‌ଦର୍ଶନ । ମୁଁ ଏବେ ତାଙ୍କ ପରି ଶୁଭେଚ୍ଛୁ, ଆତ୍ମୀୟ ଓ ଉପଦେଷ୍ଟାଙ୍କ ବିୟୋଗରେ ହୋଇଛି ବିଶେଷ ମର୍ମାହତ । ମନେ ପଡୁଛି, ଗଙ୍ଗାଧର ବଳ ପ୍ରଥମ ସ୍ମୃତି ସମ୍ମାନ-ଚୟନ ଓ ପ୍ରଦାନରେ ସେ ଦେଇଥିଲେ ମୂଲ୍ୟବାନ ପରାମର୍ଶ ଓ ଅକୁଣ୍ଠ ସହଯୋଗ ।

ଦୀର୍ଘ ୪/୫ ବର୍ଷ ହେଲା ସେ ଥିଲେ ଅସୁସ୍ଥ । ତଥାପି ସେ ସଭାସମିତିରେ ଯୋଗଦାନ ଓ ଲେଖାଲେଖି ରଖିଥିଲେ ଅବ୍ୟାହତ । ହସ୍‌ପିଟାଲ୍‌ରେ ଚିକିତ୍ସିତ ହେଉଥିବା ବେଳେ ଦୁଇଥର ତାଙ୍କୁ ସାକ୍ଷାତ କରିଥିଲି । ସୁଖ, ଦୁଃଖ, ସାହିତ୍ୟାଲୋଚନା, ଗଙ୍ଗାଧର ବଳଙ୍କ ସ୍ମୃତି ସଂଧ୍ୟା, ତାଙ୍କ ପୁସ୍ତକ ସୁରକ୍ଷା ଓ ସଂରକ୍ଷଣ ସମ୍ପର୍କରେ ହୋଇଥିଲା ଆଲୋଚନା । ତା'ପରେ ଟେଲିଫୋନ୍ ଯୋଗେ ବୁଝିଥିଲି ତାଙ୍କର ସ୍ୱାସ୍ଥ୍ୟାବସ୍ଥା । ୨୦୧୨ ଫେବୃଆରୀ ୨୩/୨୪ ତାରିଖରେ ଫକୀର ମୋହନ କଲେଜ ପୁରାତନ ଛାତ୍ର ସଂସଦର ବାର୍ଷିକ ଉତ୍ସବ ଅବସରରେ ସେ ସକାଳ ଅଧିବେଶନରେ ମୁଖ୍ୟ ଅତିଥି ଭାବରେ ଯୁବ ଲେଖକ ଗୋଷ୍ଠୀଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ– ଆମେ ତ ଅସ୍ତମୁଖୀ... । ଡାଏସ୍ ଉପରେ ସଙ୍ଗେ ସଙ୍ଗେ ପ୍ରତିବାଦ କରି କହିଥିଲି– ସୃଜନୀଶୀଳ ପ୍ରତିଭାର ଅସ୍ତ ନାହିଁ । କେବଳ ଉଦୟ ହିଁ ହୋଇଥାଏ । ତାହା ବୋଧହୁଏ ଶେଷ ସାକ୍ଷାତ । ଯିବା ଆସିବାର ଚିରନ୍ତନତା ଭିତରେ ତାଙ୍କର ବିଦାୟରେ ହୁଏତ ବିସ୍ମୟ ବ୍ୟତିକ୍ରମ କିଛି ନାହିଁ । କିନ୍ତୁ ସଂପ୍ରତି ଭବିଷ୍ୟତରେ ମଧ୍ୟ ତାଙ୍କ ସ୍ଥାନ ରହିଯିବ ଶୂନ୍ୟ । ବାଲେଶ୍ୱର ମାଟିରେ କବିତା ରଚନା କ୍ଷେତ୍ରରେ, ସେ ଥିଲେ ଫକୀର ମୋହନଙ୍କ ଯୋଗ୍ୟ ଦାୟଦ । କିନ୍ତୁ ସେ ନିଜେ କହିଛନ୍ତି– ସେ ଫେରିବେ ଶିଶୁର ଲଳିତ କଣ୍ଠେ, ପ୍ରଭାତୀ ତାରାର ହସ୍ତେ ଓ ନୀଳ ପଦ୍ମନୟନ ବିଳାସେ ।

କବି ବ୍ରଜନାଥ ଆଉ ନାହାନ୍ତି ଆମ ଗହଣରେ । ଓଡ଼ିଆ କାବ୍ୟ ସାହିତ୍ୟ କ୍ଷେତ୍ରରେ ତାଙ୍କର ଅନୁପସ୍ଥିତି ସୃଷ୍ଟି କରିଛି ଗଭୀର ଶୂନ୍ୟତା । ବ୍ୟକ୍ତିଗତ ଭାବରେ ମୁଁ ହରାଇଛି ମୋର ଜଣେ ପରମ ହିତୈଷୀ, ଉପଦେଷ୍ଟା ଓ ଆତ୍ମୀୟଙ୍କୁ । ତାଙ୍କ ଆତ୍ମାର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ କାମନା କରିବି ଶିଶୁର ଲଳିତ କଣ୍ଠରେ ପ୍ରଭାତୀ ତାରାର ହସେ ଓ ନୀଳପଦ୍ମ ନୟନ ବିଳାସେ, ସେ ପୁଣି ହୁଅନ୍ତୁ ପ୍ରତିଭାତ ।

ଗ୍ରାୟତ୍ରୀ କୃପା
ନୀଳାଦ୍ରି ବିହାର
କଟକ–୪

# ଶକ୍ତି ସ୍ତୁତି

**ମିଶ୍ର ସତ୍ୟନାରାୟଣ**

ଅଭୟଦାୟିନୀ ଦୁର୍ଗେ ଦୁର୍ଗତିନାଶିନୀ
ନମୋନମୋ ଆଦିମାତା ସଙ୍କଟତାରିଣୀ
ଦଶଭୁଜେ ଭରା ଦଶ ପ୍ରହରଣ
ଜ୍ୟୋତିରେ ଉଜ୍ଜ୍ୱଳ ତବ ତ୍ରିନୟନ
ଜାଗ ମା' ଧରି ସେ ବେଶ କାଳୀ କରାଳିନୀ ।

ଅଜ୍ଞାନ ତିମିରେ ମଣିଷ ରକତେ
ଅମଣିଷ ଖେଳେ ହୋରି
ଦେବ ଭୂଇଁ ବୁକେ ନାଚଇ ଦାନବ
ଅଶାନ୍ତି ଝଡ ତୋଳି ।



ଜନମାନସରେ ଭରିଦିଅ ଶାନ୍ତି
ଶକତିରେ ରଖ ସୃଷ୍ଟିର କାନ୍ତି
ଜୟ ଆଦ୍ୟାଶକତି ମା' କୈଳାସବାସିନୀ ।

ଦାନବର ଯେତେ ଆଶା ଭରସାକୁ
ଚୂନା କରିଦିଅ ମାଆ
ସ୍ୱାର୍ଥ–ମହିଷା ବିନାଶି ଗୋ ମାତ
ହୁଅ ସକଳର ସାହା
ନିଜେ ସରଜନା କରି ଏଇ ଧରା
ଆସିଅଛ ପାଳି ନିଜ ହାତେ ପରା
ପାପୀ ନାଶି ସାଧୁ ରଖ, ଜଗତପାଳିନୀ ।

ସଦସ୍ୟ, ଓଡ଼ିଶା ସାହିତ୍ୟ ଏକାଡେମୀ
ଅମଲାପଡା, ଫୁଲବାଣୀ– ୭୬୨୦୦୧

# ମା' ଦୁର୍ଗାଙ୍କ ବିଭିନ୍ନ ରୂପ ଓ ଶକ୍ତି

**ଶିବସୁନ୍ଦର ପଟ୍ଟନାୟକ**

ଅଯୋନି ସମ୍ଭୂତା ଶକ୍ତି ସ୍ୱରୂପିଣୀ ଆଦିମାତା ମା'ଦୁର୍ଗା ସକଳ ଜଗତର ପାଳନକର୍ତ୍ତ୍ରୀ ଅଟନ୍ତି । ସେ ଜୀବମାନଙ୍କ ଅବିଦ୍ୟା ହରଣ କରି ବିଦ୍ୟା ପ୍ରଦାନ କରନ୍ତି ଏବଂ ଭବବନ୍ଧନରୁ ମୁକ୍ତି ଦେଇ ସାଯୁଜ୍ୟ ମୁକ୍ତି ପ୍ରଦାନରେ ସହାୟକ ହୋଇଥାନ୍ତି ।

ଦୁର୍ଗା ଦେବୀଙ୍କର ଅନେକ ନାମ ଅଛି । ସକଳ କାର୍ଯ୍ୟ କରିବାକୁ ସମର୍ଥ ବୋଲି ସେ ଶକ୍ତି, ପ୍ରଚଣ୍ଡ ପରାକ୍ରମ ଶାଳିନୀ ବୋଲି ସେ ଚଣ୍ଡୀ ଅଟନ୍ତି । ମହର୍ଷି ବ୍ୟାସ ତାଙ୍କୁ ଦୁର୍ଗତିନାଶିନୀ ଦୁର୍ଗା ବୋଲି ଅଭିହିତ କଲାବେଳେ ମହାକବି କାଳିଦାସ ତାଙ୍କୁ ସର୍ବମନ୍ତ୍ରାତିକେ ବୋଲି ସମ୍ବୋଧନ କରିଅଛନ୍ତି । ଅମରକୋଷରେ ଦୁର୍ଗା ଦୁର୍ଗା ମା' ବୋଲି ବର୍ଣ୍ଣନା ହୋଇଅଛି । ସ୍କନ୍ଦ ପୁରାଣରେ ତାଙ୍କୁ ଦୁଃଖାତ୍ ତ୍ରାୟତେ ଦୁର୍ଗା ଇତି ବର୍ଣ୍ଣନା ହୋଇଥିବା ବେଳେ ବ୍ରହ୍ମବୈବର୍ତ୍ତ ପୁରାଣରେ ରିପୁ ସଙ୍କଟ ବେଳେ ଜୀବମାନଙ୍କୁ ଶତ୍ରୁମାନଙ୍କ କବଳରୁ ରକ୍ଷା କରି ଭୟ ଦୂର କରି ଦିଅନ୍ତି । ସେ ମଧ୍ୟ ଭଗବତୀ ନାମରେ ଖ୍ୟାତ । ବିଷ୍ଣୁ ପୁରାଣରେ ପରାଶର ମହର୍ଷିଙ୍କ ମତ ଅନୁସାରେ 'ଭ' ଶବ୍ଦର ଅର୍ଥ ପୋଷଣ କରିବା ଭର୍ତ୍ତା, 'ଗ' ଶବ୍ଦର ଅର୍ଥ ଲୟ ଓ ରଚନା କରିବା ଏବଂ କର୍ମ ଫଳପ୍ରାପ୍ତ କରିବା, 'ବ' ଶବ୍ଦର ଅର୍ଥ ସେ ସମସ୍ତ ଭୂତ ତାଙ୍କଠାରେ ଅବସ୍ଥାନ କରିବା ସଙ୍ଗେ ସଙ୍ଗେ ସେ ଭୂତମାନଙ୍କରେ ନିବାସ କରନ୍ତି । ଏହା ଭଗବାନ ଶବ୍ଦର ଅର୍ଥ ଅଟେ । ଭଗବତୀ ଭଗବାନଙ୍କ ନାରୀଶକ୍ତି– ଯୋଗମାୟା ଓ ମହାମାୟା ଅଟନ୍ତି । ଯୋଗମାୟା ପରାପ୍ରକୃତି ବିସ୍ତାର କରନ୍ତି ଓ ମହାମାୟା ଅପରା ପ୍ରକୃତି ବା ମାୟୀକ ପ୍ରକୃତିରେ ଜୀବଙ୍କୁ ଭବ ବନ୍ଧନରେ ବାନ୍ଧି ରଖନ୍ତି । ମା'ଦୁର୍ଗା ବିଦ୍ୟାଦାତ୍ରୀ ଅଟନ୍ତି । ବିଦ୍ୟା ଶବ୍ଦର ଅର୍ଥ ଈଶ୍ୱରଙ୍କ ସମ୍ବନ୍ଧରେ ଧର୍ମ ଜ୍ଞାନ ଆହରଣ କରିବା । ମା' ଦୁର୍ଗା ଅବିଦ୍ୟା ଦୂର କାରିଣୀ ଅଟନ୍ତି ଅର୍ଥାତ୍ ଜୀବକୁ ଈଶ୍ୱର ଉନ୍ମୁଖୀ କରାଇଥାନ୍ତି । ସେଥିପାଇଁ କୁହାଯାଇଅଛି ଆଦି ମାତା ଭଗବତୀ ସର୍ବେଶ୍ୱରୀ, ମୁକ୍ତଦେବା ପାଇଁ ପରାବିଦ୍ୟା ଏବଂ ସଂସାରରେ ବନ୍ଧନ ଦେବା ପାଇଁ ଅବିଦ୍ୟା ଅଟନ୍ତି ।



ଦେବୀ ଦୁର୍ଗାଙ୍କୁ ଗରୁଡ଼ାସନୀ ବୈଷ୍ଣବୀ, ପଦ୍ମହସ୍ତା ହରିପ୍ରିୟା, ବୀର୍ଯ୍ୟଶାଳିନୀ, ନାରସିଂହୀ, ଆଭରଣ ଭୂଷିତା ବ୍ରାହ୍ମୀ, ଗଜାରୂଢ଼ ଐନ୍ଦ୍ରୀ, ବୃଷାରୂଢ଼ା ମାହେଶ୍ୱରୀ, ଶିଖି (ମୟୂର) ବାହିନୀ କୌମାରୀ, ସିଂହ ବାହିନୀ, ମହିଷାମର୍ଦ୍ଦିନୀ ସମ୍ବୋଧନ ହୋଇଥିବା ଶାସ୍ତ୍ରମାନଙ୍କରେ ବର୍ଣ୍ଣନା ଅଛି । ଏପରିକି ଓଡ଼ିଆ ଗୀତରେ ତାଙ୍କୁ 'ସିଂହବାହିନୀ ଶକ୍ତି ପ୍ରଦାୟିନୀ ମହିଷାମର୍ଦ୍ଦିନୀ ମା' ବର୍ଣ୍ଣନା ଥିବା ଓଡ଼ିଶାର ଘରେ ଘରେ ଖ୍ୟାତ । ଶାସ୍ତ୍ରରେ ମଧ୍ୟ କୁହାଯାଇଛି

ଏକୈକ ଶକ୍ତି ପରମେଶ୍ୱରସ୍ୟ
ତ୍ରିଧା ବିଭକ୍ତ ବ୍ୟବହାର କାଳେ ।
କାପେ ତୁ ଦୁର୍ଗା ପ୍ରଳୟେ ଚ କାଳୀ ॥

ସେ (ମା' ଭବାନୀ) ଆବଶ୍ୟକ ସ୍ଥଳେ ତିନିରୂପ ଧାରଣ କରିଥାନ୍ତି । ସେ ଭୋଗରେ ଲକ୍ଷ୍ମୀ, କୋପରେ ଦୁର୍ଗା ଏବଂ ପ୍ରଳୟ କାଳରେ କାଳୀ ହୋଇଥାନ୍ତି ।

ଆଦ୍ୟାଶକ୍ତି ଦୁର୍ଗା ଦକ୍ଷକନ୍ୟା ସତୀ ରୂପେ ଶିବଙ୍କୁ ପତି ରୂପେ ବରଣ କରିଥିଲେ । ଦକ୍ଷ ଏକ ଯଜ୍ଞ କରି ଦେବତାମାନଙ୍କୁ




ତଥା ଋଷିମାନଙ୍କୁ ବରଣ କରିଥିଲେ ହେଁ ନିଜ ଜ୍ୱାଇଁ ଶିବଙ୍କୁ ନିମନ୍ତ୍ରଣ କରି ନଥିଲେ । ସତୀ ଯଜ୍ଞ ଦେଖିବାକୁ ଜିଦ୍ ଧରିବାରେ ଶିବ ବାରଣ କରିଥିଲେ । ସତୀ କ୍ରୋଧାନ୍ୱିତ ହୋଇ ନିଜ ଶରୀରରୁ ଦଶଟି ରୂପ ପ୍ରକଟ କରିଥିଲେ । ତାହା ଦଶ ମହାବିଦ୍ୟା ରୂପେ ଖ୍ୟାତ । ଏହି ଦଶ ରୂପ ହେଲା (୧)କାଳୀ, (୨)ତାରା, (୩)ମହାବିଦ୍ୟା ବା ତ୍ରିପୁରା ସୁନ୍ଦରୀ, (୪)ଭୁବନେଶ୍ୱରୀ, (୫)ଭୈରବୀ, (୬)ଛିନ୍ନମସ୍ତା, (୭)ଧୂମାବତୀ, (୮)ବଗଳାମୁଖୀ, (୯)ମାତଙ୍ଗୀ ଏବଂ (୧୦)କମଳା । ଏହି ଦେବୀମାନଙ୍କର ରୂପ ଅଲଗା ଏବଂ କାର୍ଯ୍ୟ ମଧ୍ୟ ଅଲଗା ଅଟେ । ବିଶ୍ୱକୁ କବଳ କରୁଥିବା ଦେବୀକାଳୀ କୃଷ୍ଣବର୍ଣ୍ଣା, ବିପଦ ହାରିଣୀ ଦେବୀ ତାରା (ନୀଳ ସରସ୍ୱତୀ) ନୀଳବର୍ଣ୍ଣା, ଐଶ୍ୱର୍ଯ୍ୟ ପ୍ରଦାନ କାରିଣୀ ଦେବୀ ଭୁବନେଶ୍ୱରୀ ଅରୁଣ ବର୍ଣ୍ଣା, ମହାବିଦ୍ୟା ପ୍ରଦାନ କାରିଣୀ ଦେବୀ ଷୋଡ଼ଶୀ–ତ୍ରିପୁରା ସୁନ୍ଦରୀ ଅରୁଣ ବର୍ଣ୍ଣା, (ସେ ଅନୁରାଗ ପ୍ରଦାନ କାରିଣୀ), ଭୟଙ୍କର ରୂପ ଦେବୀ ଭୈରବୀ ଭୟର ତ୍ରାଣକର୍ତ୍ତ୍ରୀ ଓ ରକ୍ତବର୍ଣ୍ଣା, ନିଜ ମସ୍ତକ ଛେଦନ କରି ଯୋଗିନୀ ଦ୍ୱୟଙ୍କୁ ପାନ କରାଉଥିବା ଦେବୀ ଛିନ୍ନମସ୍ତା ଭୟ ତାରଣ କରନ୍ତି, ଦେବୀ ଧୂମାବତୀ ଧୂମ୍ରାବର୍ଣ୍ଣା ଓ ସେ ଦରିଦ୍ରତା ନାଶକାରିଣୀ, ଦେବୀ ବଗଳା ବା ବଗଳାମୁଖୀ ବିଜୟଦାତ୍ରୀ ଓ ପୀତବର୍ଣ୍ଣା, ଦେବୀ ମାତଙ୍ଗୀ ଭୋଗ ପ୍ରଦାୟିନୀ ଓ ଶ୍ୟାମଳାଙ୍ଗୀ ଏବଂ ଦେବୀ କମଳା ଧନ ଓ ଐଶ୍ୱର୍ଯ୍ୟ ପ୍ରଦାନକାରିଣୀ ଏବଂ ସ୍ୱର୍ଣ୍ଣବର୍ଣ୍ଣା ଅଟନ୍ତି ।

ଏହି ଦେବୀମାନେ ଦୁଇଟି ଶ୍ରେଣୀରେ ବିଭକ୍ତ ଯଥା କାଳୀକୁଳ ଓ ଶ୍ରୀକୁଳ । ବୈରାଗୀ ଓ ନିର୍ବାଣ ମୁକ୍ତି କାମନାର ସାଧକମାନେ କାଳୀକୁଳର ଦେବୀ ଯଥା– କାଳୀ, ତାରା, ଛିନ୍ନମସ୍ତା, ମହିଷା ମର୍ଦ୍ଦିନୀ ଦୁର୍ଗା ଓ ତାରା ଏବଂ ଦୟାଶୀଳ ଓ ସାଯୁଜ୍ୟ ମୁକ୍ତି କାମନାକାରୀ ସାଧକମାନେ ଶ୍ରୀକୁଳର ଦେବୀ ଯଥା– ତ୍ରିପୁରାସୁନ୍ଦରୀ, ବଗଳା, ଭୁବନେଶ୍ୱରୀ, ଭୈରବୀ, ଧୂମାବତୀ, ମଧୁମତୀ, ମାତଙ୍ଗୀ ଏବଂ କମଳାଙ୍କୁ ଆରାଧନା କରିଥାନ୍ତି ।

ଦଶମହାବିଦ୍ୟା ପରି ଦେବୀ ଦୁର୍ଗାଙ୍କର ନବଦୁର୍ଗା ରୂପ ଅଛି । ତାଙ୍କୁ ନବକୁମାରୀ ବା ନବ କାତ୍ୟାୟିନୀ ମଧ୍ୟ କୁହାଯାଏ । ସେମାନେ ହେଲେ (୧) ଶୈଳପୁତ୍ରୀ, (୨) ବ୍ରହ୍ମଚାରିଣୀ, (୩) ଚନ୍ଦ୍ରଘଣ୍ଟା, (୪) କୁଷ୍ମାଣ୍ଡ, (୫)ସ୍କନ୍ଦମାତା, (୬) କାତ୍ୟାୟନୀ, (୭) କାଳରାତ୍ରି, (୮) ମହାଗୌରୀ ଏବଂ (୯) ସିଦ୍ଧିଦାତ୍ରୀ । ଏହି ଦେବୀମାନଙ୍କ ନବଶକ୍ତି ଯଥାକ୍ରମେ ପ୍ରଭା, ମାୟା, ଜୟା, ସୂକ୍ଷ୍ମ, ବିଶୁଦ୍ଧ, ନନ୍ଦିନୀ, ସୁପ୍ରଭା, ବିଜୟା ଓ ସର୍ବସିଦ୍ଧିଦା ଏବଂ ଏହି ଦେବୀମାନଙ୍କ ଦ୍ୱାରା ନବବିଘ୍ନ ଦୂରୀକରଣ ନିମନ୍ତେ ଯଥାକ୍ରମେ ବ୍ୟାଧି, ସୈନ୍ୟ, (ଚୋରି), ସଂଶୟ, ପ୍ରମାଦ, ଆଳସ୍ୟ, ଅବିରତ, ଭ୍ରାନ୍ତି, ଦର୍ଶନ ଆଲମ୍ବ ଓ ଭୂମି । ଆଶ୍ୱିନ ବା ଚୈତ୍ର ଶୁକ୍ଳ ପ୍ରତିପଦାଠାରୁ ନବମୀ ତିଥି ମଧ୍ୟରେ ନବଗ୍ରହମାନଙ୍କୁ ବା କୌଣସି ଏକ ଗ୍ରହ ଶାନ୍ତି ନିମନ୍ତେ ନବକୁମାରୀଙ୍କୁ ନବ ପତ୍ରିକା ଯଥା କଦଳୀ, ଅଶୋକ, ସାରୁ, ମାଣସାରୁ, ଜୟନ୍ତୀ, ବେଲ, ଡାଳିମ୍ବ, ଧାନ ଓ ହଳଦୀ ପତ୍ରରେ ପୂଜା କରାଯାଏ । ନବଗ୍ରହ (ରବି, ଚନ୍ଦ୍ର (ସୋମ), ମଙ୍ଗଳ, ବୁଧ, ବୃହସ୍ପତି (ଗୁରୁ), ଶୁକ୍ର, ଶନି, ରାହୁ ଓ କେତୁ ଶାନ୍ତି ପାଇଁ ଯଥାକ୍ରମେ ମାତଙ୍ଗୀ, ଭୁବନେଶ୍ୱରୀ, ବଗଳାମୁଖୀ, ତ୍ରିପୁରାସୁନ୍ଦରୀ, ତାରା, କମଳା, ଦକ୍ଷିଣକାଳୀ, ଛିନ୍ନମସ୍ତା ଏବଂ ଧୂମାବତୀ ଦେବୀମାନଙ୍କ ପୂଜା କରିବାକୁ ହେବ ।

ଦେବୀ ଦୁର୍ଗାଙ୍କର ଅନ୍ୟ ରୂପ ହେଲା ସପ୍ତମାତୃକା, ଆମ୍ଭେମାନେ ଦେବତାମାନଙ୍କୁ ଫଳପ୍ରାପ୍ତି ନିମନ୍ତେ ପୂଜା ଆରାଧନା କରିଥାଉ ସେହିପରି କୌଣସି ନିର୍ଦ୍ଦିଷ୍ଟ ଦେବତାଙ୍କ ପତ୍ନୀ ନିର୍ଦ୍ଦିଷ୍ଟ ଦେବୀଙ୍କୁ ପ୍ରସନ୍ନ କରାଇ ଫଳ ପ୍ରାପ୍ତି ହୋଇଥାଉ । ଏହି ଦେବୀମାନଙ୍କ ବିଷୟରେ ଅମରକୋଷରେ ନିମ୍ନ ପ୍ରକାରେ ବର୍ଣ୍ଣନା ଅଛି –

ବ୍ରାହ୍ମୀ ଚ ବୈଷ୍ଣବୀ ଐନ୍ଦ୍ରୀ ରୌଦ୍ରୀ ବରାହୀ ତଥା ।
କୌବେରୀ ଚୈବ କୌମାରୀ ମାତରଃ ସପ୍ତକୀର୍ତ୍ତିକା ॥

(ଅମରକୋଷ)

(ବ୍ରହ୍ମାଙ୍କ ପତ୍ନୀ ସାବିତ୍ରୀ, ବିଷ୍ଣୁଙ୍କ ପତ୍ନୀ ଲକ୍ଷ୍ମୀ, ଇନ୍ଦ୍ରଙ୍କ ପତ୍ନୀ ସଚୀ, ସୂର୍ଯ୍ୟଙ୍କ ପତ୍ନୀ ଛାୟା, ବରାହଙ୍କ ପତ୍ନୀ ବରାହୀ, କୁବେରଙ୍କ ପତ୍ନୀ କୌବେରୀ ଏବଂ କୁମାର (କାର୍ତ୍ତିକ)ଙ୍କ ପତ୍ନୀ କୌମାରୀ ସପ୍ତମାତୃକା ରୂପେ ବିବେଚିତ ହୋଇଅଛନ୍ତି ।)

ଅମରକୋଷରେ କୌବେରୀ ସ୍ଥଳେ ଦେବୀ ମାହାତ୍ମ୍ୟରେ ଚାମୁଣ୍ଡା ବର୍ଣ୍ଣନା ଅଛି । ଦେବୀ ଚାମୁଣ୍ଡାଙ୍କ ବିଷୟରେ କହିବା ଆବଶ୍ୟକ । ଚାମୁଣ୍ଡା ଦେବୀ ଦୁର୍ଗାଙ୍କର କପାଳରୁ ବାହାରିଥିବା ଚଣ୍ଡୀ ପୁରାଣରେ ବର୍ଣ୍ଣନା ଅଛି ।

ଶ୍ରୀଦେବୀ ଭାଗବତରେ ବର୍ଣ୍ଣନା ଅନୁସାରେ ମା' ଅମ୍ବିକା ଏକ ସୁନ୍ଦରୀ ନାରୀ ହେଲେ ହେଁ ସେ ଏକ କରାଳ ଲୋଚନା, ମୁକ୍ତ କେଶୀ କାଳୀ ସୃଷ୍ଟି କଲେ ଯିଏ କି କୋପରେ ଶ୍ୟାମ ରୂପ ଧାରଣ କରିଥିଲେ । କୋପେନ୍ ବଦନଂ ତସ୍ୟ । ବଭୁବଧାନ ସନ୍ନିଭମ୍ । ସେ ଚଣ୍ଡ ଓ ମୁଣ୍ଡ ମସ୍ତକ ଛେଦନ କରି ଦୁର୍ଗାଙ୍କ ପାଦ ଦେଶରେ ରଖିବା ପରେ ଦୁର୍ଗା ତାଙ୍କୁ ଚାମୁଣ୍ଡା ନାମକରଣ କରିଥିଲେ । ସେ ଦେବୀ ବିକଟାଳ ରୂପୀ ଭୟଙ୍କର ଦନ୍ତପନ୍ତୀ,

ଲୋହିତ ଲୋଚନା ଆଲୁଳାୟିତ କେଶ ଏବଂ ଦଶଭୁଜା ଦେବୀ ଯାହାର ହସ୍ତରେ ଧନୁ, ପର୍ଶୁ, ଦଣ୍ଡ, ମୂଷଳ, କବଚ, ଅଙ୍କୁଶ, ପାଶ, ଶେତକ, ଖାଦ୍ୟ ଓ ବରଦା ହସ୍ତି ଅଟନ୍ତି । ପୂର୍ବ କରଙ୍ଗମାରେ ବର୍ଣ୍ଣନା ଅଛି ଯେ ତାଙ୍କ ମସ୍ତକରେ ଚନ୍ଦ୍ର ଶୋଭାପାଏ ଓ ତାଙ୍କ ବାହନ ପେଚକ ଓ ସେ ଉନ୍ମୁକ୍ତ ମୁଖୀ ଅଟନ୍ତି ଏବଂ ହସ୍ତରେ ସର୍ପ ଓ ଚିଲ ଧାରଣ କରିଥାନ୍ତି । କେଉଁ ପୁସ୍ତକରେ ବର୍ଣ୍ଣନା ଅଛି ଯେ ସେ ଅର୍ଦ୍ଧପଦ୍ମାସନୀ, ଦକ୍ଷିଣ ଚାରି ହାତରେ ଖଡ୍ଗ, ତ୍ରିଶୂଳ, ଛୁରା ଓ ବରଦା ହସ୍ତ ଏବଂ ବାମ ଚାରି ହାତରେ ନୃମୁଣ୍ଡ, ସର୍ପ, ଡମ୍ବରୁ ଓ ପାନ ପାତ୍ର ଧରିଥାନ୍ତି । ଏହି ଦେବୀଙ୍କର ପ୍ରଧାନ କାର୍ଯ୍ୟ ଶବ ବାହନ । ଦେବୀ ଦୁର୍ଗା ଯୁଦ୍ଧ କଲାବେଳେ ମୃତ ଦୈତ୍ୟଙ୍କୁ ବୋହି ନେଇ ସ୍ଥାନ ପରିଷ୍କାର କରନ୍ତି ଏପରି କି ତଳେ ପଡ଼ିଯାଉଥିବା ରୁଧୀର ଚାଟି ସଫା କରି ଦିଅନ୍ତି । ଦେବୀ ଦୁର୍ଗାଙ୍କର ଦଶ ଦିଗ ରକ୍ଷା କରନ୍ତି । ଦେବୀ ଚାମୁଣ୍ଡା ଭକ୍ତମାନଙ୍କୁ ବିଦ୍ୟା ପ୍ରଦାନ କରନ୍ତି । ସେ ମଧ୍ୟ ଆଠଟି ରୂପରେ ପ୍ରକଟ ହୋଇଥିଲେ ଯଥା– ଦକ୍ଷିଣକାଳୀ, ସିଦ୍ଧକାଳୀ, ଉଗ୍ରକାଳୀ, ଗୁହ୍ୟାକାଳୀ, ଭଦ୍ରକାଳୀ, ଶ୍ମଶାନକାଳୀ, ମହାକାଳୀ ଓ ଚାମୁଣ୍ଡାକାଳୀ । ଦେବୀ ଦୁର୍ଗାଙ୍କ ପୂଜା ବେଳେ ଚାମୁଣ୍ଡା ଦେବୀଙ୍କ ପୂଜାର ସ୍ୱାତନ୍ତ୍ରତା ଅଛି ।

ଦେବୀ ଦୁର୍ଗା ନିଜର ସୁରକ୍ଷା ଓ ସହଯୋଗ ପାଇଁ ଚଉଷଠି ଯୋଗିନୀ ସୃଷ୍ଟି କରିଥିଲେ । ସେମାନେ ସବୁ ଦୈତ୍ୟଙ୍କ ରକ୍ତ ତଳେ ପଡୁପଡୁ ଚାଟି ଦେଉଥିଲେ ଏବଂ ମୃତ ଦୈତ୍ୟକୁ ବୋହି ନେଇ ସ୍ଥାନ ପରିଷ୍କାର କରି ଦେଉଥିଲେ । ଏହି ଚଉଷଠି ଯୋଗିନୀ ଦେବୀଙ୍କର ଏକ ଏକ କଳାର ସୃଷ୍ଟି ହୋଇଅଛି । ସାରଳା ମହାଭାରତରେ ଯୋଗିନୀ ବିଷୟ ବର୍ଣ୍ଣନା ଅଛି । ଭୁବନେଶ୍ୱର ନିକଟ ହୀରାପୁରରେ ଚଉଷଠି ଯୋଗିନୀଙ୍କର ଏକ ଖୋଲା ଗୋଲାକାର ମନ୍ଦିର ଅଛି । ସ୍ମରଣ କରାଯାଇପାରେ ଯେ ବେଦରେ ପାଞ୍ଚ ପ୍ରକାର କେଶ ବିନ୍ୟାସ ଏବଂ ଦଶ ମହାବିଦ୍ୟା ଦେବୀମାନଙ୍କର ଛଅ ପ୍ରକାର କେଶ ବିନ୍ୟାସ ସ୍ଥଳେ ହୀରାପୁର ଚଉଷଠି ଯୋଗିନୀଙ୍କର ଚଉଷଠି ପ୍ରକାର କେଶ ସଜ୍ଜା ଦେଖିବାକୁ ମିଳେ ।

ପରିଶେଷରେ ଦେବୀ ଦୁର୍ଗାଙ୍କର ଅନେକ ରୂପ ଥିଲେ ହେଁ ତିନୋଟି ରୂପରେ ସେ ବିଶେଷ ରୂପେ ଖ୍ୟାତ । ତାହା ହେଲା ଗୌରୀ, ଲକ୍ଷ୍ମୀ ଏବଂ ସରସ୍ୱତୀ ।

କନକମୃଗ
କାରାଗାର ପଥ, ଖୋର୍ଦ୍ଧା

# ଦୁଷ୍ଟଙ୍କୁ କର ବିନାଶ

ଅଧ୍ୟାପକ ବିକ୍ରମ କେଶରୀ ବର୍ମା

ମାଆ ଜଗତ ଜନନୀ ଭବାନୀ
ନାରୀ ନୁହଁଇ ଅବଳା କରିଲ ପ୍ରମାଣ
ଶୁମ୍ଭ, ନିଶୁମ୍ଭ ଚଣ୍ଡମୁଣ୍ଡ ସହ
ପ୍ରତାପୀ ମହିଷାସୁର କରିଲ ନିଧନ ।

ଦେବଗଣ ହୋଇ ପରାଜିତ
ନେଲେ ବିଷ୍ଣୁଙ୍କ ଶରଣ
ବିଷ୍ଣୁ ଜାଣିଥିଲେ ନାରୀ ହାତେ
ହେବ ମହିଷା ନିଧନ ।

ବିଷ୍ଣୁଙ୍କ ମାୟାର ସୃଷ୍ଟି ହେଲେ
ଷୋଳଭୁଜା ଦୁର୍ଗାଦେବୀ ତୁମେ
ପ୍ରତିଷ୍ଠା କଲ ସ୍ୱର୍ଗରେ ଏକତା
ସବୁ ସୁରଗଣ କରିଲେ ଅର୍ପଣ



ନିଜ ନିଜ ଦିବ୍ୟ ଅସ୍ତ୍ରମାନ
ତୁମ କରେ ତୁମେ ହେଲ ଜଗତ୍‌ଜିତା ।

ଆଜି ମାତା ଦେଖ ଏ ଧରାରେ
ଶତ ଶତ ମହିଷା
ଶୁମ୍ଭ ନିଶୁମ୍ଭ
ଧ୍ୱଂସ ଲୀଳା କରନ୍ତି ଏଠାରେ ।

ସାଧୁସନ୍ଥ ପାଉଛନ୍ତି କଷ୍ଟ ପ୍ରବଳ
ଦୁଷ୍ଟ ଜନେ ହେଲେଣି ପ୍ରବଳ
ଏମାନଙ୍କୁ କର ନାଶ
ସନ୍ଥକୁ ପାଳ ଦୁଷ୍ଟ କରିଣ ବିନାଶ ।

ଭି.ଏ– ୩୬/୨, ୟୁନିଟ୍–୨, ଭୁବନେଶ୍ୱର




# ଶକ୍ତିତତ୍ତ୍ୱ ଓ ପରମ୍ପରା

ପଣ୍ଡିତ ଅକ୍ଷୟ କୁମାର ପତି

ସମଗ୍ର ବିଶାଳ ବ୍ରହ୍ମାଣ୍ଡର ମୂଳାଧାର ସୃଷ୍ଟି-ସ୍ଥିତି-ସଂହତିରୁ ହିଁ ପରିବ୍ୟାପ୍ତ । ଜ୍ଞାନ, ବିଜ୍ଞାନ, ସର୍ଜନା ଯେଉଁ ଦିଗନ୍ତକୁ ପର୍ଯ୍ୟାଲୋଚନା କଲେ ମଧ୍ୟ ଏହାର ମୂଳାଧାର ସେହି ସୃଷ୍ଟି, ସ୍ଥିତି, ସଂହତିରୁ ହିଁ ଅବଶ୍ୟମ୍ଭାବିକ୍ ।



ବ୍ୟାକରଣ ଶାସ୍ତ୍ର ଆଲୋଚନାରୁ ଯାହା ଜଣାଯାଏ ସୃଜ୍ + ତି = ସୃଷ୍ଟି ସେହିପରି ସ୍ଥା + ତି = ସ୍ଥିତି ଓ ସମ + ହନ୍ + ତି = ସଂହତିରୁ ବିତ୍‌ପତି ହୋଇଅଛି । ସୃଷ୍ଟି ନିର୍ମାଣ ଅର୍ଥରେ ସ୍ଥିତି ଅବସ୍ଥାନ ବା ସ୍ଥିରତା ଅର୍ଥରେ ଏବଂ ସଂହତି ସମୂହ, ନିବିଡ ସଂଯୋଗ ଅର୍ଥରେ ଗ୍ରହଣ କରାଯାଇଅଛି ।

'ପଦ୍ମିନୀ ପତ୍ର ଜଳବତ୍ ସଂସାରେ ସର୍ବମସ୍ଥିରଂ
କୀର୍ତ୍ତିରକ୍ଷର ସମ୍ବନ୍ଧା ସ୍ଥିରା ଭବତି ଭୂତଳେ '

ପଦ୍ମପତ୍ରରେ ଜଳର ସ୍ଥିତି ପରି ସଂସାରରେ ସମସ୍ତ ବସ୍ତୁ ଅସ୍ଥିର ଅଟନ୍ତି । କୀର୍ତ୍ତି ସମ୍ବନ୍ଧ ରକ୍ଷାକାରୀ ଅକ୍ଷର ସ୍ୱରୂପ ସଂସାରରେ ବିଦ୍ୟମାନ । ସୁତରାଂ ସଂସାରରେ ସମସ୍ତ ଅସ୍ଥିର ମଧ୍ୟରେ କୀର୍ତ୍ତି ଏକମାତ୍ର ସମ୍ବନ୍ଧ ରକ୍ଷାକାରୀ ଅକ୍ଷର ରୂପକ ସେତୁ ଅଟନ୍ତି ।

ଏ କୈବ ଶକ୍ତିଃ ପରମେଶ୍ୱରସ୍ୟ, କେବଳ ଗୋଟିଏ ଶକ୍ତି ପରମେଶ୍ୱର, ଯାହାକି, ବ୍ରହ୍ମାଣ୍ଡରେ ସତ୍ୟ-ଶିବ-ଧ୍ରୁବ ଅଟନ୍ତି । ସେହିପରି 'ଦେବ୍ୟାର୍ଥବ ଶୀଷମ୍'ରେ ଅହଂ ପଞ୍ଚଭୂତାନ୍ୟ ପଞ୍ଚଭୁତାନି । ଅହମଖିଳଂ ଜଗତ' ଚିନ୍ମୟୀ ଶକ୍ତି, ବ୍ରହ୍ମସ୍ୱରୂପିଣୀ ଦୁର୍ଗାଦେବୀ ସ୍ୱୟଂ ସ୍ୱୀକାର କରି ଅଛନ୍ତି ଯେ, ମୁଁ ପଞ୍ଚଭୂତ ଅର୍ଥାତ୍ ମହାଭୂତା ସ୍ୱରୂପା ଅଟେ । ଏହି ଚିରନ୍ତନ ବେଦୋକ୍ତି ପରମେଶ୍ୱର ଏବଂ ପରମେଶ୍ୱରୀଙ୍କ ସ୍ଥିତି ଭିନ୍ନ ଅନ୍ୟ କିଛି ନାହିଁ । ଅପାର କରୁଣାମୟୀ ଭଗବତୀ ଏବଂ ସତ୍ୟ ସୁନ୍ଦର ସଦାବସନ୍ତ ମଙ୍ଗଳଦାୟକ ଶିବଙ୍କ ଅପାର କରୁଣାରୁ ସମଗ୍ର ପୃଥିବୀ ସୃଷ୍ଟି, ସ୍ଥିତି, ସଂହତି ସୂତ୍ରରେ ଆବଦ୍ଧ ଅଟନ୍ତି । ଯେଉଁଠି ସୃଷ୍ଟି ନାହିଁ ସେଠାରେ ସ୍ଥିତି – ସଂହତି ନିରର୍ଥକ ମାତ୍ର । ସୁତରାଂ ସୃଷ୍ଟି – ସ୍ଥିତି – ସଂହତି ଗୋଟିଏ ରେଖାରେ ତିନୋଟି ବିନ୍ଦୁ ମାତ୍ର । ଅଖିଳ ବ୍ରହ୍ମାଣ୍ଡ ନାୟିକା ଭଗବତୀ ଏବଂ ଅଖିଳ ବ୍ରହ୍ମାଣ୍ଡ ନାୟକ ଭଗବାନ ଏକ ରୂପରୁ ଦ୍ୱୟ ରୂପରେ ପରିପ୍ରକାଶ ହେବା ପରେ ସୃଷ୍ଟି, ସର୍ଜନା ଦାମ୍ପତ୍ୟ ଦିବ୍ୟଚେତନାର ସ୍ଫୁରଣ ଘଟିଲା । ତହିଁରୁ ଉଦ୍‌ଭବ ନେଲା ଶବ୍ଦାର୍ଥମୟୀ- ସୃଷ୍ଟି, ବିଚାର, ବିବେଚନା, ଅଣିମା । ତ୍ରିଶକ୍ତିର ପ୍ରେରଣାରୁ ଗଢି ଉଠିଲା ଅଭିନବ ଧରାପୃଷ୍ଠ । ଗୁଣତ୍ରୟ ବିଭାଜନକୁ ଲକ୍ଷ୍ୟ କରି ସୃଷ୍ଟି ହେଲା ନାମକରଣ, ବ୍ରହ୍ମା – ବିଷ୍ଣୁ – ମହେଶ୍ୱର । ଦୁର୍ଗାଙ୍କର ତ୍ରିମୂର୍ତ୍ତି କାଳୀ – ତାରା – ତ୍ରିପୁରା । ଇଚ୍ଛା, ଜ୍ଞାନ ଓ କ୍ରିୟାରୂପ ଐଶ୍ୱରିକ ଶକ୍ତିତ୍ରୟ ମାତ୍ର । ବ୍ରହ୍ମା ସୃଷ୍ଟିକର୍ତ୍ତା, ବିଷ୍ଣୁ ପାଳନ କର୍ତ୍ତା ଏବଂ ମହେଶ୍ୱର ସଂହାରକର୍ତ୍ତା ଭାବେ ବିଭାଗିକୃତ ଦାୟିତ୍ୱ ଗ୍ରହଣ କଲେ । ଲୋକଲୋଚନକୁ ଏମାନଙ୍କୁ ବିଭାଗିକୃତ କରାଗଲା ସତ୍ୟ, କିନ୍ତୁ ବାସ୍ତବିକ୍ ଏମାନେ ଅଭିନ୍ନ, ଏକାତ୍ମାର ପ୍ରତୀକ ଅଟନ୍ତି । ସେହିପରି ପରମେଶ୍ୱର ଏବଂ ପରମେଶ୍ୱରୀ ଅଭିନ୍ନରୁ ଭିନ୍ନାଙ୍ଗ ପ୍ରତୀକ ହୋଇ ଜଗତପିତା- ଜଗତଜନନୀର ମାନ୍ୟତା ପ୍ରାପ୍ତ ହେଲେ । ଏମାନଙ୍କର କଥୋପକଥନର ନିଷ୍କର୍ଷରୁ ସୃଷ୍ଟି ହେଲା

ମୀମାଂସା ବା ତତ୍ତ୍ୱ ଶାସ୍ତ୍ର, ବେଦାନ୍ତସାର । ବେଦାନ୍ତସାର ସିଦ୍ଧାନ୍ତରୁ ଜନ୍ମ ନେଲା ତନ୍ତ୍ରଶାସ୍ତ୍ର । ଆଧୁନିକ ପଣ୍ଡିତମାନଙ୍କ ମତାନୁଯାୟୀ ତନ୍ତ୍ରଶାସ୍ତ୍ର– ଅଭିଜ୍ଞମାନଙ୍କ ଅଭିଜ୍ଞତା ସମ୍ବଳିତ ଚିନ୍ତାଧାରାର ପରିପ୍ରକାଶ ମାତ୍ର । କିନ୍ତୁ ପ୍ରାଚୀନ ପଣ୍ଡିତମାନଙ୍କ ମତାନୁଯାୟୀ ତନ୍ତ୍ରଶାସ୍ତ୍ର ଅପୌରୁଷେୟ ଅଟେ । ବେଦ ସୃଷ୍ଟି ପୂର୍ବରୁ ତନ୍ତ୍ର ସ୍ୱୟଂ ଶିବଙ୍କ ମୁଖରୁ ଉଚ୍ଚାରିତ ହୋଇଥିବାର ଭୂୟସୀ ପ୍ରମାଣ ମିଳେ । ସୁତରାଂ ଦେବ ଦେବ ମହାଦେବ ଶଙ୍କର ହିଁ ସ୍ୱୟଂ ଶବ୍ଦବ୍ରହ୍ମ ଅଟନ୍ତି । ସମଗ୍ର ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ ଲାଭ କରିଥିବାରୁ ତାହାଙ୍କୁ ଦେବଦେବ ମହାଦେବ କୁହାଯାଏ । ତାଙ୍କର ଡମ୍ବରୁ ଧ୍ୱନିରୁ ଶବ୍ଦର ପରିପ୍ରକାଶ ଘଟିଥିଲା । ପାଣିନି ବ୍ୟାକରଣ ମଧ୍ୟ ଏହାର ଜ୍ୱଳନ୍ତ ପ୍ରମାଣ ଅଟେ ।

ଆଗମସ୍ୟ ଭବାନକର୍ତ୍ତା ବେଦକର୍ତ୍ତା ହରିଃସ୍ୱୟମ୍
ଆଦାୟଦାମ କର୍ତ୍ତୃତ୍ୱେ ଭବାନ ବୈ ବିନିଯୋଜିତଃ
ପଶ୍ଚାଦ୍ୱେ ବେଦକର୍ତ୍ତୃତ୍ୱେ ହରିଃ ସମ୍ୟକ୍ ନିୟୋଜିତଃ

(ନିରୁତ୍ତର ତନ୍ତ୍ର)

ସ୍ୱୟଂ ଶିବ ଆଗମ (ତନ୍ତ୍ରର)କର୍ତ୍ତା ଅଟନ୍ତି । ପରେ ହରି ବେଦକର୍ତ୍ତା ଅଟନ୍ତି । ସୁତରାଂ ଏହିସବୁ ଶାସ୍ତ୍ର ଅନୁସାରେ ଆଗମ ତନ୍ତ୍ରକର୍ତ୍ତା ସ୍ୱୟଂ ଶିବ ଅଟନ୍ତି । ଯେହେତୁ ଶିବ ସ୍ୱୟଂ ତନ୍ତ୍ରକର୍ତ୍ତା ଅଟନ୍ତିଏବଂ ବେଦ କର୍ତ୍ତୃତ୍ୱେ ହରି ପରେ ନିୟୋଜିତ ହୋଇ ଅଛନ୍ତି । ଏଣୁ ତନ୍ତ୍ର ଅପୌରୁଷେୟ ଅଟେ । ତନ୍ତ୍ରଶାସ୍ତ୍ରକୁ ପ୍ରାଚୀନତା ଏବଂ ବ୍ୟବହାରିକ ବିଧି ଦୃଷ୍ଟିରୁ ତିନି ଭାଗରେ ବିଭକ୍ତ କରାଯାଇଅଛି । ଯଥା: ୧– ଆଗମ ୨ – ଯାମଳ ୩ – ତନ୍ତ୍ର । ଆଗମ ଶାସ୍ତ୍ର ତିନି ଭାଗରେ ବିଭକ୍ତିକୃତ ହେଲା । ଯଥା– ୧– ଶାକ୍ତାଗମ ୨–ବୈଷ୍ଣବାଗମ ୩ – ଶୈବାଗମ । କଳ୍ପ ଚାରି ଭାଗରେ ବିଭକ୍ତ ହେଲା ଯଥା: ୧– ଆଗମ,୨ –ଡାମର,୩ – ଯାମଳ,୪–ତନ୍ତ୍ର । ସାରଦାଗମ ପ୍ରଭୃତି ଆଗମକୁ ମୂଳତନ୍ତ୍ର କୁହାଗଲା । ଏତଦ୍ ଭିନ୍ନ ଉପତନ୍ତ୍ର ଅନେକ ଥିବାର ଯଣାଯାଏ ।

ଆଗମ ତନ୍ତ୍ରକୁ ୩ ଭାଗ କରାଯାଇ ଶାକ୍ତାଗମ, ବୈଷ୍ଣବାଗମ ଓ ଶୈବାଗମ କରାଗଲା ।

ନିର୍ଗତଂ ଶିବବକ୍ତ୍ରୋଭୌ ଗତଶ୍ଚ ଗିରିଜାନନମ୍
ମତଃ ଶ୍ରୀବାସୁଦେବସ୍ୟ ତସ୍ମାନ୍ନିଗମ ଉଚ୍ୟତେ ।

(ଯାମଳ)

ଯଥା– 'ଆଗତ ଶିବ ବକ୍ତ୍ରେ ଭ୍ୟୋ' ଅନୁସାରେ ଆଗମ ଏବଂ ନିଗମ ଦୁଇଟି ଶାସ୍ତ୍ର ଶିବ ଏବଂ ଗିରିଜାଙ୍କ ସମନ୍ୱିତ ବିଚାର ଧାରାର ପରିଣତି ଅଟେ ଏବଂ ଭଗବାନ ବିଷ୍ଣୁ ଏହାକୁ ସମ୍ମତି ଦେଇଅଛନ୍ତି । ଆଗମ ଶାସ୍ତ୍ରର ବିସ୍ତାର ପାରମ୍ପରିକ ଜ୍ଞାନ ପ୍ରଦାନରୁ ହୋଇଅଛି । ସର୍ବ ପ୍ରଥମେ ବାସୁଦେବ ନିଗମ – ଆଗମକୁ ଜ୍ଞାନ ସ୍ୱରୂପ ରୂପ ଦେଲେ । ତତ୍ପରେ ଗଣେଶଙ୍କୁ ଶୁଣାଇଲେ ଏବଂ ତତ୍ପରେ ଗଣେଶ ନନ୍ଦିଶ୍ୱରଙ୍କୁ ବ୍ୟକ୍ତ କଲେ । ଏହି ପ୍ରକାର କ୍ରମଶଃ ନିଗମଶାସ୍ତ୍ର ଭୂତଳକୁ ଆସିଥିଲା । ସୁତରାଂ ଏହାହିଁ ନିରୁତ୍ତର ତନ୍ତ୍ର ଏବଂ ରୁଦ୍ରଯାମଳ ଉଭୟ ଶାସ୍ତ୍ରର ମୀମାଂସା ଅଟେ । ରୁଦ୍ରଯାମଳ ଆଜ୍ଞାବସ୍ତୁ ସମନ୍ତାଚ୍ଚ ଗମ୍ୟତ୍ ଇତ୍ୟାଗମୌ ମତଃ । ଏହି ତାନ୍ତ୍ରିକ ପରିଭାଷା ଅନୁସାରେ ଶିବଙ୍କ ମୁଖରୁ ଆଗତ ହୋଇ ଗିରିଜାଙ୍କ ମୁଖାଗତ ହୋଇ ବିଷ୍ଣୁଙ୍କ ଦ୍ୱାରା ସମ୍ମତି ପ୍ରାପ୍ତ ହୋଇ ଥିବାରୁ ତାହାକୁ ଆଗମତନ୍ତ୍ର କୁହାଯାଉଅଛି । ତେବେ ପ୍ରବନ୍ଧର କଳେବର ବୃଦ୍ଧି ଲକ୍ଷ୍ୟ କରାଯାଇ ତନ୍ତ୍ର କଥାବସ୍ତୁରୁ ଶକ୍ତିତତ୍ତ୍ୱ ଦୁର୍ଗାପୂଜା ସଂପର୍କରେ ଆଲୋଚନା କରିବା । ଶକ୍ତିତତ୍ତ୍ୱ ଏକ ଦୂରୁହ ତତ୍ତ୍ୱ । ଯେଉଁ ରହସ୍ୟର ଆଦିଅନ୍ତ ନାହିଁ, ତାହାର ତତ୍ତ୍ୱ ବର୍ଣ୍ଣନା କରିବା ଏକ ଧୃଷ୍ଟତା ମାତ୍ର । ତେବେ ସ୍ୱୟଂ ପରମେଶ୍ୱରୀ ହିଁ ସେହି ଜ୍ଞାନର ଅଧିକାରିଣୀ ଅଟନ୍ତି । ଶକ୍ତିତତ୍ତ୍ୱ କହିଲେ ସ୍ୱୟଂ ଅଯୋନିସଂମ୍ଭୁତା ଦୁର୍ଗା ହିଁ ସ୍ରଷ୍ଟା, ଦ୍ରଷ୍ଟା, ଜ୍ଞାତା, ଜ୍ଞେୟ ଏବଂ ସର୍ବ ସତ୍ତ୍ୱ ଅଧିକାରିଣୀ ଅଟନ୍ତି । ସେ ଏକାଧାରରେ ସ୍ୱୟଂ ସାକ୍ଷ– ଲକ୍ଷ୍ୟ– ପ୍ରତ୍ୟକ୍ଷ ଅଟନ୍ତି । ଶକ୍ତି ସଂପର୍କରେ ଚିନ୍ତା କଲେ ଶ୍ରୀଦୁର୍ଗା ସପ୍ତଶତୀ ୧୧ଶ ଅଧ୍ୟାୟ ଶ୍ଳୋକ ସ୍ୱତଃ ଜାଗରିତ ହୋଇ ଉଠେ ଯଥା–

ତ୍ୱଂ ବୈଷ୍ଣବୀ ଶକ୍ତି ରନନ୍ତବୀର୍ଯ୍ୟ
ବିଶ୍ୱସ୍ୟ ବୀଜଂ ପରମାସିମାୟା
ସମ୍ମୋହିତଂ ଦେବୀ ସମସ୍ତମେତଦ୍
ତ୍ୱଂ ବୈ ପ୍ରସନ୍ନାଭୁବି ମୁକ୍ତି ହେତୁଃ
ବିଦ୍ୟାଃ ସମସ୍ତା ସ୍ତବଦେବୀ ଭେଦାଃ
ସ୍ତ୍ରୀୟଃ ସମସ୍ତାଃ ସକଳ ଜଗସ୍ତୁ
ତ୍ୱୟୈକୟା ପୂରିତମମ୍ବୟୈତଦ୍
କାତେ ସ୍ତୁତିଃସ୍ତବ୍ୟପରାପରୋକ୍ତିଃ

ଅର୍ଥାତ୍ ହେ ଦେବୀ– ଆପଣ ସ୍ୱୟଂ ସମଗ୍ର ବିଶ୍ୱକୁ ସମୋହିତ କରି ରଖିଥିବା ଅନନ୍ତବୀର୍ଯ୍ୟ ବୈଷ୍ଣବୀ ଶକ୍ତି ଭାବରେ ବିଦ୍ୟମାନ । ଆହୁରି ମଧ୍ୟ ଆପଣ ପ୍ରସନ୍ନା ହେଲେ ଶରଣାଗତ ଭକ୍ତଙ୍କୁ ଭବସାଗରରୁ ଅଚିରେ ମୁକ୍ତି ପ୍ରଦାନ କରି ପାରନ୍ତି । ସୁତରାଂ ଆପଣ ମାୟା ଶକ୍ତିର ଗନ୍ତାଗାର ହେତୁ କାରଣଭୂତା ପରାଶକ୍ତି ଅଟନ୍ତି । ଆପଣ ସମସ୍ତ ପ୍ରକାର ବିଦ୍ୟାକୁ ଭେଦ କରିଅଛନ୍ତି । ଅଷ୍ଟାଦଶ ମହାବିଦ୍ୟା (ବିଜ୍ଞାନ)ର ଅଂଶ ବିଶେଷ ଅଟନ୍ତି । ଚତୁଷଷ୍ଠି କଳା ଯୁକ୍ତା ପତିବ୍ରତା ସୌନ୍ଦର୍ଯ୍ୟ ଶୋଭାଯୁକ୍ତା ତରୁଣ ଗୁଣାନ୍ୱିତା





ମାନବୀମାନେ ମଧ୍ୟ ଆପଣଙ୍କ ବିଗ୍ରହରୂପା ଅଟନ୍ତି । ସୁତରାଂ ଅଙ୍ଗାନି ଦେବାଶ୍ଚତ୍ୱାରୋ ମୀମାଂସା ନ୍ୟାୟ ବିସ୍ତାରାଃ ।

ଧର୍ମଶାସ୍ତ୍ରାଂ ପୁରାଣାଦି ବିଦ୍ୟାହେତାଶ୍ଚତୁର୍ଦ୍ଦଶ
ଅର୍ଥ ଶାସ୍ତ୍ର ଚତୁର୍ଥଂ ଚ ବିଦ୍ୟାହ୍ୟଷ୍ଟା ଦଶୈକ ତାଃ

ଅର୍ଥାତ୍ ବେଦର ଛଅଟି ଅଙ୍ଗ ବିଶେଷ, ୧– ଶିକ୍ଷା, ୨– କଳ୍ପ, ୩– ବ୍ୟାକରଣ, ୪– ନିରୋକ୍ତ, ୫– ଛନ୍ଦ ଏବଂ ଜ୍ୟୋତିଷ ଏବଂ ଋକ୍, ଯଜୁ, ସାମ, ଅଥର୍ବ ଚାରିବେଦ ଏ ରୂପ ୧୦ଟି ତତ୍ତ୍ୱ ସମ୍ବଳିତ ଶାସ୍ତ୍ର ଏବଂ ୧– ଧର୍ମଶାସ୍ତ୍ର, ୨– ମୀମାଂସା, ୩– ନ୍ୟାୟଶାସ୍ତ୍ର, ୪– ପୁରାଣ, ୫– ଆୟୁର୍ବେଦ, ୬– ଧନୁର୍ବେଦ, ୭– ଗାନ୍ଧର୍ବବେଦ ଏବଂ ୮– ଅର୍ଥଶାସ୍ତ୍ର ମୋଟ ଅଷ୍ଟାଦଶ ବିଦ୍ୟାର ଅଧିକାରିଣୀ ଅଟନ୍ତି । ଯେହେତୁ ଆପଣ ତ୍ରିଜଗତର ଅନ୍ତର ବାହାର ସମସ୍ତ ଚରାଚର ପରିବ୍ୟାପ୍ତ, ତେଣୁ ସ୍ୱୟଂ ଭକ୍ତିରୂପିଣୀ ହୋଇ ଥିବାରୁ ଆପଣଙ୍କୁ ଆଉ କ'ଣ ସ୍ତବ କରାଯାଇ ପାରିବ । ସୁତରାଂ ଆପଣଙ୍କୁ ଏହିମାତ୍ର ଗୋଟିଏ ସ୍ତୁତି କରାଯାଇପାରେ ଯାହାକି ଶ୍ରୀଚଣ୍ଡୀର ଦ୍ୱାଦଶ ଅଧ୍ୟାୟ ସମ୍ବଳିତ–

ସୈବ କାଳେ ମହାମାରୀ ସୈବ ସୃଷ୍ଟି ଭବତ୍ୟଜା
ସ୍ଥିତିଂ କରୋତି ଭୂତାନାଂ ସୈବକାଳେ ସନାତନୀ

ଅର୍ଥାତ, ତତ୍ତ୍ୱାର୍ଥ ଏହି ଯେ – ଆପଣ' ହେ ସନାତନୀ– ଆପଣ ସୃଷ୍ଟି ସମୟରେ ସୃଷ୍ଟି ଶକ୍ତି ଭାବରେ ବ୍ରହ୍ମାସ୍ୱରୂପା, ସ୍ଥିତି ସମୟରେ ସ୍ଥିତି ଶକ୍ତି ରୂପରେ ବିଷ୍ଣୁ ସ୍ୱରୂପା ହୋଇ ପାଳନ କରନ୍ତି ଏବଂ ପ୍ରଳୟ କାଳରେ ଭୀମଗମ୍ଭୀର ଭାବରେ ସଂହାର ଶକ୍ତି ଶିବଙ୍କ ରୂପ ଧାରଣ କରି ସଂହାର କରନ୍ତି । ଏଣୁ ଆପଣଙ୍କ ତତ୍ତ୍ୱ ଅଧିକ କ'ଣ ବର୍ଣ୍ଣନା କରାଯାଇପାରେ । ସାଧାରଣ ଅର୍ଥରେ ଶକ୍ତି ଶବ୍ଦର ଅର୍ଥ ବଳ ବା ସାମର୍ଥ ହୋଇପାରେ ସୁତରାଂ ଆଧାର ଅଧେୟ ରୂପରେ ଶକ୍ତି ସର୍ବତ୍ର ବିଦ୍ୟମାନ, ଯଥା– ଅଗ୍ନିର ଦାହିକାଶକ୍ତି, ବାୟୁର ବାହିକାଶକ୍ତି, ସବିତାଙ୍କର ପ୍ରଭାଶକ୍ତି, ଚନ୍ଦ୍ରଙ୍କର ଶୋଭାଶକ୍ତି ଏବଂ ବିଜ୍ଞ, ପ୍ରାଜ୍ଞ, ବ୍ୟକ୍ତିମାନଙ୍କର ପ୍ରଜ୍ଞାଶକ୍ତି ଭାବରେ ବିଦ୍ୟମାନ । କିନ୍ତୁ ଶକ୍ତିସ୍ୱରୂପିଙ୍କ ଶକ୍ତି ଏ ସମସ୍ତ ଶକ୍ତିର ଉର୍ଦ୍ଧ୍ୱରେ ବିଦ୍ୟମାନ । ତନ୍ତ୍ର ମହାଶକ୍ତି ସଂପର୍କରେ ଆଲୋଚନା କଲେ ଆପଣଙ୍କୁ ବିମଳା, ବିରଜା, ଭଗବତୀ, ଭଦ୍ରକାଳୀଙ୍କ ଶକ୍ତି ରୂପିଣୀ କୁହାଯାଇପାରେ । ବର୍ତ୍ତମାନ ଦୁର୍ଗାଙ୍କ ପ୍ରତିମୂର୍ତ୍ତିକୁ ପର୍ଯ୍ୟାଲୋଚନା କରାଯାଉ । ଦୁର୍ଗା – ଶବ୍ଦର ଅର୍ଥ ଦେବତାମାନଙ୍କର ଦୁର୍ଗତି ସମୟରେ ଯେଉଁ ମହାଶକ୍ତିଙ୍କର ଅଭ୍ୟୁଦୟ ଘଟିଥିଲା । ଦୁଃ ଶବ୍ଦର ଅର୍ଥ ଅଶୁଭ ବା ଅମଙ୍ଗଳ । ମହିଷ ଆଳସ୍ୟର ପ୍ରତୀକ ଅଟନ୍ତି । ଅଭିଧାନିକ ଅର୍ଥ– ମହିଷ ଶବ୍ଦର ଅର୍ଥ ବ୍ୟଭିଚାର ଅଟେ । ଅସୁର ଶବ୍ଦରେ 'ଅସୁ ଅର୍ଥ ସ୍ୱାର୍ଥ' ର ରକ୍ଷଣକାରୀ । ସୁତରାଂ ଅସୁର ଅର୍ଥ ସ୍ୱାର୍ଥଲିପ୍ସୁ ଅଟେ । ସୁତରାଂ ମହାମହିମ ଦୁର୍ଗାଦେବୀ ଦେବତାମାନଙ୍କ ଦୁର୍ଗତି କାଳରେ ଆବିର୍ଭୁତ ହୋଇଥିବାରୁ ବ୍ୟଭିଚାର ଏବଂ ଅତ୍ୟଧିକ ସ୍ୱାର୍ଥଲିପ୍ସୁ ଅସୁରଙ୍କୁ ସଂହାର କରୁଅଛନ୍ତି । ସେହିପରି ଗିରିରାଜ ହିମାଳୟ ପ୍ରଦତ୍ତ ଧର୍ମ ପୁରୁଷ ସ୍ୱରୂପ ବାହାନ ସିଂହଙ୍କ ପୃଷ୍ଠାରେ ଆକ୍ରମଣାତ୍ମକ ରୂପରେ ଦଣ୍ଡାୟମାନ ଅଛନ୍ତି ।

ଏଠାରେ ଦୁଇଟି ପୌରାଣିକ ତଥ୍ୟର ସଂଧାନ ମିଳେ । ଗୋଟିଏ ବରାହ ପୁରାଣମତ ଏବଂ ଅନ୍ୟ ଦେବୀ ଭାଗବତ କାଳିକା ପୁରାଣରୁ ଉଦ୍ଧୃତ । ବରାହ ପୁରାଣ– ଏକଦା ବିପ୍ରଚିତ୍ତ ଦୈତ୍ୟଙ୍କ ପତ୍ନୀ ମହିଷ୍ମତୀ, ସିନ୍ଧୁଦୀପ ନାମକ ତପସ୍ୟାରତ ଋଷିଙ୍କୁ ମହିଷ ବେଶରେ ଭୟଭୀତ କରାଇଥିଲେ । ଏଣୁ ଋଷି ଅଭିଶାପ ଦେଲେ ଯେ ତୁମେ 'ମହିଷ' ହୁଅ । ଏଣୁ ମହିଷ୍ମତୀଙ୍କ ଗର୍ଭରୁ ମହିଷାସୁରଙ୍କର ଜନ୍ମ ଅଟେ । କାଳିକା ପୁରାଣ ମତରେ ମହିଷାସୁର ରମ୍ଭାସୁରଙ୍କ ପୁତ୍ର ଅଟନ୍ତି । ସେ ଶିବଙ୍କ ଅଂଶରେ ଜନ୍ମ ରମ୍ଭାସୁରଙ୍କ ତପସ୍ୟାରେ ପ୍ରସନ୍ନ ହୋଇ ସଦାଶିବ ଅମର ପୁତ୍ର ଲାଭ ପାଇଁ ବର ପ୍ରଦାନ କରିଥିଲେ । ମହିଷାସୁର ତପସ୍ୟା ଦ୍ୱାରା ଦେବୀଙ୍କ ନିକଟରେ ସାୟୁଜ୍ୟ ବର ପ୍ରାର୍ଥନା କରିଥିଲେ । ଦେବୀ ଭାଗବତ ଅନୁସାରେ ଦନୁଙ୍କର ଦୁଇ ପୁତ୍ର ରମ୍ଭ ଏବଂ କରମ୍ଭ କଠୋର ତପସ୍ୟା କରିଥିଲେ । କରମ୍ଭାସୁର ନଦୀ ଜଳରେ ଦଣ୍ଡାୟମାନ ତପସ୍ୟା ଅବସ୍ଥାରେ ଥିବାବେଳେ ଇନ୍ଦ୍ର କୁମ୍ଭୀର ରୂପରେ ତାହାଙ୍କୁ ହତ୍ୟା କରିଥିଲେ । ରମ୍ଭାସୁର ବ୍ରହ୍ମାଙ୍କୁ କଠୋର ତପସ୍ୟା ବଳରେ ପ୍ରସନ୍ନ କରାଇ ଅମର ବରପ୍ରାପ୍ତ ହେଲେ । ସେ ତପସ୍ୟା ସଫଳ ପରେ ଘରକୁ ଫେରିବା ବାଟରେ ମହିଷାଙ୍କୁ ବିବାହ କରିଥିଲେ । କିଛି ଦୂର ଅତିକ୍ରମ କଲା ପରେ ନବଦମ୍ପତି ଅନ୍ୟ ଗୋଟିଏ ଅସୁର ଦ୍ୱାରା ଆକ୍ରାନ୍ତ ହୋଇ ରମ୍ଭ ନିହତ ହୋଇଥିଲେ । ରମ୍ଭ ପତ୍ନୀ ମହିଷଙ୍କ ଗର୍ଭରୁ ମହିଷାସୁର ଜନ୍ମ ନେଇଥିଲା। ମହିଷାସୁର ମଧ୍ୟ ତପସ୍ୟା ଦ୍ୱାରା ବ୍ରହ୍ମାଙ୍କଠାରୁ ଅମର ବରପ୍ରାପ୍ତ ହୋଇଥିଲେ । ତେବେ କଥାବସ୍ତୁ ସତ୍ୟତା ଯାହା ଥାଉନା କାହିଁକି ବ୍ୟଭିଚାର ଏବଂ ସ୍ୱାର୍ଥଲିପ୍ସୁ ରାକ୍ଷସ ଦଳନ ଏବଂ ଦେବତାମାନଙ୍କୁ ଶାନ୍ତି ପ୍ରଦାନ ପାଇଁ ଏହି ପୂଜା ଉଦ୍ଦିଷ୍ଟ ଅଟେ ।

ନହି ଦୁର୍ଗା ସମାପୂଜା ନହି ଦୁର୍ଗା – ସମଂଫଳମ୍
ନହି ଦୁର୍ଗା– ସମଂଜ୍ଞାନଂ ନହି ଦୁର୍ଗା ସମଂତପ

ଦୁର୍ଗା ପୂଜା ତୁଲ୍ୟ ପୂଜା ନାହିଁ । ଦୁର୍ଗା ପୂଜା ଦ୍ୱାରା ଯେଉଁ ଫଳପ୍ରାପ୍ତ ହୁଏ ତହିଁ ଅଧିକ ଫଳ ଅନ୍ୟ କୌଣସି ପୂଜାରେ ପ୍ରାପ୍ତହୁଏ

ନାହିଁ । ଦୁର୍ଗାଜ୍ଞାନଠାରୁ ବଳିଜ୍ଞାନ ଭାରତବର୍ଷରେ ଉପଲବ୍ଧ ନୁହେଁ। ସେହିପରି ତପସ୍ୟା କ୍ଷେତ୍ରରେ ମଧ୍ୟ ଦୁର୍ଗା ଶ୍ରେଷ୍ଠ ଫଳ ପ୍ରଦାନ କରିଥାନ୍ତି । ସୁତରାଂ ଧର୍ମ, ଭକ୍ତି, ଜ୍ଞାନ, ତ୍ରିବିଧ ମନ୍ଦାକିନୀ ପ୍ରବାହିତ ତପୋବନରେ ଦୁର୍ଗା ହିଁ ଏକମାତ୍ର ବାଞ୍ଛା କଳ୍ପତରୁ ଅଟନ୍ତି । ସଂସ୍କୃତି –ସଭ୍ୟତା– ତତ୍ତ୍ୱାନ୍ୱେଷଣ, ଶାନ୍ତି, ପ୍ରତିଷ୍ଠା ଯେକୌଣସି ଦୃଷ୍ଟି ଭଙ୍ଗୀରେ ବିଶ୍ଳେଷଣ କରି ଦେଖିଲେ ମା'ଦୁର୍ଗାଙ୍କ ସ୍ଥାନ ଚରମ ସୀମା ସ୍ପର୍ଶ କରି ପାରିଛି । ସୁତରାଂ ଦୁର୍ଗା ପୂଜାକୁ ସାର୍ବଜନୀନ ପୂଜା ନାମରେ ନାମିତ କରାଯାଇଅଛି । ହିନ୍ଦୁ ଶାସ୍ତ୍ରାନୁମୋଦିତ ସମସ୍ତ ଦେବାଦେବୀ, ଅବତାରୀ, ଯୋନିଜନ୍ମା ହୋଇଥିବା ସ୍ଥଳେ ଏକମାତ୍ର ଦେବୀ ଦୁର୍ଗା ଅଯୋନିସମ୍ଭୂତା ଅଟନ୍ତି । ସର୍ବଶେଷରେ ବିଶ୍ୱକଲ୍ୟାଣ ସଦ୍‌ଜନମାନସର ସୁସ୍ଥ ନିର୍ମଳ ସମାଜ ପ୍ରତିଷ୍ଠା ପାଇଁ ସମୃଦ୍ଧ ପୀୟୁଷ ପସରା ମେଲାଇ ଜଗତକୁ ସର୍ବାନନ୍ଦମୟ କରାନ୍ତୁ । ଆଗାମୀ ଯୁଗର ଦ୍ରଷ୍ଟା ଭାବେ ଭଗବତୀଙ୍କ ଚରଣକମଳରେ ଆକୁଳ ନିବେଦନ । ଦେବୀ ପ୍ରସନ୍ନାର୍ତ୍ତି ହରେ ପ୍ରସୀଦ ପ୍ରସୀଦ ମାତର୍ଜଗତୋଽଖିଳସ୍ୟ ପ୍ରସୀଦ ବିଶ୍ୱେଶ୍ୱରି ପାହି ବିଶ୍ୱଂ ତ୍ୱମୀଶ୍ୱରୀ ଦେବୀ ଚରାଚରସ୍ୟ

**ଗବେଷଣା ପୁସ୍ତକ–** ୧ – ନୀଳତନ୍ତ୍ରମ୍, ୨ – ମୁଣ୍ଡମାଳା ତନ୍ତ୍ରମ୍, ୩– ସପ୍ତଶତୀ ଚଣ୍ଡୀ, ୪– ଦୁର୍ଗାର୍ଚ୍ଚନା ପଦ୍ଧତି, ୫– ରୁଦ୍ରଯାମଳ, ୬– ନିରୁତ୍ତର ତନ୍ତ୍ରମ୍, ୭– ବାରାହୀ ତନ୍ତ୍ରମ୍, ୮– ସାରଦା ତିଳକମ୍, ୯– ଶବ୍ଦତତ୍ତ୍ୱବୋଧ, ୧୦– ଆଧୁନିକ ଓଡ଼ିଆ ବ୍ୟାକରଣ, ୧୧– ସର୍ବସାର ବ୍ୟାକରଣ ।

ମାତୃମନ୍ଦିର, ସରପୁର
ଭଦ୍ରକ–୭୫୬୧୧୬

# ବଡ ଠାକୁର

ମୁକ୍ତିଲତା ଆଇଚ୍

ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ତୁମେ
ତୁମେ ତ ଜଗତ ସାଇଁ
ଜଗନ୍ନାଥ ନାମେ ଉଡାଇଛ ବାନା
ନୀଳାଚଳ ଧାମେ ଥାଇ ।

ଷାଠିଏ ପଉଟି ଅନ୍ନ ରନ୍ଧାହୁଏ
ତୋହ ଭୁଞ୍ଜିବାର ପାଇଁ
ବଡ ଦେଉଳର ରତ୍ନ ସିଂହାସନେ
ବିଜେ କରିଅଛୁ ତୁହି ।

ବାରମାସେ ତେର ଯାତରା ଲାଗିଛି
ଭକତଙ୍କର ଗହଳି
ପଣ୍ଡା, ପଢ଼ିହାରୀ ଛତିଶା ନିଯୋଗ
ହେଉଥାନ୍ତି ନିଉଛାଣି ।

ଭକତଙ୍କ ଲାଗି ଶ୍ରୀମନ୍ଦିର ତେଜି
ରଥେ ବିଜେ କରୁ ତୁହି
ସେ ଶୋଭା ସୁନ୍ଦର ବେଶ ମନୋହର
ବର୍ଣ୍ଣିକି ପାରିବି ମୁହିଁ ।



ମହିମା ତୋହର ଅଟେ ଯେ ଅପାର
ତାହା କେ ପାରିବ କହି
ରଙ୍ଗ ଅଧରକୁ ଥରେ ଦେଲେ ଚାହିଁ
ସବୁ ଦୁଃଖ ଯାଏ ଧୋଇ ।

ନୀଳ ଇନ୍ଦିବର ନୟନ ଯୁଗଳ
ହୃଦରେ ଦୟଣା ଶୋଭେ
ବ୍ୟାକୁଳ ହୃଦୟେ ତୋତେ ସୁମରିଲେ
ନିରାଶ ନକରୁ କେବେ ।

ମାଗୁନି 'ମୁକତି' ମାଗେ ମୁଁ ଶକତି
ଜଗତର ସୁଖ ଲାଗି
ବ୍ୟାଧି, କ୍ଲେଶ ଭରା ଏ ଭବ ସାଗର
ସହଜେ ପାରିବି ଲଂଘି !

ଶିକ୍ଷୟିତ୍ରୀ
ଠାକୁରଗୋଡା ସରକାରୀ ଉଚ୍ଚ ବିଦ୍ୟାଳୟ
ଯଶୀପୁର, ମୟୂରଭଞ୍ଜ




# ପଣ୍ଡିତ ରଘୁନାଥ ପାଣିଗ୍ରାହୀ : ଏକ ଉଜ୍ଜ୍ୱଳ ପ୍ରତିଭା

ମୂଳ ଇଂରାଜୀ– ଭାସ୍କର ପରିଚ୍ଛା
ଅନୁବାଦ–ବିକ୍ରମ ମହାରଣା

'ଗୀତଗୋବିନ୍ଦ' ଆଣି ଦେଇଥିଲା ତାଙ୍କ ପାଇଁ ଅଶେଷ ଖ୍ୟାତି । ସେ ଯେତେବେଳେ ସୁଲଳିତ କଣ୍ଠରେ ଗୀତଗୋବିନ୍ଦର ପଦ୍ୟାବଳୀ ଆବୃତ୍ତି କରନ୍ତି, ତାହା ଉପସ୍ଥିତ ଶ୍ରୋତାମଣ୍ଡଳୀଙ୍କୁ ବିମୁଗ୍ଧ କରିଦେଇଥାଏ । ଏହି ସୁନାମଧନ୍ୟ କଣ୍ଠଶିଳ୍ପୀ ଆଉ କେହି ନୁହନ୍ତି, ସେ ହେଲେ ଦ୍ୱାଦଶ ଶତାବ୍ଦୀର କବି ଜୟଦେବଙ୍କ ଶାଶ୍ୱତ ପ୍ରେମର ଗୀତିକାବ୍ୟକୁ ବିଶ୍ୱ ବ୍ୟାପୀ ଆଦୃତି ଆଣି ଦେଇଥିବା ଏବଂ ଏହାର ପ୍ରଚାର ପ୍ରସାର ଦିଗରେ ନିଜକୁ ଉତ୍ସର୍ଗୀକୃତ କରିଥିବା, ସ୍ୱର୍ଗତ ପଣ୍ଡିତ ରଘୁନାଥ ପାଣିଗ୍ରାହୀ ।



ଏହା ସତ୍ୟ ଯେ, ପଣ୍ଡିତ ରଘୁନାଥଙ୍କ ବିୟୋଗରେ ଭାରତୀୟ ଶାସ୍ତ୍ରୀୟ ସଂଗୀତ ଜଗତ ଜଣେ କୃତବିଦ୍ୟଙ୍କୁ ହରାଇଛି । ଏଥିସହିତ ତାଙ୍କର ଅବର୍ତ୍ତମାନରେ ବିଶ୍ୱର ପାରମ୍ପରିକ ସଂସ୍କୃତ ସଂଗୀତ ଜଗତ ମଧ୍ୟ ଜଣେ ଯୋଗଜନ୍ମାଙ୍କ ଅନୁପସ୍ଥିତି ଅନୁଭବ କରୁଛି । ପଣ୍ଡିତ ରଘୁନାଥଙ୍କ ମୃତ୍ୟୁ ପରେ ତାଙ୍କ ଦ୍ୱାରା ଗାନ କରାଯାଇଥିବା ଗୀତଗୋବିନ୍ଦର ଏପରି ସୁଲଳିତ ସ୍ୱର ବୋଧେ ଆଉ ଶୁଣାଯିବ ନାହିଁ ।

ଦକ୍ଷିଣ ଓଡିଶାର କୋରାପୁଟ ଜିଲ୍ଲା ବଂଶଧାରା ନଦୀ କୂଳରେ ଅବସ୍ଥିତ ଏକ ଛୋଟ ସହର ଗୁଣୁପୁରଠାରେ ରଘୁନାଥ ପାଣିଗ୍ରାହୀଙ୍କ ଜନ୍ମ । ନିଜର ପିତା ତଥା ଶାସ୍ତ୍ରୀୟ କଣ୍ଠଶିଳ୍ପୀ ନୀଳମଣି ପାଣିଗ୍ରାହୀଙ୍କଠାରୁ ସଂଗୀତ କଳା ସମ୍ପର୍କିତ ବିଦ୍ୟା ବଂଶାନୁଗୁଣ ସୂତ୍ରରେ ଆହରଣ କରି ରଘୁନାଥ ଅସାଧାରଣ ହୋଇପାରିଥିଲେ । ଗୀତଗୋବିନ୍ଦ ଆବୃତ୍ତିର ଏହି ଅନନ୍ୟ ଶୈଳୀ, ସେ ଆଉ କାହାଠାରୁ ନୁହେଁ, ବରଂ ନିଜ ପିତାଙ୍କଠାରୁ ଶିକ୍ଷା ଲାଭ କରିଥିଲେ । ପୁରୀ ଜଗନ୍ନାଥ ମନ୍ଦିରର ପରମ୍ପରା ଶୈଳୀରେ ଏହି ପଦ୍ୟାବଳୀର ବିବିଧ ସମର୍ପଣ/ପରିବେଷଣ ତାଙ୍କୁ ସ୍ୱତନ୍ତ୍ର ପରିଚୟ ଆଣି ଦେଇଥିଲା । ସେ ସମ୍ଭବତଃ ଏକମାତ୍ର କଣ୍ଠଶିଳ୍ପୀ, ଯିଏ କି ଗୀତଗୋବିନ୍ଦର ସମସ୍ତ ୨୪ ଗୋଟି ପଦ୍ୟାବଳୀ ବିଶେଷ ଶୈଳୀରେ ଗାନ କରି ପାରୁଥିଲେ । ରଘୁନାଥ ଜଣେ ବହୁମୁଖୀ ବ୍ୟକ୍ତିତ୍ୱର ଅଧିକାରୀ– ଏକାଧାରରେ ଶାସ୍ତ୍ରୀୟ କଣ୍ଠଶିଳ୍ପୀ, ସଂଯୋଜକ ଏବଂ ଓଡିଶୀ ସଂଗୀତଜ୍ଞ ଥିଲେ । ଦୀର୍ଘ ଛଅ ଦଶନ୍ଧି ଧରି ତାଙ୍କର ସାଧନାରତ ଜୀବନ ବେଶ୍ ଘଟଣାବହୁଳ, ପ୍ରେରଣାଦାୟୀ ଓ ମନମୋହକ ଥିଲା ।

ଏହି ସଂଗୀତ ସାଧକଙ୍କ ବହୁ ମୂଲ୍ୟ ଅବଦାନ କେବଳ ଓଡିଶାରେ ନୁହେଁ, ୧୯୫୦ ମସିହାର ଶେଷ ଭାଗରେ ଏହା ସୁଦୂର ଚେନ୍ନାଇରେ ମଧ୍ୟ ପରିଦୃଷ୍ଟ ହୋଇଥିଲା । ଚେନ୍ନାଇସ୍ଥିତ କୋଡମ୍ବକ୍କମ୍‌ର ପ୍ରସାଦ ଏବଂ ଭୌହିନି ରେକର୍ଡିଙ୍ଗ୍ ଷ୍ଟୁଡିଓରେ ଜଣେ ଗାୟକ ରୂପେ ପ୍ରଖ୍ୟାତ ଘଣ୍ଟଶାଳ ଓ ପି.ବି.ଶ୍ରୀନିବାସଙ୍କ ପରି ପ୍ରଥମେ ସୁଯୋଗ ଲାଭ କରିଥିଲେ । ଚେନ୍ନାଇର ଆଦ୍ୟାରରେ ଥିବା କଳାକ୍ଷେତ୍ରରେ ସେ ଓଡିଶୀ ଓ ଭାରତନାଟ୍ୟମ୍‌ର ନୃତ୍ୟାଙ୍ଗନା ସଂଯୁକ୍ତା ମିଶ୍ରଙ୍କୁ ଭେଟିଥିଲେ, ପରେ ତାଙ୍କୁ ଜୀବନ ସାଥୀ କରି ଓଡିଶୀ ନୃତ୍ୟ ଓ ସଂଗୀତକୁ ବହୁ ଦୂର ପର୍ଯ୍ୟନ୍ତ ଆଗେଇ ନେଇଥିଲେ ।




ଓଡ଼ିଶାର ଏହି ୨୧ ବର୍ଷୀୟ ଯୁବକ ଚେନ୍ନାଇରେ ତାଙ୍କର ପାଞ୍ଚ ବର୍ଷରୁ କମ୍ ସମୟର ଅବଧି ମଧ୍ୟରେ ଜଣେ ପ୍ରତିଭାବାନ୍ କଳାକାର ରୂପେ ନିଜକୁ ସାବ୍ୟସ୍ତ କରି ପାରିଥିଲେ । ୧୯୫୯ରେ ଶିବାଜୀ ଗଣେଶନ୍ ପାଣ୍ଡାରି ବାଇ ଅଭିନୀତ ତଥା କେ.ଜେ.ମହାଦେବନ୍ ନିର୍ଦ୍ଦେଶିତ ଏବଂ ଏସ୍.ରାଜେଶ୍ୱର ରାଓ ସଂଗୀତ ନିର୍ଦ୍ଦେଶିତ ଆଭାଲ୍ ୟାର୍‌ରେ ରଘୁନାଥ ପାଣିଗ୍ରାହୀଙ୍କ ଲୋକପ୍ରିୟ ଗୀତ 'ନାନ ଥେଡମ୍ ପୋଚ୍ଚୁ' ଓ 'କାନ କାନୁମ୍ ମିନ୍ନାଲ୍‌ଧାନୋ'କୁ ଆଜି ମଧ୍ୟ ପୁରୁଣା ତାମିଲ୍ ସଂଗୀତପ୍ରେମୀମାନେ ମନେ ରଖିଛନ୍ତି । ସମୟ ସ୍ରୋତରେ ଚଳଚ୍ଚିତ୍ରଟିର ବିଷୟବସ୍ତୁ ଯଦିଓ ଅନେକଙ୍କର ମନେ ନାହିଁ ତଥାପି ୟୁ ଟ୍ୟୁବ୍‌ରେ ଆଜି ମଧ୍ୟ ତାଙ୍କ ଦ୍ୱାରା ଗାନ କରାଯାଇଥିବା ଏହି ଶ୍ରୁତିମଧୁର ସଂଗୀତ ଅନେକ ଶ୍ରୋତାଙ୍କ ଧନ୍ୟବାଦ ସାଉଁଟି ପାରିଛି । ଏପରିକି ଆଜି ମଧ୍ୟ ତାଙ୍କର ସଂଗୀତଗୁଡ଼ିକ ତାମିଲ୍ ଶ୍ରୋତାମାନଙ୍କ ସ୍ମୃତିରେ ଶିହରଣ ସୃଷ୍ଟି କରୁଛି । ପାଣିଗ୍ରାହୀଙ୍କର ସୁମଧୁର ସ୍ୱର ପ୍ରକୃତରେ ରୋମାଣ୍ଟିକ୍ ଗୀତଗୁଡ଼ିକ ପାଇଁ ପ୍ରଯୁଜ୍ୟ ଅଟେ । ନିଜ ଗୀତଗୁଡ଼ିକରେ ସାମାନ୍ୟ ହିନ୍ଦୁସ୍ତାନୀର ଝଲକ ଦେଇ ସେ ଦକ୍ଷିଣ ଭାରତୀୟ ଶ୍ରୋତାମାନଙ୍କର ମନ ଜିଣି ପାରିଥିଲେ ।

ଯଦିଓ ସେ ତେଲୁଗୁ ସିନେମାରେ ତିନି ଚାରି ଗୋଟି ସଂଗୀତରେ କଣ୍ଠଦାନ କରିଛନ୍ତି ତଥାପି ସେ ତାମିଲ୍ ସିନେମା ଜଗତରେ ବେଶ୍ ଖ୍ୟାତନାମା ଥିଲେ । ୧୯୫୬ ମସିହାରେ ପୁରସ୍କାରପ୍ରାପ୍ତ ଏ.ନାଗେଶ୍ୱରାବ୍ ରାଓ ଏବଂ ଅଂଜଳି ଦେବୀଙ୍କ ଦ୍ୱାରା ଅଭିନୀତ ତଥା ଏଲ୍.ଭି.ପ୍ରସାଦ ପ୍ରଯୋଜିତ 'ଇଲାଭେଲ୍‌ପୁ'ରେ ସେ ନିଜେ ଏକାକୀ 'ୟେନ୍ନାଡୁ କନ୍ନାଲେଡୁ ଏଇ ଭିନ୍ତା ସୁନ୍ଦରିନି' ସଂଗୀତ ଗାନ କରିଥିଲେ । ସେହି ସମୟରେ ବିଶେଷ ଲୋକପ୍ରିୟତା ହାସଲ କରିଥିବା 'ଛଳନିରାଜା ଓ ଚନ୍ଦାମାମା' ସଂଗୀତରେ ପଣ୍ଡିତ ରଘୁନାଥ ପି.ସୁଶୀଳା ଏବଂ ପି. ଲୀଳାଙ୍କ ସହ ସଂଗୀତ ଗାନ କରିଥିଲେ । ୧୯୫୯ର ପ୍ରସିଦ୍ଧ 'ଜୟାଭେରୀ'ରେ 'ମାଦି ଶାରଦା ଦେବୀ ମନ୍ଦିରମ୍ମେ' ସଂଗୀତରେ ସୁନାମଧନ୍ୟ କଳାକାର ଘଣ୍ଟଶାଳା ଏବଂ ପି.ବି.ଶ୍ରୀନିବାସଙ୍କ ସହିତ ପଣ୍ଡିତ ରଘୁନାଥ କଣ୍ଠଦାନ କରିଛନ୍ତି । ଉକ୍ତ ଚଳଚ୍ଚିତ୍ରରେ ମଧ୍ୟ ସେ ଏକ ଛୋଟ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । 'ଇଲାଭେଲ୍‌ପୁ' ଚଳଚ୍ଚିତ୍ର ଡି.ଯୋଗାନନ୍ଦଙ୍କ ଦ୍ୱାରା ନିର୍ଦ୍ଦେଶିତ ଏବଂ ଖୁବ୍ ସଫଳତା ଲାଭ କରିଥିବା 'ଇଥିର୍‌ପାରାଥାଥୁ' ତାମିଲ୍ ଚଳଚ୍ଚିତ୍ରର ବିଷୟବସ୍ତୁ ଉପରେ ଆଧାରିତ । ପରବର୍ତ୍ତୀ ସମୟରେ (୧୯୫୭) ଏହା ମୀନାକୁମାରୀ ଓ ରାଜକାପୁର୍‌ଙ୍କ ଦ୍ୱାରା ଅଭିନୀତ 'ଶାରଦା' ନାମରେ ହିନ୍ଦୀରେ ରୂପାନ୍ତରିତ ହୋଇଥିଲା ।

ଜୟାଭେରୀ, ଅଭଲ୍ ୟାର୍ ଏବଂ ଇଲାଭେଲ୍‌ପୁ ଚଳଚ୍ଚିତ୍ରର ପ୍ରଖ୍ୟାତ ସଂଗୀତ ନିର୍ଦ୍ଦେଶକ ପାଣ୍ଡ୍ୟାଲା ନାଗେଶ୍ୱର ରାଓ, ଏସ୍.ରାଜେଶ୍ୱର ରାଓ ଏବଂ ସୁସାର୍‌ଲା ଦକ୍ଷିଣମୂର୍ତ୍ତିଙ୍କ ଭଳି ସେସମୟର ଆଗ ଧାଡ଼ିର ସଂଗୀତ ନିର୍ଦ୍ଦେଶକଙ୍କ ସହିତ ପଣ୍ଡିତ ରଘୁନାଥଙ୍କର ସୁସଂପର୍କ ଥିଲା । କନ୍ନଡ ଚଳଚ୍ଚିତ୍ରରେ ରଘୁନାଥ ମଧ୍ୟ କଣ୍ଠଦାନ କରିଛନ୍ତି । ଚେନ୍ନାଇରେ ଯଦି ସେ ଅଧିକ ଦିନ ଅବସ୍ଥାନ କରିଥାନ୍ତେ, ତେବେ ଖୁବ୍ ଆଗକୁ ଯାଇ ସେ ନାମ କମାଇ ପାରିଥାନ୍ତେ । କିନ୍ତୁ ନିୟତିର ନିର୍ଦ୍ଦେଶ ତାଙ୍କ ପାଇଁ କିଛି ଭିନ୍ନ ଥିଲା ।

ସଂଯୁକ୍ତା ମିଶ୍ରଙ୍କ ସହିତ ୧୯୬୦ରେ ଶୁଭ ପରିଣୟ ପରେ ତାଙ୍କର ମାନ୍ଦ୍ରାଜ୍‌ରେ ପ୍ରାୟ ୫ ବର୍ଷର ସ୍ୱଳ୍ପ ରହଣୀ ସମାପ୍ତ ହୋଇଥିଲା । ବର୍ଷ ବର୍ଷର ସଂଘର୍ଷ ସହ ସାରା ଭାରତ ପରିଭ୍ରମଣ କରି ପଣ୍ଡିତ ରଘୁନାଥ ପାଣିଗ୍ରାହୀ ସସ୍ତ୍ରୀକ ଓଡ଼ିଶୀ ନୃତ୍ୟ ଓ ଓଡ଼ିଶୀ ସଂଗୀତକୁ ଭାରତନାଟ୍ୟମ୍ ଭଳି ଜାତୀୟ ସ୍ୱୀକୃତି ଏବଂ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ କରିବାରେ ସମର୍ଥ ହୋଇଥିଲେ । ଏହା ଓଡ଼ିଶୀକୁ ଦରିଆପାରିରେ ପ୍ରସିଦ୍ଧି ଆଣି ଦେଇଥିବା ଇନ୍ଦ୍ରାଣୀ ରେହମନ୍ ଏବଂ ସୋନାଲ୍ ମାନସିଂହଙ୍କ ଆଗମନର ପୂର୍ବ ଘଟଣା ଥିଲା । ପରବର୍ତ୍ତୀ ସମୟରେ ପାଣିଗ୍ରାହୀ ସପତ୍ନୀକ ଚେନ୍ନାଇ ଆସି ମ୍ୟୁଜିକ୍ ଏକାଡେମୀରେ ଓଡ଼ିଶୀ ପରିବେଷଣ କରୁଥିଲେ । ଅନ୍ୟ କଳାକାର ଯୋଡ଼ିଙ୍କ ଭଳି ସେମାନେ ସଂପୂର୍ଣ୍ଣ ଭାବେ ନୃତ୍ୟ ସଂଗୀତ ଜଗତ ପ୍ରତି ନିଜକୁ ସମର୍ପିତ କରି ଦେଇଥିଲେ । ଦୁହିଁଙ୍କ ଜୀବନ ନୃତ୍ୟ ସଂଗୀତରେ ଏଭଳି ନିମଗ୍ନ ଥିଲା ଯେ ଏ କ୍ଷେତ୍ରରୁ କଦାପି ତାଙ୍କ ପାଦଯୁଗଳ ନିରତ ହୋଇ ନଥିଲା ।

ଓଡ଼ିଶା ପ୍ରତ୍ୟାବର୍ତ୍ତନ ପରେ ପଣ୍ଡିତ ରଘୁନାଥ ଅନେକ ଯନ୍ତ୍ର ସଂଗୀତ ସଂଯୋଜନା କରିବା ସହ ଓଡ଼ିଆ ଚଳଚ୍ଚିତ୍ର ପାଇଁ ମଧ୍ୟ କଣ୍ଠଦାନ କରିଥିଲେ । ମାତ୍ର ଓଡ଼ିଶୀ ସଂଗୀତ ପ୍ରତି ସେ ପ୍ରାଧାନ୍ୟ ଦେଉଥିଲେ ଏବଂ ଏହା ତାଙ୍କର ସର୍ବୋତ୍କୃଷ୍ଟ ସାଧନା କ୍ଷେତ୍ର ହୋଇଥିଲା । ୧୯୭୦ ପ୍ରାରମ୍ଭରୁ ଏବଂ ୧୯୯୦ ପର୍ଯ୍ୟନ୍ତ ଉଭୟ ରଘୁନାଥ ଓ ସଂଯୁକ୍ତା ପାଣିଗ୍ରାହୀ ଓଡ଼ିଶୀକୁ ବିଶ୍ୱ ଦରବାରରେ ପରିଚିତ କରିବା ଉଦ୍ଦେଶ୍ୟରେ ବିଭିନ୍ନ ଦେଶ ଓ ମହାଦେଶ ଗସ୍ତ କରିଥିଲେ । ସଂଯୁକ୍ତାଙ୍କ ବିୟୋଗ ପରେ ପଣ୍ଡିତ ରଘୁନାଥ ବେଙ୍ଗାଲୁର୍‌ର 'ନୃତ୍ୟଗ୍ରାମ' ସହ ଓତଃପ୍ରୋତଃ ଭାବେ ଜଡ଼ିତ ଥିଲେ ଏବଂ ଏହାର ଅନେକ ପ୍ରଯୋଜନା ପାଇଁ ମଧ୍ୟ ସେ ସଂଗୀତ ପରିବେଷଣ କରିଥିଲେ ।

◆◆◆

ନିଜ ପ୍ରଚେଷ୍ଟାରେ ରଘୁନାଥ ପାଣିଗ୍ରାହୀ ଜୟଦେବ ରଚିତ ଗୀତଗୋବିନ୍ଦର ମହାନ ପ୍ରତିପାଦକ ଥିଲେ । ଏହି ସମର୍ପଣ ତଥା ସାଧନା ୨୦୧୦ ମସିହାରେ ତାଙ୍କୁ ସର୍ବୋଚ୍ଚ ସମ୍ମାନ 'ପଦ୍ମଶ୍ରୀ' ଉପାଧିରେ ବିଭୂଷିତ କରି ପାରିଥିଲା । ୧୯୭୮ରେ ଗୀତଗୋବିନ୍ଦ ସଂଯୋଜନା କ୍ଷେତ୍ରରେ ପ୍ରଥମ ଓଡିଆଭାବେ ସେ ଫରାସୀ ସରକାରଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ । ପଣ୍ଡିତ ରଘୁନାଥ ପାଣିଗ୍ରାହୀଙ୍କୁ ଅନେକ ସମ୍ମାନରେ ବିଭୂଷିତ କରାଯିବା ସହ ରାଜ୍ୟ ସରକାରଙ୍କ ପକ୍ଷରୁ ଓଡିଶାର ସମ୍ମାନଜନକ ଉପାଧି 'ଜୟଦେବ ସମ୍ମାନ' ପ୍ରଦାନ କରାଯାଇଛି ।

ସଦା ସହାସ୍ୟ ବଦନ, ମିଷ୍ଟଭାଷୀ ଏବଂ ନମ୍ରତାର ପ୍ରତୀକ ପଣ୍ଡିତ ରଘୁନାଥ ପାଣିଗ୍ରାହୀ ଜୀବନରେ ଦୃଢ ସଂକଳ୍ପବାଦୀ ଥିଲେ । ଉଭୟ ସଂଯୁକ୍ତା ଓ ରଘୁନାଥ ଜୀବନର ଆଦ୍ୟ ଭାଗରେ ବହୁ ଝଡଝଞ୍ଜାର ସମ୍ମୁଖୀନ ହୋଇଥିଲେ ମଧ୍ୟ ଏହା ତାଙ୍କର ଦୃଢ ମନୋବଳ ଆଗରେ କୌଣସି ପ୍ରଭାବ ପକାଇ ପାରି ନଥିଲା । ସେ ନିଜ ଅର୍ଦ୍ଧାଙ୍ଗିନୀଙ୍କ ସହ ଏକତ୍ର ହୋଇ ନିଜର ମହାନ ସ୍ୱପ୍ନକୁ ଚରିତାର୍ଥ କରିବା ଦିଗରେ ଲାଗିପଡିଥିଲେ । ରଘୁନାଥ ଏବଂ ସଂଯୁକ୍ତା ଖୁବ୍ ଅମାୟିକ, ସାଧାରଣ ଏବଂ ମାନବବାଦୀ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ସେମାନଙ୍କ ଜୀବନଧାରା କେବଳ ନୃତ୍ୟ ସଂଗୀତ ସାଧନାରେ ନିମଜ୍ଜିତ ଥିଲା । ଭକ୍ତିଭାବ ଏବଂ ଉତ୍କର୍ଷର ଅପୂର୍ବ ସମନ୍ୱୟର ସୁଦୀପ୍ତ ଦୃଷ୍ଟାନ୍ତ ଥିଲେ ପଣ୍ଡିତ ରଘୁନାଥ ଓ ସଂଯୁକ୍ତା ପାଣିଗ୍ରାହୀ ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର

# ବିଜୟା ଦଶମୀ

**ଶରତ କୁମାରୀ ମିଶ୍ର**

ଯୁଗ ପୁରୁଷ ଶ୍ରୀରାମ ବିଜୟା ଦଶମୀ ଦିନ
କାତ୍ୟାୟନୀଙ୍କର ପୂଜା ଭକ୍ତିରେ କରି
ଲଙ୍କା ଅଭିମୁଖେ ଯାତ୍ରା ଉଦ୍ଧରିବେ ଜଗନ୍ମାତା
ଯୁଦ୍ଧରେ ସେ ରାବଣକୁ ନିଶ୍ଚିତ ମାରି
ଧର୍ମ କରିବେ ସ୍ଥାପନା
ଦୃଷ୍କୃତିର ଇତି ପାଇଁ ସୈନ୍ୟ ଚାଳନା ।
ଅଶୋକ ବନେ ବନ୍ଦିନୀ ଥିଲେ ଜନକ ନନ୍ଦିନୀ
ଅଯୋନି ସମ୍ଭୂତା ସେତ
ଚୋରାଇଣ ଦଶକନ୍ଧ ଦେଉଥିଲା କେତେ ଦଣ୍ଡ
ପାଇଲା ସେ ପ୍ରତିଫଳ କରିଲା ଯାହା
ସେଥିପାଇଁ ଆନନ୍ଦ ମନେ
ଦଶହରାକୁ ପାଳିଲେ ଅଯୋଧ୍ୟା ଜନେ ।
ଦେବତାଙ୍କ ତେଜ ଧରି ମହିଷାସୁରକୁ ମାରି
ସମର ନିପୁଣା ଦେବୀ ହେ ଦୁର୍ଗା ମାତା



ଦୁଷ୍ଟଙ୍କୁ ଦଳନ କରି ଶାନ୍ତି ମୈତ୍ରୀ ପ୍ରୀତି ଭରି
ଏହି ସ୍ୱର୍ଣ୍ଣାଭ ଦିବସେ ଜଗତଜିତା
ତାଙ୍କ ପଦେ କରି ବନ୍ଦନା
ଦଶବିଧ ପାପୁ ମୁକ୍ତି କର କାମନା ।
ଦେବୀଙ୍କ ପଦ ବନ୍ଦନା କରିବାକୁ ହୃଷ୍ଟମନା
ହୋଇଣ ଅଛନ୍ତି ସର୍ବେ ଭାରତବାସୀ
ପାର୍ବଣ ସଙ୍ଗୀତ ଗାନେ ନିମଜ୍ଜିତ ଅନୁକ୍ଷଣେ
ଜାତି ଧର୍ମ ବର୍ଣ୍ଣ ଶେଷରେ ହସି ହସି
ସାର୍ବଜନୀନ ଦୁର୍ଗାପୂଜା କରିଣ
ବସାନ୍ତି ସଜ ବଜାଇ ବାଜା ।

ଏନ୍– ୫/୧୨୮
ଆଇଆରସି ଭିଲେଜ, ଭୁବନେଶ୍ୱର







# ଓଡ଼ିଶାର ହସ୍ତଶିଳ୍ପ

**ମହେନ୍ଦ୍ର କୁମାର ନାୟକ**

ବିଶ୍ୱ ଦରବାରରେ ଯେତେ ଦେଶ ଓ ମହାଦେଶ ରହିଅଛି, ସେଥିମଧ୍ୟରୁ ଭାରତର ସ୍ଥାନ ଅନ୍ୟତମ । ଭାରତବର୍ଷରେ ଯେତିକି ରାଜ୍ୟ ଅଛି, ସେଥିମଧ୍ୟରୁ ଓଡ଼ିଶାର ନାମ ମଧ୍ୟ ବହୁ ପରିଚିତ । ଓଡ଼ିଶାର ନାମକୁ ବିଶ୍ୱ ଦରବାରରେ ପରିଚିତ କରାଇବାରେ ତା'ର କଳା ଓ ଐତିହ୍ୟ ହିଁ ସାର । ତେଣୁ ପ୍ରାଚୀନ କାଳରେ ଏହି କଳା ଓ ଐତିହ୍ୟର ପ୍ରାଚୁର୍ଯ୍ୟତା ପାଇଁ 'ଉତ୍କଳ' ବୋଲି ନାମକରଣ କରାଯାଇଥିଲା । ସେହି ଉତ୍କଳର କୁଟୀର ଶିଳ୍ପ ହିଁ ଓଡ଼ିଶାର ନାମକୁ ବିଶ୍ୱ ଦରବାରରେ ପହଞ୍ଚାଇ ପାରିଥିଲା । କୁଟୀର ମଧ୍ୟରେ ବସି ଆମେ ଯେଉଁ ଶିଳ୍ପଗୁଡିକୁ ଗଠନ କରିବା ନିମନ୍ତେ ସମର୍ଥ ହୋଇଥାଉଁ, ତାହାକୁ ହିଁ କୁଟୀର ଶିଳ୍ପ ବା ହସ୍ତଶିଳ୍ପ ବୋଲି କୁହାଯାଏ । ଭାରତବର୍ଷରେ ଓଡ଼ିଶା ଏକ କୃଷି ପ୍ରଧାନ ରାଜ୍ୟ । ତେଣୁ ଏହାର କୁଟୀର ଶିଳ୍ପ ବା ହସ୍ତଶିଳ୍ପ ଖୁବ୍ ମହାନ୍ ।

କୃଷି ପ୍ରଧାନ ଓଡ଼ିଶାରେ କୃଷିଜୀବୀମାନେ ନିଜର ଅବସର ସମୟରେ ବିକଳ୍ପ ଉପଜୀବୀକା ହିସାବରେ କୁଟୀର ଶିଳ୍ପକୁ ହିଁ ବାଛିଥାନ୍ତି । ଫଳରେ ବହୁ ପ୍ରାଚୀନ କାଳରୁ ଓଡ଼ିଶାର ହସ୍ତଶିଳ୍ପ ବିଶ୍ୱ ବିଖ୍ୟାତ ଅଟେ । ଓଡ଼ିଶାର ଜାତିପ୍ରଥା ଓ ବର୍ଣ୍ଣଭେଦରେ ହସ୍ତଶିଳ୍ପ ପ୍ରଚଳିତ ହୋଇ ଆସୁଅଛି । ଏହି ହସ୍ତଶିଳ୍ପ ବଂଶାନୁକ୍ରମରେ ପ୍ରଚଳିତ ହୋଇ ଆସୁଛି । ଏହା ଏକ କୌଳିକ ବୃତ୍ତି ହିସାବରେ ପିତାଠାରୁ ପୁତ୍ର ଓ ପୁତ୍ରଠାରୁ ତାଙ୍କ ସନ୍ତାନ– ସନ୍ତତିମାନେ ମଧ୍ୟ ପାରମ୍ପରିକ ରୀତିରେ ବଂଶାନୁକ୍ରମରେ ଉତ୍ତରାଧିକାରୀଙ୍କ କୌଳିକ ବୃତ୍ତିକୁ ପାଥେୟ କରି ଉତ୍କଳ ମାଟିର 'ହସ୍ତଶିଳ୍ପ'ର ପ୍ରାଚୁର୍ଯ୍ୟକୁ ଜୀବିତ କରି ରଖିଛନ୍ତି । ଉଦାହରଣ ସ୍ୱରୂପ ଚିତ୍ରକର, କୁମ୍ଭାର କଂସାରି, ବଢେଇ, କମାର, ବଣିଆ, ତନ୍ତି, ଚମାର, ଶଙ୍ଖାରୀ, ପଥର କାରିଗର ଇତ୍ୟାଦି ହେଉଛନ୍ତି ବଂଶାନୁକ୍ରମିକ ହସ୍ତଶିଳ୍ପୀ । ଏମାନେ ନିଜର ସୀମିତ ଗୃହ ପରିସର ମଧ୍ୟରେ ନିଜର କୌଳିକ ବୃତ୍ତିକୁ ଅନୁସରଣ କରି ନିଜ ଅଞ୍ଚଳର ଉତ୍ପାଦିତ କଞ୍ଚାମାଲ୍‌ରେ ଜୀବନ୍ତ ଶିଳ୍ପ ସାମଗ୍ରୀ ପ୍ରସ୍ତୁତ କରନ୍ତି ।

ଓଡ଼ିଶା ରାଜ୍ୟରେ ଏହିଭଳି ପାରମ୍ପରିକ ହସ୍ତଶିଳ୍ପର ପ୍ରାଚୁର୍ଯ୍ୟ ପ୍ରାୟତଃ କୋଣ ଅନୁକୋଣରେ ଉପଲବ୍ଧ । ପିପିଲିର ଚାନ୍ଦୁଆ, ରଘୁରାଜପୁରର ପଟ୍ଟଚିତ୍ର, ସମ୍ବଲପୁରର ଶାଢୀ, ବ୍ରହ୍ମପୁରର ପାଟ, ବାରିପଦାର ମଠା ଓ ଟସର ବସ୍ତ୍ର, କଟକର ତାରକସି, ପାରଳାଖେମୁଣ୍ଡିର ଗଜପତିର ଶିଙ୍ଗକାମ, ଗଞ୍ଜାମର ପିତ୍ତଳମାଛ, ନବରଙ୍ଗପୁରର ଲାଖ ଓ କାଠ ନିର୍ମିତ ସାମଗ୍ରୀ, ଢେଙ୍କାନାଳର କଂସାବାସନ ଓ ଡୋକ୍ରା ଶିଳ୍ପ, ବାଲେଶ୍ୱର ନୀଳଗିରିର ପଥର ମୂର୍ତ୍ତି ଶିଳ୍ପ, ଟେରାକୋଟା ଓ ଆଦିବାସୀ ଅଳଙ୍କାର, ବେତ ଓ ବାଉଁଶ ନିର୍ମିତ କାରୁକାର୍ଯ୍ୟ, କାଚ, ଶଙ୍ଖ ଓ ଶାମୁକାରେ ନିର୍ମିତ ସାମଗ୍ରୀ ଏବଂ ନଡିଆକତାରେ ନିର୍ମିତ ଶିଳ୍ପ ଅନ୍ୟତମ ।

ପିପିଲିର ଚାନ୍ଦୁଆ ଓଡ଼ିଶାର କଳା–କାରିଗରୀର ନମୁନା ଅଟେ । ଏହା ବହୁ ପୁରାତନ ସୂଚୀକଳା, ଓଡ଼ିଶାର କଳା ନୈପୁଣ୍ୟର ଏକ ସ୍ୱତନ୍ତ୍ର ପରିଚୟ ବହନ କରୁଛି । ଛତା ଠୁଁ ଛତି, ଚାନ୍ଦୁଆ ଠୁଁ ପତାକା ଆଉ ଅତ୍ୟାଧୁନିକ ଢାଞ୍ଚାରେ ନିର୍ମିତ ହ୍ୟାଣ୍ଡସେଟ୍, ଦର୍ପଣ ଖଚିତ, ବେଡ କଭର, ଭ୍ୟାନିଟ୍ ବ୍ୟାଗ୍, ମନିପର୍ସ, ଗାର୍ଡେନ ଅମ୍ବ୍ରେଲା ଇତ୍ୟାଦି ଖୁବ୍ ଆକର୍ଷଣୀୟ ହୋଇପାରୁଛି । ପିପିଲି ଚାନ୍ଦୁଆର ଚାହିଦା ରାଜ୍ୟ, ଦେଶ ସୀମା ଅତିକ୍ରମ କରି ଆନ୍ତର୍ଜାତୀୟ ସ୍ତରରେ ବେଶ୍ ଖ୍ୟାତି ଅର୍ଜନ କରିପାରିଛି । ବିଦେଶାଗତ ପର୍ଯ୍ୟଟକମାନେ ପିପିଲି ଚାନ୍ଦୁଆକୁ ସେମାନଙ୍କ ଓଡ଼ିଶା ଆଗମନର ଅବିସ୍ମରଣୀୟ ସ୍ମାରକୀ ମନେକରି ନିଜ ସହିତ ନେଇଯିବାରେ ଅପାର ଆନନ୍ଦ ଅନୁଭବ କରୁଛନ୍ତି ।

ରଘୁରାଜପୁରର 'ପଟ୍ଟଚିତ୍ର' ବିଶ୍ୱ ଦରବାରରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ମାନ୍ୟତା ଦେଇଛି । ରଘୁରାଜପୁର ପଟ୍ଟଚିତ୍ର ପାଇଁ




ଭାରତ ସରକାରଙ୍କ ପର୍ଯ୍ୟଟନ ମନ୍ତ୍ରଣାଳୟ ପକ୍ଷରୁ ଆଦର୍ଶ 'ଶିଳ୍ପଗ୍ରାମ'ରୂପେ ପରିଚିତ ହେବା ସହିତ ଆନ୍ତର୍ଜାତୀୟ ସ୍ତରରେ ଏକ ଚର୍ଚ୍ଚିତ ଗ୍ରାମ ରୂପେ ପ୍ରସିଦ୍ଧି ଲାଭ କରିଛି । ପଥର ଖୋଦେଇ, କାଗଜମୁଖା, ତାଳପତ୍ର ଚିତ୍ର, ଟସରକାମ, ପଟ୍ଟଚିତ୍ର କାଠକାମ ଚିତ୍ର ଏଠାରେ କୁଟୀର ଶିଳ୍ପରେ ପରିଣତ ହୋଇ ପଟ୍ଟଚିତ୍ରର ଗ୍ରାମ ରୂପେ ରଘୁରାଜପୁର ବେଶ୍ ଖ୍ୟାତି ଅର୍ଜନ କରିପାରିଛି । ପଟ୍ଟଚିତ୍ର କଳା ଯୋଗୁଁ ଏହି ଗ୍ରାମରେ ପ୍ରତିଦିନ ଦେଶ ବିଦେଶର ଅନେକ ପର୍ଯ୍ୟଟକଙ୍କ ଭିଡ ଜମୁଛି । ପୁଣି ଏହି 'ପଟ୍ଟଚିତ୍ର' କଳାକୃତିକୁ ବିଦେଶକୁ ରପ୍ତାନୀ କରାଯାଉଛି । ଏଣୁ ପଟ୍ଟଚିତ୍ର ଭଳି ଏକ ହସ୍ତଶିଳ୍ପ ଚିତ୍ରକଳା ପାଇଁ ଓଡ଼ିଶା ବିଶ୍ୱ ଦରବାରରେ ଗୌରବାନ୍ୱିତ ।

ସମ୍ବଲପୁରୀ ଶାଢୀ ରାଜ୍ୟ ଓ ଦେଶ ସୀମା ଅତିକ୍ରମ କରି ଆଜି ଆନ୍ତର୍ଜାତିକ ସ୍ତରରେ ପହଞ୍ଚିଛି। ସୂତା, ପାଟ, ଟସର ଓ ବାପ୍ତା ଲୁଗାରେ କଳା ନୈପୁଣ୍ୟ ଏବଂ ରଙ୍ଗର ସ୍ଥାୟିତ୍ୱ ସମ୍ବଲପୁରୀ ବ୍ରାଣ୍ଡର ପରିଚୟ ହୋଇଛି । ବାନ୍ଧ କଳା ଭାବେ ପରିଚିତ ପଶ୍ଚିମ ଓଡ଼ିଶାର ଏହି ବୟନଶିଳ୍ପ ଅତି ପ୍ରାଚୀନ ବୋଲି ଗବେଷକମାନେ ମତ ଦେଇଛନ୍ତି । ପୁଣି ଦେଶ ବିଦେଶରେ ସମ୍ବଲପୁରୀ ଶାଢୀର ଅହେତୁକ ଚାହିଦା ରହିଛି । ଭୂଳିଆ ବା ମେହେର, କୋଷ୍ଟା ଜାତିର ଲୋକଙ୍କ ଏହା ଏକ କୌଳିକ ବୃତ୍ତି ଭାବରେ ବଂଶାନୁକ୍ରମିକ ଚାଲି ଆସିଛି । ଶିଳ୍ପୀ କୃତାର୍ଥ ଆଚାର୍ଯ୍ୟ, ରାଧାଶ୍ୟାମ ମେହେର, ଯଦୁନାଥ ସୁପକାର, ମୋହନ ମେହେର, କୁଞ୍ଜ ବିହାରୀ ମେହେର, ଚତୁର୍ଭୁଜ ମେହେର ପ୍ରମୁଖ ସମ୍ବଲପୁରୀ ବାନ୍ଧକଳାକୁ ନୂତନ ଦିଗନ୍ତ ଦେଇଛନ୍ତି । ସେହିପରି ବ୍ରହ୍ମପୁର ଅଞ୍ଚଳର ପାଟଲୁଗା ମଧ୍ୟ ବିଶ୍ୱ ବିଖ୍ୟାତ ଅଟେ । ଏହାର ରଙ୍ଗ ଓ ବୁଣା ଖୁବ୍ ଉଚ୍ଚକୋଟୀର । ତେଣୁ ଓଡ଼ିଶାର କୋଣ ଅନୁକୋଣ, ସମଗ୍ର ଭାରତରେ ମଧ୍ୟ ବ୍ରହ୍ମପୁରୀ ପାଟର ଚାହିଦା ଖୁବ୍ ବେଶୀ । ମଠା ଓ ଟସର ବସ୍ତ୍ର ପାଇଁ ବାରିପଦା ମଧ୍ୟ ବେଶ୍ ଜଣାଶୁଣା ।

କଟକର ତାରକସି କାର୍ଯ୍ୟ ଖୁବ୍ ଉଚ୍ଚକୋଟୀର ଓ ବେଶ୍ ଆକର୍ଷଣୀୟ । ତାରକସିରେ ନିର୍ମିତ ସମସ୍ତ ପ୍ରକାର ଗହଣା ଓ ଜିନିଷପତ୍ର ଦେଶ ବିଦେଶରେ ଚାହିଦା ବେଶୀ । କଟକର ଚାନ୍ଦିମେଢ ବିଶ୍ୱ ବିଖ୍ୟାତ ଅଟେ । ଗଜପତି ଜିଲ୍ଲାର ପାରଳାଖେମୁଣ୍ଡି ଶିଙ୍ଗରେ ନିର୍ମିତ ସୂକ୍ଷ୍ମ ଓ ସୁନ୍ଦର କାରୁକାର୍ଯ୍ୟ ପାଇଁ ଦେଶ ତଥା ଦେଶ ବାହାରେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି । ଶିଙ୍ଗରେ ନିର୍ମିତ ପଶୁପକ୍ଷୀ ମଡର୍ଣ୍ଣ ଆର୍ଟ, ଜଗନ୍ନାଥ ମୂର୍ତ୍ତି, ଡଙ୍ଗା, ପାନିଆ, ବୃକ୍ଷ, ହରିଣ, ମୟୂର ପ୍ରଭୃତି ଦେଶୀ ଓ ବିଦେଶୀ ପର୍ଯ୍ୟଟକଙ୍କ ମନଲୋଭା ହୋଇପାରୁଛି । ଗଞ୍ଜାମର ପିତ୍ତଳରେ ନିର୍ମିତ କାରୁକାର୍ଯ୍ୟ ମଧ୍ୟ ପ୍ରସିଦ୍ଧି ଲାଭ କରିପାରିଛି ।

ନବରଙ୍ଗପୁରର ଲାଖ ନିର୍ମିତ ଆକର୍ଷଣୀୟ ସାମଗ୍ରୀ ଚୁଡ଼ି, ଫୁଲଦାନୀ, କୁମ୍ଭ, ହାତୀ, ଘୋଡା, ପେନ୍‌ଷ୍ଟାଣ୍ଡ ଏବଂ ବିଭିନ୍ନ ଗୃହସଜ୍ଜା ଉପକରଣ ପାଇଁ ସମଗ୍ର ପୃଥିବୀରେ ବେଶ୍ ଆଦୃତି ଲାଭ କରିପାରିଛି । ଅତି ପ୍ରାଚୀନ ଓ ପାରମ୍ପରିକ ଏହି ଲାଖ ଶିଳ୍ପ । ଜଙ୍ଗଲଜାତ ଦ୍ରବ୍ୟରୁ ଲାଖ ପ୍ରସ୍ତୁତ କରି ସେଥିରୁ ନିର୍ମିତ ସାମଗ୍ରୀ ଜୀବନ୍ତ ଦେଖାଯାଉଥିବାରୁ ବେଶ୍ ଆଦୃତ । ସେହିପରି ନବରଙ୍ଗପୁରର ଚନ୍ଦାହାଣ୍ଡି ବ୍ଲକ୍ କାଠମୂର୍ତ୍ତି ନିର୍ମାଣ ପାଇଁ ପ୍ରସିଦ୍ଧି ଲାଭ କରିଛି ରାଜ୍ୟ ଓ ରାଜ୍ୟ ବାହାରେ । କାଠରେ ନିର୍ମିତ ପଶୁପକ୍ଷୀ, ଗୃହ ସାମଗ୍ରୀ, ଗଣେଶ, ଜଗନ୍ନାଥ ଭଳି ଏକ ବିରଳ କାରୁକାର୍ଯ୍ୟକୁ ଜୀବନ୍ତ ରଖିପାରି ଏକ ଅନନ୍ୟ ଉଦାହରଣ ସୃଷ୍ଟି କରିପାରିଛନ୍ତି । ଲାଖ ଓ କାଠ ନିର୍ମିତ ସାମଗ୍ରୀର ଚାହିଦା ମଧ୍ୟ ଖୁବ୍ ବେଶୀ ହୋଇପାରିଛି । ଏହି ଶିଳ୍ପର ଆଦୃତ ଯୋଗୁଁ ନବରଙ୍ଗପୁର ପୃଥିବୀ ପ୍ରସିଦ୍ଧି ହୋଇପାରିଛି ।

ଢେଙ୍କାନାଳର ଭୁବନ କଂସା ପିତ୍ତଳ ବାସନ ଏବଂ ବିଭିନ୍ନ ଘରୋଇ ସାମଗ୍ରୀ ପାଇଁ ପ୍ରସିଦ୍ଧ । କଂସା ପିତ୍ତଳରେ ନିର୍ମିତ ଅତ୍ୟାଧୁନିକ ସାମଗ୍ରୀ ପର୍ଯ୍ୟଟକଙ୍କ ଆଗ୍ରହ ଓ ରୁଚିକୁ ବଢେଇବାରେ ସହାୟକ ହୋଇଛି । ପୁଣି ପୁରୀର ବାଲକାଟି, ନୟାଗଡର କଣ୍ଟିଲୋ, କଟକର ଭଟ୍ଟିମୁଣ୍ଡା, ବାଲେଶ୍ୱରର ରେମୁଣା ଆଦି ସ୍ଥାନ ମଧ୍ୟ କଂସା ପିତ୍ତଳ ଶିଳ୍ପ ପାଇଁ ଦେଶ ବିଦେଶରେ ପରିଚିତ ହୋଇପାରିଛି । ଏତଦ୍‌ବ୍ୟତୀତ ଢେଙ୍କାନାଳର ନବଜୀବନପୁର ଗ୍ରାମ 'ଡୋକ୍ରା କାଷ୍ଟିଂ' ହସ୍ତଶିଳ୍ପ ପାଇଁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ବେଶ୍ ପ୍ରସିଦ୍ଧ ଲାଭ କରିଛି । ଏହି ଗ୍ରାମର ହସ୍ତଶିଳ୍ପୀମାନେ ଦେଶ ଓ ବିଦେଶ ପରିଭ୍ରମଣ କରି କଳାର ନିଖୁଣତା ପ୍ରଦର୍ଶନ କରି ଉଚ୍ଚ ପ୍ରଶଂସିତ ହୋଇପାରିଛନ୍ତି । ବିଭିନ୍ନ ପ୍ରକାର ଦେବଦେବୀ ପ୍ରତିମୂର୍ତ୍ତି ଓ ଜୀବଜନ୍ତୁ ପ୍ରତିକୃତି ନିର୍ମାଣ କରି ରାଜ୍ୟ ଦେଶ ତଥା ଦେଶ ବାହାରର ପର୍ଯ୍ୟଟକଙ୍କ ମଧ୍ୟ 'ଡୋକ୍ରାକାଷ୍ଟିଂ' ହସ୍ତଶିଳ୍ପର ଏକ ସ୍ୱତନ୍ତ୍ର ଚାହିଦା ସୃଷ୍ଟି କରିପାରିଛନ୍ତି ।

ସେହିପରି ବାଲେଶ୍ୱର ଜିଲ୍ଲାର ନୀଳଗିରି ପଥରରେ ନିର୍ମିତ ମୂର୍ତ୍ତି, ଶିଳ, ଚକି, ପଥରଖୁଣ୍ଟ, ଦେବଦେବୀ ଆଦି ବିଭିନ୍ନ ସୂକ୍ଷ୍ମ କାରୁକାର୍ଯ୍ୟ ପାଇଁ ପ୍ରସିଦ୍ଧ । ଓଡ଼ିଶାର ପଥରରେ ନିର୍ମିତ ହସ୍ତଶିଳ୍ପ ଦେଶ ଓ ବିଦେଶର ସରକାରୀ, ବେସରକାରୀ କୋଠାରେ ଖଚିତ ହୋଇ ପଥରର କାରୁକାର୍ଯ୍ୟକୁ ସ୍ୱତନ୍ତ୍ର ମାନ୍ୟତା ଦେଇପାରିଛି । ଏତଦ୍‌ବ୍ୟତୀତ ବେତ ଓ ବାଉଁଶରେ ନିର୍ମିତ ଆକର୍ଷଣୀୟ ଗୃହ ସାଜସଜ୍ଜା ସାମଗ୍ରୀର ଚାହିଦା ବେଶୀ । କାଚରେ ନିର୍ମିତ ସାମଗ୍ରୀ, ଓଡ଼ିଶାର ନଦୀ, ସମୁଦ୍ରରୁ ମିଳୁଥିବା ଶଙ୍ଖ ଓ ଶାମୁକାରୁ ପ୍ରସ୍ତୁତ ସୁନ୍ଦର ସୁନ୍ଦର ସାମଗ୍ରୀ କେବଳ ରାଜ୍ୟରେ ନୁହେଁ, ରାଜ୍ୟ ଓ





ଦେଶ ବାହାରର ଲୋକଙ୍କୁ ମଧ୍ୟ ଆକୃଷ୍ଟ କରିପାରିଛି । ସୁବର୍ଣ୍ଣପୁରର ଟେରାକୋଟା ଶିଳ୍ପ ଦେଶ ବିଦେଶରେ ବେଶ୍ ଖ୍ୟାତି ଅର୍ଜନ କରିଛି । ମାଟିରେ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ସହ ହାତୀ, ଘୋଡା, ସିଂହ, ଶୁଆ, ମୟୂର ଆଦି ପଶୁପକ୍ଷୀ, ଦେବଦେବୀ ମୂର୍ତ୍ତି, ଫୁଲଦାନୀ ଦୀପ, କଳସ ପ୍ରଭୃତି ସୌଖୀନ ସାମଗ୍ରୀ ଓଡ଼ିଶାର ପୁରପଲ୍ଲୀରୁ ନୂଆଦିଲ୍ଲୀ, ଡେନ୍‌ମାର୍କ ପର୍ଯ୍ୟନ୍ତ ବେଶ୍ ଚାହିଦା ରହିଛି । ସୁବର୍ଣ୍ଣପୁରର ଟେରାକୋଟା ଶିଳ୍ପୀମାନେ କଞ୍ଚାମାଟି ପିଣ୍ଡୁଳାକୁ ଜୀବନ୍ତ ପ୍ରତିମାର ରୂପ ଦେଇ ଡେନ୍‌ମାର୍କର କୋପେନ୍‌ହାଗେନ୍‌ରେ ଉଚ୍ଚ ପ୍ରଶଂସିତ ହୋଇ ପାରିଛନ୍ତି । ନବରଙ୍ଗପୁରର ତଣ୍ଡାଗୁଡା ଗାଁ ମଧ୍ୟ ଟେରାକୋଟା କାମ ପାଇଁ ପ୍ରସିଦ୍ଧି ଲାଭ କରିପାରିଛି । ଆଦିବାସୀଙ୍କ ନୃତ୍ୟକଳା, ସଂସ୍କୃତି, ପରମ୍ପରା ଓ ବେଶଭୂଷା ପାଇଁ ସ୍ୱତନ୍ତ୍ର ସ୍ଥାନ ହାସଲ କରିଥିବା ଓଡ଼ିଶା ସେମାନଙ୍କ ହସ୍ତଶିଳ୍ପ ପାଇଁ ମଧ୍ୟ ବିଶ୍ୱ ଦରବାରରେ ସୁପ୍ରସିଦ୍ଧ ହୋଇପାରିଛି । ସେମାନଙ୍କ ପାରମ୍ପରିକ ଅଳଙ୍କାର ଲବଙ୍ଗକଡି, ଜାଇଫୁଲ, ଫୁଲ, ବେସରି, ଚାପସରି ଆଦିର ଚାହିଦା ବିଦେଶୀ ପର୍ଯ୍ୟଟକଙ୍କ ମଧ୍ୟରେ ରହିଛି । ବିଭିନ୍ନ ପ୍ରକାର ଲକେଟ, ବ୍ରେସ୍‌ଲେଟ୍ ଏବଂ ଭିନ୍ନ ଭିନ୍ନ ରଙ୍ଗ ଓ ଡିଜାଇନ୍ ଚୁଡି ବିଦେଶାଗତ ପର୍ଯ୍ୟଟକମାନଙ୍କ ପାଇଁ ଆକର୍ଷଣର କେନ୍ଦ୍ରବିନ୍ଦୁ ପାଲଟିଛି । ତେଣୁ ଆଦିବାସୀଙ୍କ 'ହସ୍ତଶିଳ୍ପ'ର ଚାହିଦା ଦେଶ ବିଦେଶରେ ସୁନାମ ଅର୍ଜନ କରିପାରିଛି । ଏହିପରି ଭାବେ ହସ୍ତଶିଳ୍ପ ଓଡ଼ିଶା ଓ ଓଡ଼ିଶାବାସୀଙ୍କୁ ଗୌରବାନ୍ୱିତ କରିଚାଲିଛି ।

ଯନ୍ତ୍ରଶିଳ୍ପ ଯୁଗରେ ମଧ୍ୟ ହସ୍ତଶିଳ୍ପର ଚାହିଦା ଖୁବ୍‌ବେଶୀ । ଯନ୍ତ୍ରଶିଳ୍ପଠାରୁ ହସ୍ତଶିଳ୍ପର ସ୍ୱତନ୍ତ୍ରତା ଅଧିକ । କାରଣ ଯନ୍ତ୍ରଶିଳ୍ପରେ ବୃହତକାୟ ଯନ୍ତ୍ର, ବିଦେଶୀ କଳକବ୍‌ଜା, ପେଟ୍ରୋଲ, ଡିଜେଲ, ବିଦ୍ୟୁତ୍‌ଶକ୍ତି, କୋଠାବାଡି ଓ ବିପୁଳ ପୁଞ୍ଜିର ଆବଶ୍ୟକ ହୁଏ, କିନ୍ତୁ ହସ୍ତଶିଳ୍ପରେ ନିଜ ପାରିପାର୍ଶ୍ୱରେ ମିଳୁଥିବା କଞ୍ଚାମାଲ୍‌କୁ ଉପଯୋଗ କରି ସ୍ୱଳ୍ପ ବ୍ୟୟରେ ପ୍ରସ୍ତୁତ କରାଯାଇପାରେ । ଯନ୍ତ୍ରଶିଳ୍ପ ଭଳି ହସ୍ତଶିଳ୍ପରେ କୌଣସି ପରିବେଶ ପ୍ରଦୂଷଣର ଆଶଙ୍କା ନଥାଏ କିମ୍ବା ବହୁ ଶ୍ରମିକର ମଧ୍ୟ ଆବଶ୍ୟକ ନଥାଏ । ଯାହାଫଳରେ କି, ଶ୍ରମିକ ଅଶାନ୍ତି ଭଳି ସମସ୍ୟା ଉପୁଜି ନଥାଏ । ଏତଦ୍‌ବ୍ୟତୀତ ଯନ୍ତ୍ରଶିଳ୍ପ କୌଣସି ଦୈବୀ ଦୁର୍ବିପାକ ତଥା କୌଣସି ଯୁଦ୍ଧର ବିଭୀଷିକା ଫଳରେ ଧ୍ୱଂସାଭିମୁଖୀ ହୋଇଥାଏ, କିନ୍ତୁ ହସ୍ତଶିଳ୍ପ ବହୁଦିନ ବଞ୍ଚିପାରେ ।

ହସ୍ତଶିଳ୍ପ ସମସ୍ତଙ୍କର ଆବଶ୍ୟକତା ଓ ଆଦୃତ ସତ୍ତ୍ୱେ ମଧ୍ୟ ବେଳେବେଳେ ଘୋର ସଂକଟର ସମ୍ମୁଖୀନ ହୋଇଛି । ଯନ୍ତ୍ରଶିଳ୍ପର ପ୍ରତିଦ୍ୱନ୍ଦ୍ୱୀ ଓ ଶସ୍ତା ପ୍ଲାଷ୍ଟିକ୍ ସାମଗ୍ରୀକୁ ଆପଣେଇବା, ଦ୍ରୁତଗତିରେ ଜଙ୍ଗଲ କ୍ଷୟ ଯୋଗୁଁ କଞ୍ଚାମାଲ୍‌ର ଅଭାବ ହସ୍ତଶିଳ୍ପ ସାମଗ୍ରୀର ବିକ୍ରିବଟା ପାଇଁ ପ୍ରୋତ୍ସାହନର ଅଭାବ ଥିବାରୁ ପ୍ରତିବନ୍ଧକ ସୃଷ୍ଟି ହେଉଛି ।

ଯନ୍ତ୍ରଶିଳ୍ପର ପ୍ରାଦୁର୍ଭାବ ଓ ଚାହିଦା ବଢିବଢି ଗଲେ ମଧ୍ୟ ହସ୍ତଶିଳ୍ପର ଉପାଦେୟତା ଯେ କମ୍ ତାହା ନୁହେଁ । କେବଳ ଇଚ୍ଛାଶକ୍ତିର ଅଭାବ । ଜାତିର ପିତା ମହାତ୍ମା ଗାନ୍ଧୀ ସ୍ୱାଧୀନତା ଆନ୍ଦୋଳନ ସମୟରେ 'ଗ୍ରାମ ସ୍ୱରାଜ'ର ଯେଉଁ ଆହ୍ୱାନ ଦେଇଥିଲେ, ତାହା ଏହି କୁଟୀର ଶିଳ୍ପ ବା ହସ୍ତଶିଳ୍ପ ଉପରେ ହିଁ ପର୍ଯ୍ୟବସିତ ଥିଲା । ଯାହାଫଳରେ ଓଡ଼ିଶାରେ ଛୋଟ ଛୋଟ କୁଟୀରଶିଳ୍ପମାନ ଗଢି ଉଠିଥିଲା । ପରବର୍ତ୍ତୀ ସମୟରେ କେନ୍ଦ୍ର ସରକାର ଓ ରାଜ୍ୟ ସରକାରଙ୍କ ମିଳିତ ଉଦ୍ୟମରେ ସମବାୟ ଅନୁଷ୍ଠାନ ଗଠନ, ଶିଳ୍ପୀମାନଙ୍କୁ ଋଣ ଯୋଜନା, ଉତ୍ପାଦିତ ସାମଗ୍ରୀର ବିକ୍ରିବଟା ଏହି କାର୍ଯ୍ୟକ୍ରମର ଅଂଶବିଶେଷ । ସର୍ବଭାରତୀୟ ସ୍ତରରେ ନିଖିଳ ଭାରତ ହସ୍ତଶିଳ୍ପ ବୋର୍ଡ, ଭାରତ ହସ୍ତତନ୍ତ ବୋର୍ଡ, କ୍ଷୁଦ୍ରଶିଳ୍ପ ବୋର୍ଡ, କୟର ବୋର୍ଡ ଓ ସେଣ୍ଟ୍ରାଲ୍ ସିଲ୍‌କ୍ ବୋର୍ଡ ପ୍ରଭୃତି ନାମରେ କେତେଗୁଡ଼ିଏ ଅନୁଷ୍ଠାନ ଗଠିତ ହୋଇଛି । ଓଡ଼ିଶା ହସ୍ତଶିଳ୍ପ ସମବାୟ କର୍ପୋରେସନ୍, ତାଳଗୁଡ ସମବାୟ ସମିତି, କଳିଙ୍ଗ ସ୍ୱର୍ଣ୍ଣରୌପ୍ୟ ତାରକସି ପ୍ରତିଷ୍ଠାନ ଏବଂ ବିଭିନ୍ନ ଜିଲ୍ଲାରେ ପ୍ରତିଷ୍ଠିତ ଛୋଟବଡ ଏକାଧିକ ସମବାୟ ପ୍ରତିଷ୍ଠାନ କୁଟୀର ଶିଳ୍ପର ଉନ୍ନତି ଦିଗରେ କାର୍ଯ୍ୟରତ । ଏହିସବୁ ଅନୁଷ୍ଠାନ ଜରିଆରେ ପ୍ରତିଭାବାନ ଶିଳ୍ପୀ ଓ କାରିଗରମାନଙ୍କୁ ପ୍ରୋତ୍ସାହନ ଦିଆଯିବା ସଙ୍ଗେ ସଙ୍ଗେ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କାର ସାମଗ୍ରୀ ବିଦେଶକୁ ରପ୍ତାନୀ କରାଯାଇ ବୈଦେଶିକ ମୁଦ୍ରା ଅର୍ଜନ କରାଯାଉଛି ।

ସମଗ୍ର ଓଡ଼ିଶାରେ ଲକ୍ଷରୁ ଊର୍ଦ୍ଧ୍ୱ କାରିଗରଙ୍କୁ ନେଇ ୪୯ରୁ ଊର୍ଦ୍ଧ୍ୱ ହସ୍ତ ନିର୍ମିତ ବିଭିନ୍ନ କାରୁକାର୍ଯ୍ୟ କରାଯାଉଛି । ସରକାରୀ, ବେସରକାରୀ, ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କୁ ରାଜ୍ୟ ସରକାରଙ୍କ ହସ୍ତଶିଳ୍ପ ତାଲିମ୍ କେନ୍ଦ୍ର ଜରିଆରେ ତାଲିମ୍ ଦିଆଯାଉଛି। ଓଡ଼ିଶାର ହସ୍ତଶିଳ୍ପକୁ ରାଜ୍ୟ, ଦେଶ ବିଦେଶରେ ଆୟୋଜିତ ହେଉଥିବା ବିଭିନ୍ନ ମେଳା, ଶିଳ୍ପ ପ୍ରଦର୍ଶନୀ, ଯାତ୍ରା ଓ ଲୋକ ମହୋତ୍ସବ ମାଧ୍ୟମରେ ବ୍ୟାପକ ପ୍ରଚାର ପ୍ରସାର ଏବଂ ବିକ୍ରିବଟା କରାଯାଉଛି । କୌଳିକ ବୃତ୍ତିକୁ ଅନେକ ଦିନ ପର୍ଯ୍ୟନ୍ତ ବଞ୍ଚାଇ ରଖିବାକୁ ହସ୍ତଶିଳ୍ପୀ କାରିଗର ଓ ସେମାନଙ୍କ ପରିବାରକୁ ଭାରତ ସରକାରଙ୍କ ବାବା ସାହେବ ଆମ୍ବେଦକର ହସ୍ତଶିଳ୍ପୀ ବିକାଶ ଯୋଜନା ଏବଂ ରାଜୀବ ଗାନ୍ଧୀ ଶିଳ୍ପୀ ସ୍ୱାସ୍ଥ୍ୟବୀମା ଯୋଜନାରେ ଅନ୍ତର୍ଭୁକ୍ତ କରାଯାଉଛି । ଅତ୍ୟାଧୁନିକ ପ୍ଲାଷ୍ଟିକ ଯୁଗରେ 'କାଇଁଚ'ରେ ନିର୍ମିତ ଟୋକେଇ, ଚାଙ୍ଗୁଡି, ଟେବୁଲ କଭର୍, ପେନ୍‌ଷ୍ଟାଣ୍ଡ, ଅଣ୍ଡାପେଡି, ପେନ୍‌ସିଲ୍ ବାକ୍ସ, ଲ୍ୟାମ୍ପ ସେଟ୍, ମାଣପେଡି, ଫୁଲଦାନୀ, ସପ, ଟୋପି,





ଗୌଣି, ସେର, ପାଚିଆ ସମେତ ଦୁଇ ଶହରୁ ଉର୍ଦ୍ଧ୍ୱ ପ୍ରକାରର ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ପ୍ରସ୍ତୁତ କରି କେନ୍ଦ୍ରାପଡାର ହସ୍ତଶିଳ୍ପୀ ସ୍ୱୟଂ ସହାୟକ ଗୋଷ୍ଠୀ ଓ ରାଜ୍ୟ ସରକାରଙ୍କ ମିଳିତ ଉଦ୍ୟମରେ ଏହି କୁଟୀର ଶିଳ୍ପକୁ ଜୀବନ ଜୀବିକାର ମାଧ୍ୟମ ଭାବେ ସୃଷ୍ଟି କରିପାରିଛନ୍ତି ।

ଓଡ଼ିଶାର ବହୁ ହସ୍ତଶିଳ୍ପୀ ନିଜ ହସ୍ତଶିଳ୍ପ କଳାର ନିଖୁଣତା ପ୍ରଦର୍ଶିତ କରି ଜାତୀୟ ସ୍ତରରେ ପୁରସ୍କୃତ ହେବା ସହ National Merit Certificate ଏବଂ ରାଜ୍ୟସ୍ତରରେ ସେମାନଙ୍କ କୃତୀତ୍ୱକୁ ସମ୍ମାନିତ କରାଯାଇ State Merit Certificate' ପ୍ରଦାନ କରାଯାଇଛି । ଏଥିମଧ୍ୟରୁ ଜଣଙ୍କୁ 'ପଦ୍ମଭୂଷଣ,' ଦୁଇଜଣ ହସ୍ତଶିଳ୍ପୀଙ୍କୁ 'ପଦ୍ମଶ୍ରୀ'ରେ ସମ୍ମାନିତ କରି ଓଡ଼ିଶାକୁ ବିଶ୍ୱ ଦରବାରରେ ଗୌରବାନ୍ୱିତ କରିପାରିଛନ୍ତି । ଯାହା ଓଡ଼ିଶା ଓ ଓଡ଼ିଆଙ୍କ ପାଇଁ ଗର୍ବର ବିଷୟ ଏବଂ ଏହି ହସ୍ତଶିଳ୍ପ ଉତ୍କଳର କଳା ନୈପୁଣ୍ୟକୁ ପୃଥିବୀ ପ୍ରସିଦ୍ଧ କରିପାରିଛି, କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବିଜ୍ଞାନ ଯୁଗରେ ଯନ୍ତ୍ରଶିଳ୍ପର ଚାହିଦା ଖୁବ୍ ବେଶୀ । ଏହା ସୁଲଭ ଓ ସ୍ୱଳ୍ପ ସମୟରେ ଉତ୍ପାଦିତ ହେଉଥିବାରୁ ବହୁଳ ପ୍ରସାରିତ ହେବା ସ୍ୱାଭାବିକ । କିନ୍ତୁ ଯନ୍ତ୍ରଶିଳ୍ପ ଅପେକ୍ଷା ହସ୍ତଶିଳ୍ପର ଚାହିଦା ମଧ୍ୟ ଖୁବ୍ କମ୍ ନୁହେଁ, କିନ୍ତୁ ଇଚ୍ଛାଶକ୍ତି ଓ ପ୍ରୋତ୍ସାହନର ଅଭାବ । ଯେହେତୁ ଓଡ଼ିଶା ଭଳି ପ୍ରାକୃତିକ ସୌନ୍ଦର୍ଯ୍ୟଭରା ହସ୍ତଶିଳ୍ପ ପାଇଁ ବିସ୍ତୃତ କ୍ଷେତ୍ର ରହିଅଛି । ହସ୍ତଶିଳ୍ପ ପାଇଁ କଞ୍ଚାମାଲ ନିମନ୍ତେ ପ୍ରଚୁର ଜଙ୍ଗଲ, ସୁଦୀର୍ଘ ଉପକୂଳର ଅଭାବ ନାହିଁ, କେବଳ କାର୍ଯ୍ୟକାରୀ କଲେ ହେଲା । ଏହି ପ୍ରାକୃତିକ ସମ୍ପଦର ସୁବିନିଯୋଗ କଲେ ଅତୀତର ଉତ୍କଳ ନାମକୁ ସାର୍ଥକ କରିବ । ଦିନ ଥିଲା, ଦିନେ ଓଡ଼ିଆ ବୋହୂଟିଏ ବିଦେଶ ଯାଉଥିବା ତା'ର ସ୍ୱାମୀକୁ କହୁଥିଲା ସ୍ମୃତି ସ୍ୱରୂପ ପୋହଳା ଦ୍ୱୀପରୁ ଶାମୁକା ଆଣିବା ପାଇଁ । ଆଉ ଆଜି ଓଡ଼ିଶାକୁ ଆସୁଥିବା ବିଦେଶର ପର୍ଯ୍ୟଟକମାନେ ସ୍ୱଦେଶ ଫେରିଯିବା ବେଳେ ଓଡ଼ିଶା ଆଗମନର ସ୍ମୃତିକୁ ସମ୍ପଦ ରୂପେ ସାଇତି ନେଇଯିବାରେ ଲାଗିଛନ୍ତି ଓଡ଼ିଆ ପୁଅର ହାତ ତିଆରି ଗୋଟିଏ ପରେ ଗୋଟିଏ ମନଲୋଭା କାରୁକାର୍ଯ୍ୟ... । ତେଣୁ ଓଡ଼ିଶାର ହସ୍ତଶିଳ୍ପ ଯେ କେତେ ମହାନ୍ ଏଥିରୁ ଅନୁମେୟ ।

ନେହେରୁ ଯୁବ କେନ୍ଦ୍ର
ଗାଦବା ସାହି, ନବରଙ୍ଗପୁର– ୭୬୪୦୫୯

# ଆଶିଷ ଦିଅ ମାଆ

**କବିତା ମିଶ୍ର**

ମାଆ ଗୋ,
ଦେବୀ ଦୁର୍ଗେ ଦୁର୍ଗତି ନାଶିନୀ
ଜଗତମାତା, ସୃଷ୍ଟିକର୍ତ୍ତା
ପ୍ରଳୟର ଶକ୍ତି ସ୍ୱରୂପିଣୀ ।
ଆବାହନ କରୁଛୁ ମା'
ଆସ ଏ ଧରା ଧାମକୁ
ନୟନ ଫେଡି ଦେଖ ଥରେ
ଜଗତବାସୀଙ୍କୁ ।।
ଏ ଧରାପୃଷ୍ଠେ ପାପରାଶିର
ଝଡ ତ ବହୁଛି ।
ଅନ୍ୟାୟ ଅତ୍ୟାଚାର
ଏ ବସୁଧା ନିରବେ ସହୁଛି ।।।
କଳୁଷିତ ସମାଜରେ
ସର୍ବେ ଆଜି ମହିଷାସୁର,
ତାଙ୍କୁ ଜୟ କରିବାକୁ
ଶକ୍ତି ଅଛିବା କାହାର ?
ହେ ଦେବୀ
ମାହେଶ୍ୱରୀ, ଆଦ୍ୟାଶକ୍ତି
ଘେନାକର ଏ ମଣିଷର
ଅଶ୍ରୁଳ ପ୍ରଣତି ।
ହେ କରୁଣାମୟୀ ମା'
ଶକ୍ତିଦିଅ, ମୁକ୍ତିଦିଅ
ଝରିପଡୁ ଆଶିଷ ଥରେ
ଧର୍ମର ବିଜୟ ବାନା
ଉଡୁ ଆଜି
ପୃଥିବୀ ବକ୍ଷରେ,
ବିରାଜିତ ହେଉ
ଶାନ୍ତି ପ୍ରୀତି
ଭରିଯାଉ ବିଶ୍ୱପ୍ରେମ
ମାନବବାଦରେ ।।

ସେକ୍ଟର–୩/୫୫
ନୀଳାଦ୍ରି ବିହାର, ଭୁବନେଶ୍ୱର




# କେନ୍ଦୁଝରର କାଠ କଣ୍ଢେଇ ନୃତ୍ୟ

**ଫକିର ଚରଣ ରାଉତ**

ସାଂସ୍କୃତିକ ଭୂମି ଏଇ ଆମ ଓଡ଼ିଶା । ଏଠାରେ ଉତ୍କର୍ଷ କଳା ନିପୁଣତା ସଙ୍ଗେ ସଙ୍ଗେ ବାର ମାସରେ ତେର ପର୍ବ ଓଡ଼ିଶାର ସାମାଜିକ ପରମ୍ପରା ଓ ନୃତ୍ୟଗୀତ ମାଧ୍ୟମରେ ଆମେମାନେ କେନ୍ଦୁଝରଠାରେ ଦେଖିବାକୁ ପାଇବା କାଠ କଣ୍ଢେଇ ନୃତ୍ୟ । ଏଠାକାର ବୈଚିତ୍ର୍ୟମୟ ପ୍ରକୃତି ସାଙ୍ଗକୁ ନୈସର୍ଗିକ ଶୋଭାରେ ଭରପୂର ବନଗିରି ତଥା ଚଳଚଞ୍ଚଳ ଝରଣା ଓ ସରଳ ନିରାଡମ୍ବର ଆଦିବାସୀମାନଙ୍କ ଜୀବନଯାପନ ପ୍ରଣାଳୀ ଏଠାକାର ଆଦିମ ଅଧିବାସୀ ଜୁଆଙ୍ଗ ଭୂୟାଁ–କୋଲ୍ହ, ବାଥୁଡି, ସାଉଁଟି, ସାନ୍ତାଳ ପ୍ରଭୃତି ଆଦିବାସୀଙ୍କ ଜନଜୀବନକୁ ସଙ୍ଗୀତ ମୁଖର କରି ତୋଳିଛି । ମଣିଷ ଯେତେବେଳେ ଆନନ୍ଦ ଅନୁଭବ କରେ ସେ ସ୍ୱତଃ ପ୍ରବୃତ୍ତ ହୋଇ ନୃତ୍ୟ କରିଥାଏ । ନାଟକ ନୃତ୍ୟ ବାଦ୍ୟଗୀତ ସଂଯୋଜନାରେ ଆତ୍ମପ୍ରକାଶ କରିଥାଏ । କେନ୍ଦୁଝର ଜିଲ୍ଲାରେ 'ରାମଲୀଳା', 'ଘଣ୍ଟପାଟୁଆ', 'ଛଉ', 'କଣ୍ଢେଇ ନୃତ୍ୟ', 'କରମାନାଚ' ପ୍ରଭୃତି କେନ୍ଦୁଝର ଜିଲ୍ଲାର ଲୋକନାଟ୍ୟକୁ ପରିପୃଷ୍ଟ କରିଅଛି ।

କେନ୍ଦୁଝର ନାଟ୍ୟ ପରମ୍ପରା ମାଧ୍ୟମରେ କଣ୍ଢେଇ ନାଚ ସମଗ୍ର ଭାରତବର୍ଷରେ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ । କେନ୍ଦୁଝରର ବାଡି କଣ୍ଢେଇ ନୃତ୍ୟ ଓଡ଼ିଶା ତଥା ସମଗ୍ର ଭାରତବର୍ଷ ପାଇଁ କଣ୍ଢେଇ ନାଚ ପରମ୍ପରାକୁ ଏକ ମହନୀୟ ଦାନ । କେନ୍ଦୁଝର ଗଡର ଝରା ସମ୍ପ୍ରଦାୟର ଲୋକମାନେ କଣ୍ଢେଇ ନାଚ ପ୍ରଦର୍ଶନ କରି ଆସୁଥିଲେ । ବିଭିନ୍ନ ପର୍ବପର୍ବାଣି ତଥା ଯାତ୍ରା ଉତ୍ସବମାନଙ୍କରେ କଣ୍ଢେଇ ନଚାଇବା ଏକପ୍ରକାର ବେଉଷାଭାବେ ଗ୍ରହଣ କରିନେଇଥିଲେ । କେନ୍ଦୁଝର ବାଡି କଣ୍ଢେଇ ନୃତ୍ୟର ସ୍ରଷ୍ଟା ମକରଧ୍ୱଜ ବେହେରା ଓ ତା' ପରବର୍ତ୍ତୀ କାଳରେ ଝରାମାନଙ୍କଠାରୁ ତଥା ମକରଧ୍ୱଜ ବେହେରାଙ୍କଠାରୁ ତାଙ୍କର ଶିଷ୍ୟ ମାଗୁଣି କୁଅଁର ଝରାମାନଙ୍କର ଏହି ନାଟ୍ୟକଳା ପ୍ରତି ଆକୃଷ୍ଟ ହୋଇଥିଲେ । ପିଲାଦିନେ ଶ୍ରୀ ମାଗୁଣି କୁଅଁର ରାମଲୀଳାରେ ଜଣେ ସୁଦକ୍ଷ କଳାକାର ଓ ଅଭିନେତା ଥିଲେ । କେନ୍ଦୁଝର ଗଡରେ କାଠ ଖୋଦେଇ ମୂର୍ତ୍ତିରେ ଆକର୍ଷଣ ତାଙ୍କ ଜୀବନପଥକୁ ବଦଳାଇ ଦେଇଥିଲା । ତେଣୁ ସେ କାଠ ଖୋଦେଇ ମୂର୍ତ୍ତି ଗଠନରେ ଲାଗି ପଡିଲେ । ଶ୍ରୀ ମାଗୁଣି ଚରଣ କୁଅଁରଙ୍କ ହାତଗଢା କାଠକଣ୍ଢେଇ ମକରଧ୍ୱଜ ବେହେରାଙ୍କର କଣ୍ଢେଇ ନୃତ୍ୟ ପାଇଁ ବହୁତ ସମୟରେ ଉପଯୋଗୀ ହୋଇ ପଡୁଥିଲା ଓ ତାଙ୍କ କଣ୍ଢେଇ ନୃତ୍ୟରେ ବ୍ୟବହାର କରୁଥିଲେ । କ୍ରମେ ତାଙ୍କର କାଠି ବାଡି କଣ୍ଢେଇ ପ୍ରତି ଶ୍ରୀ ମାଗୁଣି ଚରଣ କୁଅଁର ଆକୃଷ୍ଟ ହୋଇ ୧୯୫୫ ମସିହାରେ ୫ଜଣ ସହକର୍ମୀଙ୍କୁ ନେଇ ଉତ୍କଳ ବିଶ୍ୱକର୍ମା କଳାକୁଞ୍ଜ ଗଠନ କରି କଣ୍ଢେଇ ନାଚକୁ ଆଧୁନିକ ଧାରାରେ ପରିବର୍ତ୍ତନ କରିପାରିଥିଲେ । ଝରାମାନେ କମ୍ ଆୟତନ ବିଶିଷ୍ଟ କ୍ଷେତ୍ର ପ୍ରସ୍ତୁତ କରି କଣ୍ଢେଇ ନାଚ କରୁଥିଲେ । କିନ୍ତୁ ମାଗୁଣି ଚରଣ କୁଅଁରଙ୍କ ଲୋକ ନାଟକ ଷ୍ଟେଜ୍ ସଦୃଶ ବିଭିନ୍ନ ଦୃଶ୍ୟ ସଜ୍ଜିତ କଳା, ନୀଳ, ହଳଦୀ ଓ ଲାଲ ରଙ୍ଗର ପର୍ଦ୍ଦା ବ୍ୟବହାର କରୁଥିଲେ । ବିଦ୍ୟୁତ ଆଲୋକ ସଜ୍ଜା ମଧ୍ୟ ଉକ୍ତ ମଞ୍ଚମାନଙ୍କରେ ସଂଯୋଗ କଲେ । ବିଭିନ୍ନ ରଙ୍ଗର ପୋଷାକ ପରିଚ୍ଛଦ ବନ୍ୟଜନ୍ତୁ ଇଲେକ୍ଟ୍ରି ଲାଇଟ୍ ସଂଯୋଗରେ ସୁସଜ୍ଜିତ କାଠ ପିତୁଳାକୁ ଅଧିକ ଜୀବନ୍ତ କରି ନଚାଇଲେ । ଉକ୍ତ ଷ୍ଟେଜ୍ ପାଖରେ ବାଦ୍ୟଯନ୍ତ୍ର କାଠ ପିତୁଳାକୁ ଅଧିକ ଜୀବନ୍ତ କରି ନଚାଇଲେ । ଷ୍ଟେଜ୍ ପାଖରେ ବାଦ୍ୟଯନ୍ତ୍ର ବଂଶୀ, କ୍ଲାରିଓନେଟ୍, ବେହେଲା, ହାରମୋନିୟମ ପ୍ରଭୃତି ବ୍ୟବହାର କଲେ । ଶ୍ରୀଯୁକ୍ତ କୁଅଁର ନିଜେ କାଠ କଣ୍ଢେଇ ନିର୍ମାତା ଥିବାରୁ ଛୋଟ କଣ୍ଢେଇଠାରୁ ୨/୩ଫୁଟ ଉଚ୍ଚତା ବିଶିଷ୍ଟ କଣ୍ଢେଇ ନଚାଇବାର ଯୋଗ୍ୟତା ହାସଲ କରିଛନ୍ତି । ତାଙ୍କ ପାଖରେ ଏକାଦିକ୍ରମେ ୨୦୦ରୁ ୩୦୦ ପର୍ଯ୍ୟନ୍ତ କଣ୍ଢେଇ ଗଚ୍ଛିତ ଥାଏ ।

ପ୍ରଥମ କରି ଝରାମାନେ ପୌରାଣିକ କଥାବସ୍ତୁକୁ ଆଧାର କରି ନାଟକ କୃଷ୍ଣାର୍ଜୁନ ଓ କଂସବଧ ପ୍ରଭୃତି ନାଟକ ସୀମିତ ଥିଲା । ମାତ୍ର ଶ୍ରୀ କୁଅଁର ରାମାୟଣ ମହାଭାରତ ତଥା ଆଧୁନିକତାର ନାଟକ ରଚନା ଗଦ୍ୟ ଓ ସଂଳାପମାନ ପ୍ରସ୍ତୁତ କରି ନିଜେ କଣ୍ଢେଇ ନଚେଇ ସଂଳାପମାନ ପରିବେଷଣ କରିଥାଆନ୍ତି । ସେ ବନ୍ୟଜନ୍ତୁ ପଶୁପକ୍ଷୀଙ୍କର ଭାବ ଓ ସ୍ୱରକୁ ନିଖୁଣ ଭାବେ ଦର୍ଶକଙ୍କ ଆଗରେ ପରିବେଷଣ କରିପାରନ୍ତି । ନିଜେ ସ୍ତ୍ରୀ ଓ ପୁରୁଷ କଣ୍ଠର ସ୍ୱରକୁ ଅନୁକରଣପୂର୍ବକ ପରିବେଷଣ କରି କଣ୍ଢେଇ ନଚାନ୍ତି । ସମାଜ ସଂସ୍କାର ପାଇଁ ମାଦକଦ୍ରବ୍ୟ ସେବନର ଅପକାରିତା ଆଧୁନିକତାର ନୈତିକତା ବିହୀନ ଭ୍ରଷ୍ଟାଚାର ଓ ପାରିବାରିକ ତଥା ସାମାଜିକ ମୂଲ୍ୟବୋଧ ସମ୍ବଳିତ କଥାବସ୍ତୁକୁ କଣ୍ଢେଇ ନାଚ ମାଧ୍ୟମରେ ପରିବେଷଣ କରିଥାଆନ୍ତି ।

ସେଥିପାଇଁ ସେ ଭାରତର ମହାମହିମ ରାଷ୍ଟ୍ରପତି ଓ ଉପରାଷ୍ଟ୍ରପତିଙ୍କଠାରୁ ପୁରସ୍କୃତ ହୋଇଛନ୍ତି । ଏହି ହୃତଗୌରବର ପରମ୍ପରାକୁ ଉଜ୍ଜୀବିତ କରିଥିବା ଶ୍ରୀଯୁକ୍ତ ମାଗୁଣି ଚରଣ କୁଅଁରଙ୍କୁ ଜନସାଧାରଣ ସେମାନଙ୍କର ସାହାଯ୍ୟର ହାତ ବଢେଇ ଦେଲେ ଓ ସରକାରଙ୍କ ତରଫରୁ ଏକ କଣ୍ଢେଇ ନାଟ ତାଲିମ ପ୍ରତିଷ୍ଠାନ କେନ୍ଦୁଝରଠାରେ ଖୋଲାଗଲେ ଓ ସମ୍ପୃକ୍ତ ବିଷୟରେ ଅଧିକ ଗବେଷଣା କଲେ ଏହି କଳା ନିଶ୍ଚିତ ଭାବେ ସମଗ୍ର ଭାରତବର୍ଷକୁ କେନ୍ଦୁଝରର ଦାନ ସ୍ୱରୂପ ପରିଗଣିତ ହୋଇପାରନ୍ତା ।

ସା: ମାଗୁରଗାଡିଆ
ପୋଅ: କେନ୍ଦୁଝରଗଡ
ଜିଲ୍ଲା: କେନ୍ଦୁଝର– ୭୫୮୦୦୧

# ଦେଖି ଆସେ ମୁଁ ତାହାକୁ

ଅନ୍ନପୂର୍ଣ୍ଣା ମିଶ୍ର

ଗୋପପୁର ଏବେ ଉଚ୍ଛୁଳି ପଡୁଛି
ନନ୍ଦରାଜା ଘରେ ପୁଅ
ଦେଖିବା ପାଇଁକି ଚାଲନ୍ତି ଗୋପିଏ
ମୋତେ ଭଲା ସଙ୍ଗେ ନିଅ ହେ
ଦେଖି ଆସେ ମୁଁ ତାହାକୁ
ମୋତେ ନଦିଏ କିମ୍ବା ରାହାକୁ ହେ
ଦେଖି ଆସେ ମୁଁ ତାହାକୁ ।

ଆସ ଗୋ ଗୋପିଏ ଫୁଲରୁ ଥୋକାଏ
ବୃନ୍ଦାବନୁ ନେବା ତୋଳି
ଅତି ଯତନରେ ଫୁଲକୁ ସଜାଇ
ବାନ୍ଧିଦେବା ନୂଆ ଦୋଳି ହେ
ସେହି ପୁଅକୁ ତହିଁରେ
ଶୋଇ ଝୁଲାଇବା ଧୀରେ ଧୀରେ ହେ
ସେଇ ପୁଅକୁ ତହିଁରେ ।



ଆଣି ଦିଅ ଏବେ ପୁଅକୁ ମୋତେ ମା'
ତଇଳ ଦିଏ ଲଗାଇ
ଅତି ଯତନରେ ଏନ୍ତୁଡି ନିଆଁରେ
ତାହାକୁ ସେକିବି ମୁହିଁ ହେ
ମହୁତୁଲେ ଭରି ଜଳ
ଆଣ ପିଆଇ ଦିଏ ଚଞ୍ଚଳ ହେ
ମହୁତୁଲେ ଭରି ଜଳ ।

କୋରା ଖଜା ଯାହା ବାଣ୍ଟୁଛ ମୋ ପାଇଁ
ସବୁଥିରୁ ଥାଅ ରଖି
ଏଇ ପୁଅଟିକୁ ସେକି ଶୋଇଦେଲେ
ଗୋଟି ଗୋଟି ଦେବି ଚାଖି ହେ
ମୋର ଶରଧା ତହିଁରେ
ଅନ୍ନପୂର୍ଣ୍ଣା ଏବେ ଏନ୍ତୁଡିରେ ହେ
ମୋର ଶରଧା ତହିଁରେ ।

ହରଚଣ୍ଡୀ ସାହି, ପୁରୀ

# ଶହେ ବର୍ଷରେ ସିନେମା

ଡକ୍ଟର କିଶୋର ମହାନ୍ତି

୧୯୧୩ ମସିହାରେ ନିର୍ମିତ ପ୍ରଥମ ନିର୍ବାକ୍ ଚଳଚ୍ଚିତ୍ର ରାଜା ହରିଶ୍ଚନ୍ଦ୍ରର ସୁଆଗମନ ସାଥୀରେ ଭାରତୀୟ ଚଳଚ୍ଚିତ୍ର ଶିଳ୍ପରେ କ୍ରମାନ୍ୱୟ ଭାବରେ ଏକ ପରିବର୍ତ୍ତନ ଲକ୍ଷ୍ୟ କରାଯାଇଥିଲା । କିନ୍ତୁ ମୂକ ଚଳଚ୍ଚିତ୍ର ନିର୍ମାଣ ବହୁଳ ପରିମାଣରେ କରାଯାଇ ନଥିଲେ ହେଁ ବୈଜ୍ଞାନିକମାନଙ୍କ କଳା କୌଶଳ, ବୈଷୟିକବିତ୍‌ମାନଙ୍କର ନୂତନ ଚିନ୍ତାଧାରରେ ନବୀନତ୍ୱ ଅଧିକ ଚଳଚ୍ଚିତ୍ର ନିର୍ମାଣରେ ସହାୟ ହୋଇ ପଡ଼ିଲା । କେବଳ ନିର୍ବାକ୍ ଚଳଚ୍ଚିତ୍ର ପ୍ରଦର୍ଶନରେ ଚାରିପାଞ୍ଚ ବର୍ଷ ପରେ ସବାକ୍ ଚଳଚ୍ଚିତ୍ର ନିର୍ମାଣର ଭିତ୍ତିଭୂମି ପ୍ରତିଷ୍ଠା ହୋଇ ଯାଇଥିଲା । ଆମ ଦେଶରେ ସର୍ବପ୍ରଥମ ସବାକ୍ ଚଳଚ୍ଚିତ୍ର 'ଆଲାମଆରା' ୧୯୩୧ ମସିହାରେ ହିଁ ନିର୍ମିତ ହୋଇଥିଲା । କହିବାକୁ ଗଲେ 'ଆଲାମଆରା' ଚଳଚ୍ଚିତ୍ର ନିର୍ମାଣ ହିଁ ଭାରତର ଚଳଚ୍ଚିତ୍ର ଶିଳ୍ପ ଉଦ୍ୟୋଗୀଙ୍କ ମନରେ ନୂଆ ଆଶାର କୀରଣ ସଂଚାର କରିଥିଲା ଓ ଏମାନେ ନିଜର ପୁଂଜି ବିନିଯୋଗ କରି ଉତ୍କୃଷ୍ଟ ସବାକ୍ ଚଳଚ୍ଚିତ୍ର ନିର୍ମାଣରେ ମନୋନିବେଶ କରିଥିଲେ । ଏଥି ପୂର୍ବରୁ ନିର୍ବାକ୍ ଚଳଚ୍ଚିତ୍ର ପ୍ରଦର୍ଶନ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି ହୋଇଥିଲା କାରଣ ସେତେବେଳେ ରଙ୍ଗମଞ୍ଚର ନାଟକ ପ୍ରଦର୍ଶନ ଚରମ ସୀମାରେ ପହଞ୍ଚି ଯାଇଥିଲା । ଏ ପ୍ରକାର କୌଶଳ ମୂକ ଚଳଚ୍ଚିତ୍ର କ୍ଷେତ୍ରରେ ବାଧା ଉପୁଜାଇଲା ଓ ସେଇ ସମୟରେ ସବାକ୍ ଚଳଚ୍ଚିତ୍ର ନିର୍ମାଣ କ୍ଷେତ୍ରରେ ନୂତନ ବୈଷୟିକ କୌଶଳର ପ୍ରୟୋଗ କରାଯିବା ସଙ୍ଗେ ସଙ୍ଗେ ବିଭିନ୍ନ ପରୀକ୍ଷାନିରୀକ୍ଷା ଭିତରେ ଚଳଚ୍ଚିତ୍ର ନିର୍ମାଣ କରାଗଲା । ଆରଦେଶର ଇରାନୀଙ୍କ ଆଲାମଆରା ଚଳଚ୍ଚିତ୍ରରେ ପର୍ଦ୍ଦାର ପଶ୍ଚାଦ ଭାଗରେ ସଂଳାପ ଶୁଣିବାକୁ ମିଳୁଥିଲା, ୧୯୩୨ ମସିହାରେ ଭି. ଶାନ୍ତାରାମଙ୍କର 'ସତ୍ୟବାଦୀ ରାଜା ହରିଶ୍ଚନ୍ଦ୍ର' ପ୍ରଥମ ସବାକ୍ ଚଳଚ୍ଚିତ୍ର ନିର୍ମାଣ ହେଲା– ଯେଉଁଥିରେ ଚିତ୍ରସହ ସଂଳାପ ଯୋଡ଼ି ହୋଇ ଯାଇଥିଲା । ଏଥିରେ ଚଳଚ୍ଚିତ୍ରର ଶିଳ୍ପୀମାନେ ଅଭିନୟ ସହ ସଂଳାପ ମଧ୍ୟ ଏକ ସଙ୍ଗରେ ଉଚ୍ଚାରଣ କରି ପାରୁଥିଲେ । ଏହି ଚଳଚ୍ଚିତ୍ରଟି ସେହି ସମୟର ସର୍ବାଧିକ ଚର୍ଚ୍ଚିତ ଚଳଚ୍ଚିତ୍ର ଥିଲା । ଏହି ବର୍ଷ ମଦନ ଥିଏଟର୍ସରେ ନିଜର ପ୍ରଥମ ଚିତ୍ର 'ବିଶ୍ୱମଂଗଳ'କୁ ରଂଗୀନ କରିବା ପାଇଁ ବିଦେଶକୁ ପ୍ରେରଣ କରାଗଲା । ତାର ଠିକ୍ ଗୋଟିଏ ବର୍ଷ ପରେ ଭି. ଶାନ୍ତାରାମ ନିଜର ଫିଲ୍ମ ସୈରନ୍ଧ୍ରୀ ରଂଗୀନ କରିବା ଆଶାରେ ନୂଆ କୌଶଳ ପ୍ରୟୋଗ କଲେ କିନ୍ତୁ ରଂଗୀନ ହୋଇ ପାରିଲାନି । ସେଥିରେ ସେ ଅଧିକ ଖର୍ଚ୍ଚାନ୍ତ ମଧ୍ୟ ହୋଇଥିଲେ । ସେହିବର୍ଷ ମଧ୍ୟ ଦେବକୀ ବୋଷଙ୍କ ନିର୍ଦ୍ଦେଶିତ 'ପୁରନ୍ ଭଗତ' ଦର୍ଶକମାନଙ୍କୁ ଅଧିକ ଭାବରେ ଉତ୍ସାହିତ କରିଥିଲା । ଏହି ସମୟରେ ଆସିଥିଲା ଦାଦା ସାହେବ ଫାଲ୍‌କେ, ଆରଦେଶର ଇରାନୀ, ଭି. ଶାନ୍ତାରାମ, ଇ. ବିଲମୋରିଆ, ଦେବକୀ ବୋଷ, ପ୍ରଥମେଶ ବରୁଆ, ହିଂମାଂଶୁ ରାୟ, ଓ୍ୱାଡ଼ିଆ, ନାଡ଼ିଆ, କେ.ଏଲ. ସେହେଗଲ, ଜଦୁନ ବାଇ, କାନନ୍‌ବାଲା, ଆରସି ବରାଳ, ସୋହରାବଙ୍କ ସମେତ ଚଳଚ୍ଚିତ୍ର ନିର୍ମାଣର କୁଶଳୀ ବିଶ୍ୱକର୍ମାମାନେ । ଏଇ ଦିଗ୍‌ଗଜମାନେ ହିଁ ୧୯୩୯ ମସିହାରେ ଭାରତୀୟ ଫିଲ୍ମର ରଜତ ଜୟନ୍ତୀ ଉତ୍ସବ ମହାସମାରୋହରେ ଅନୁଷ୍ଠିତ କରାଇବାରେ ସକ୍ଷମ ହୋଇଥିଲେ । ଏହା ପୂର୍ବରୁ ୧୯୩୨ରେ ଫିଲ୍ମ ସହ ଜଡ଼ିତ ସମସ୍ତ ବ୍ୟକ୍ତିବିଶେଷ ଦି.ଇଣ୍ଡିଆନ ମୋସନ୍ ପିକ୍‌ର୍ସ ନାମକ ଏକ ସଂଗଠନ ଗଢ଼ିଲେ । ଏଇ ପରିପ୍ରେକ୍ଷୀରେ ଅନ୍ୟ ଏକ ଉଚ୍ଚ ପ୍ରଶଂସିତ ଚିତ୍ର 'ବଡ଼ିଦିଦି', 'କପାଲକୁଣ୍ଡଲା' 'ଭକ୍ତ ପ୍ରହଲ୍ଲାଦ' ଆଉ 'ଇଂଦ୍ରସଭା' ପ୍ରମୁଖ ଥିଲା । 'ଇଂଦ୍ରସଭା' ଚଳଚ୍ଚିତ୍ରରେ ପ୍ରାୟତଃ ୭୧ଟି ସଂଗୀତ ଥିଲା, ଯାହାର ଏ ଯାବତ୍ ରେକର୍ଡ଼ କେହି ଭାଙ୍ଗି ନାହାନ୍ତି । ସର୍ବମୋଟ୍ ଏଇ ଦଶକରେ ଭାରତୀୟ ଚଳଚ୍ଚିତ୍ରର ବାଲ୍ୟଜୀବନ ବହୁତ ସୁନ୍ଦର ତଥା ସାବଲୀଳ ଭାବରେ ଅତିକ୍ରାନ୍ତ ହୋଇଥିଲା ।

◆◆◆




ତିରିଶ ଓ ଚାଳିଶ ଦଶକରେ ଫିଲ୍ମର ମୁଖ୍ୟ ଧାରା ଥିଲା ଦେଶପ୍ରେମ । ସାମାଜିକ ଉତ୍ଥାନର ବାର୍ତ୍ତା ଥିଲା ଚଳଚ୍ଚିତ୍ରଗୁଡ଼ିକରେ । ବର୍ତ୍ତମାନ ସୁଦ୍ଧା ଯେତୋଟି ଭାରତୀୟ ହିନ୍ଦୀ ଚଳଚ୍ଚିତ୍ର ନିର୍ମାଣ ହେଲାଣି, ତାହା ଆମ ଚଳଚ୍ଚିତ୍ର ଶିଳ୍ପକୁ ଅଧିକ ସୌଷ୍ଠବ କରି ରଖିଛି । ଅସୁମାରୀ ହିନ୍ଦୀ ଚଳଚ୍ଚିତ୍ର ଆମ ଶିଳ୍ପ ଜଗତରେ ଯୁଗାନ୍ତକାରୀ ଇତିହାସ ସୃଷ୍ଟି କରିଛନ୍ତି । ୧୯୩୦ ଦଶକରେ ମୂକ ଚଳଚ୍ଚିତ୍ରର ଆଗମନ ସମସ୍ତ ଦର୍ଶକଙ୍କ ପାଇଁ ଏକ ବିରାଟ ଉପହାର କହିଲେ ଅତ୍ୟୁକ୍ତି ହେବ ନାହିଁ । 'ରାଜା ହରିଶ୍ଚନ୍ଦ୍ର' ପରେ ମୂକ ଚଳଚ୍ଚିତ୍ର ମଧ୍ୟ ଖୁବ୍ ଗତିଶୀଳ ହୋଇଥିଲା । ୧୯୩୦ରେ ୧୭୨ଟି ଚଳଚ୍ଚିତ୍ର ନିର୍ମାଣ ହେଲା । ୧୯୩୧ରେ ସବାକ୍ ଚଳଚ୍ଚିତ୍ର 'ଆଲମଆରା'ର ମୁକ୍ତିଲାଭ କରିଥିଲେ ହେଁ ଦେଶରେ ୨୦୭ଟି ମୂକ ଚଳଚ୍ଚିତ୍ର ନିର୍ମାଣ ହୋଇ ଦର୍ଶକମାନଙ୍କର ମନୋରଂଜନରେ ସହାୟକ ହୋଇ ପାରିଥିଲା । ସେହିପରି ୧୯୩୨ରେ ୮୮ଟି, ୧୯୩୩ରେ ୩୯ଟି ଏବଂ ୧୯୩୭ ମସିହାରେ ୭ଟି ଚଳଚ୍ଚିତ୍ର ନିର୍ମାଣ ପରେ ପରେ ନିର୍ବାକ୍ ଚଳଚ୍ଚିତ୍ରର ଯବନିକା ପଡ଼ିଯାଇଥିଲା । କିନ୍ତୁ ମୂକ ଚଳଚ୍ଚିତ୍ର ନିର୍ମାତାମାନେ ସେଇ ଧାରାକୁ ଅବ୍ୟାହତ ରଖିବା ପାଇଁ ପରେ ସେଥିରେ ଶବ୍ଦ ସଂଳାପ ପ୍ରୟୋଗ କରି ସିନେମା ହଲ୍‌ରେ ଚଳାଇବା ପାଇଁ ଉଦ୍ୟମ ଜାରି ରଖିଥିଲେ । କିନ୍ତୁ ଏ ପ୍ରକାର ପ୍ରଚେଷ୍ଟାରେ ସେମାନେ ବିଶେଷ ସଫଳତା ହାସଲ କରିପାରି ନଥିଲେ ।

ଚେତନ ଆନନ୍ଦଙ୍କ ଦ୍ୱାରା ପ୍ରସ୍ତୁତ 'ନୀଚାନଗର' ଚଳଚ୍ଚିତ୍ରର ସଫଳତା ସଂପର୍କରେ ଏବେବି ଦର୍ଶକମାନେ ଦୃଢ଼ କଣ୍ଠରେ ସ୍ୱୀକାର କରିବେ । ଏହା ଏକ ଅବିସ୍ମରଣୀୟ ଚଳଚ୍ଚିତ୍ର । ଚାଳିଶ ଦଶକରେ ଦୁଇଟି ପ୍ରମୁଖ ଅବଦାନ ଏବେବି ସ୍ମୃତିପଟରେ ଲାଖି ରହିଛି, ତାହା ହେଲା ପ୍ରଥମ କରି ଏଇବର୍ଷ ରାଜକାପୁର, ଦିଲୀପ କୁମାର ଆଉ ଦେବାନନ୍ଦ ଚଳଚ୍ଚିତ୍ର ଆକାଶରେ ଉଜ୍ଜଳ ନକ୍ଷତ୍ର ଭାବେ ଦେଖାଦେଲେ ଆଉ ଏଇ ଦଶକରେ ରାଜକାପୁର ଆର କେ ବ୍ୟାନର ପ୍ରତିଷ୍ଠା କଲେ । ପଚାଶ ଦଶକରେ କଲ୍ଟ କ୍ଲାସିକ୍ ଫିଲ୍ମ ବହୁଳ ଭାବରେ ପ୍ରଦର୍ଶିତ ହେଲା, ସେଥିରୁ 'ଆୱାରା', 'ଦୋ ବିଘା ଜମିନ୍', 'ମଦର ଇଣ୍ଡିଆ', 'ଦେବଦାସ', 'ପ୍ୟାସ' ଏବଂ 'ଶ୍ରୀ ୪୨୦' ପରି ଲୋକପ୍ରିୟ ମନୋରଂଜନଧର୍ମୀ ଚଳଚ୍ଚିତ୍ର ନିର୍ମାଣ ହେଲା । ଏହି ସମୟରେ ନୂଆ ନୂଆ ନିର୍ଦ୍ଦେଶକମାନଙ୍କର ଆବିର୍ଭାବ ଘଟିଲା । ମହବୁବ୍ ଖାନା, ଗୁରୁଦତ୍ତ, ବିମଲ ରାୟ, ବି.ଆର ଚୋପଡା, ରାଜକାପୁର ଆଦି ନିର୍ଦ୍ଦେଶକମାନେ ଏହି ସମୟରେ ଥିଲେ ଚଳଚ୍ଚିତ୍ର ଜଗତର ହୀରା, ନୀଳା ମୋତି ମାଣିକ । ଇଏ ଏମିତି ଏକ ସମୟ ଥିଲା, ଯେଉଁଠି ଦର୍ଶକମାନେ ନିର୍ଦ୍ଦେଶକଙ୍କ ନାମ ଶୁଣି ଚଳଚ୍ଚିତ୍ର ଦେଖିବାକୁ ସିନେମା ହଲ୍‌କୁ ଯାଉଥିଲେ । ଏହି ନିର୍ଦ୍ଦେଶକମାନଙ୍କର ବୈଶିଷ୍ଟ୍ୟ ତଥା ଗୁଣବତ୍ତା ଥିଲା ଯେ, ଏମାନଙ୍କ ନିର୍ଦ୍ଦେଶନାରେ ବାସ୍ତବତାସହ କଳ୍ପନା ଶକ୍ତିର ସମିଶ୍ରଣ ଘଟିଥିଲା । ଏମାନେ ନିର୍ମାଣରେ ବୈଷୟିକ ଦିଗ ପ୍ରତି ଅଧିକ ଗୁରୁତ୍ୱ ଦେଉଥିଲେ । ଏଇ ଶୁଭମୟ ମୁହୂର୍ତ୍ତରେ ଫିଲ୍ମ ଫେୟାର ଆୱାର୍ଡ ମଧ୍ୟ ପ୍ରବର୍ତ୍ତିତ ହେଲା । ଭାରତୀୟ ଚଳଚ୍ଚିତ୍ର ଇତିହାସରେ ଏକ ସ୍ମରଣୀୟ ଘଟଣା ଥିଲା ୧୯୫୨ ମସିହାରେ ଅନୁଷ୍ଠିତ ପ୍ରଥମ ଆନ୍ତଃରାଷ୍ଟ୍ରୀୟ ଫିଲ୍ମ ସମାରୋହ । ଷଷ୍ଠ ଦଶକର ପ୍ରାରମ୍ଭରେ ଆସିଫ୍‌ଙ୍କର କାଳଜୟୀ ଚିତ୍ର ମୁଗଲ-ଏ-ଆଜାମ, ବେଶ୍ ଚର୍ଚ୍ଚିତ ଚଳଚ୍ଚିତ୍ର ଭାବରେ ଖ୍ୟାତିଲାଭ କରିଥିଲା । 'କାନୁନ', 'ଗଙ୍ଗା ଯମୁନା, 'ଗାଇଡ୍', 'ସାହିବ୍ ବିବି ଔର ଗୁଲାମ', 'ଜୁଏଲ୍ ଥିଫ୍', 'ସତ୍ୟକାମ', 'ଆରାଧନା' ଇତ୍ୟାଦି ଚଳଚ୍ଚିତ୍ର ଉପରେ ଦୃଷ୍ଟି ନିକ୍ଷେପ କଲେ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଏହାର ବିଷୟବସ୍ତୁ ପ୍ରାୟତଃ ସମାନ ବୋଲି ସମୀକ୍ଷକମାନେ କହିଥାନ୍ତି । ଏଇସବୁ ଚଳଚ୍ଚିତ୍ରଗୁଡ଼ିକରେ ନିଜର ନିଜର ସକ୍ଷମ ଅନୁସାରେ କିପରି ଦର୍ଶକମାନଙ୍କର ଅତି ନିକଟତର ହେବେ ସେଥିପ୍ରତି ଅଧିକ ଧ୍ୟାନ ଦେଇଥିଲେ । ତଥାପି ଏଇସବୁ ଚଳଚ୍ଚିତ୍ରଗୁଡ଼ିକ ଦର୍ଶକମାନଙ୍କର ମନୋରଂଜନରେ ଖୋରାକ ଯୋଗାଇବାରେ ସକ୍ଷମ ହୋଇପାରିଥିଲା । ଯେଉଁଠିକି କ୍ଲାସିକ୍ ଫିଲ୍ମ 'ଗାଇଡ' ଦର୍ଶକଙ୍କୁ ବିଭୋର କରି ଦେଇଥିଲା । ଶମି କପୁରଙ୍କର ନାଚକୁଦର ଅଭିନୟ ଏବଂ ଧର୍ମେନ୍ଦ୍ରଙ୍କର ଆକ୍ସନ ବିଶେଷ ଭାବରେ ଦର୍ଶକମାନଙ୍କ ମନକୁ କିଣି ନେଇ ପାରିଥିଲା । ଚଳଚ୍ଚିତ୍ର 'ଫୁଲ ଔର ପଥର'ରେ ଧର୍ମେନ୍ଦ୍ର ଜଣେ ଏକ ରୋମାଣ୍ଟିକ ନାୟକ ଭାବରେ ଚଳଚ୍ଚିତ୍ରରେ ପାଦ ଦେଇ ସମସ୍ତଙ୍କ ମନକୁ ଆକର୍ଷି ନେଇଥିଲେ । ସେହି ସମୟରେ ମଧ୍ୟ ଆମ ରୂପେଲୀ ପରଦାରେ ଅଭିନେତା ରାଜେଶ ଖାନ୍ନା ମଧ୍ୟ ଦେଖା ଦେଇଥିଲେ, ଯୁବପ୍ରାଣ ମନରେ ଅସଂଖ୍ୟ ସ୍ୱପ୍ନ ବୁଣିଦେଲେ । ଏହି ସମୟରେ ଅମିତାଭ ବଚନ ଓ ମନୋଜ କୁମାର ଚଳଚ୍ଚିତ୍ର ଜଗତରେ ସୁନାମଧନ୍ୟ କଳାକାର । ମୃଣାଳ ସେନ୍‌ଙ୍କର କଳାଚିତ୍ର 'ଭୁବନସୋମ' ଯେମିତି ଏକ ନୂତନ ମୋଡ଼ ନେଲା ସିନେମା ଜଗତରେ । କେବଳ ଅଭିନୟ, ନିର୍ଦ୍ଦେଶନା କ୍ଷେତ୍ରରେ ନୁହେଁ ସଂଗୀତରେ ମଧ୍ୟ ଚିରସବୁଜ ମଧୁସ୍ରାବୀ ସଂଗୀତ ଦର୍ଶକ ତଥା ଶ୍ରୋତାମାନଙ୍କୁ ବିଶେଷ ଭାବରେ ଆକୃଷ୍ଟ କଲା । ସେମାନଙ୍କ ଭିତରେ ସଂଗୀତ ନିର୍ଦ୍ଦେଶନା ଦେଇଥିବା ନିର୍ଦ୍ଦେଶକ ଲକ୍ଷ୍ମୀକାନ୍ତ ପ୍ୟାରେଲାଲଙ୍କ ସଂଗୀତ ଯେତିକି ଚିତ୍ତାକର୍ଷକ ଥିଲା ସେତିକି ଶ୍ରୁତିମଧୁର ଥିଲା । ସତୁରୀ ଦଶକରେ 'ଜନି ମେରା ନାମ', 'ପୁରବ୍ ଔର ପଶ୍ଚିମ', 'ୟାଦୋଁ କୀ ବାରାତ' 'ପାକିଜା'




ଓ 'ହିରାଂଝା' ଭଳି ଲୋକପ୍ରିୟ ଚଳଚ୍ଚିତ୍ର କେବଳ ଜନମନକୁ କିଣି ନେଲା ତା ନୁହେଁ– ନୂଆ ନୂଆ ନିର୍ଦ୍ଦେଶକଙ୍କୁ ଚଳଚ୍ଚିତ୍ର ନିର୍ଦ୍ଦେଶନା ଦେବାରେ ଉତ୍ସାହିତ କଲା । ଏହି ସମୟରେ ସବୁଠାରୁ ଅଧିକ ଗୁଣାତ୍ମକ ତଥା ବକ୍ସ ଅଫିସ୍ ହିଟ୍ ଫିଲ୍ମମାନ ନିର୍ମାଣ କରାଗଲା । କିନ୍ତୁ ନିର୍ଦ୍ଦେଶକ ହୃଷିକେଶ ମୁଖାର୍ଜୀ ଚଳଚ୍ଚିତ୍ର ଜଗତରେ ଏକ ନାମକରା ନିର୍ଦ୍ଦେଶକ ଭାବରେ ନିଜର ସ୍ଥାନ ବାଛି ନେଇଥିଲେ । ହୃଷୀଦା ଏଇ ଦଶକରେ ଚଳଚ୍ଚିତ୍ର ପ୍ରେମୀମାନଙ୍କ ପାଇଁ ସୁନ୍ଦର ସୁନ୍ଦର ଚଳଚ୍ଚିତ୍ର ନିର୍ମାଣ କରି ବେଶ୍ ପ୍ରଶଂସାର ପାତ୍ର ହେଲେ । ତାଙ୍କ ନିର୍ମିତ ଫିଲ୍ମଗୁଡ଼ିକରେ ଛୋଟ ଛୋଟ କଳାକାରମାନଙ୍କ ଉପରେ ବେଶ୍ ଗୁରୁତ୍ୱ ଆରୋପ କଲେ ଓ ଭଲ ଚିତ୍ର ନିର୍ମାଣ କରିବା ଫଳରେ ହିନ୍ଦୀ ଚଳଚ୍ଚିତ୍ର ଖୁବ୍ ବଳିଷ୍ଠ ହେଲା । ସେହିପରି ନିର୍ଦ୍ଦେଶକ ନିର୍ମାତା ବାସୁ ଚାଟାର୍ଜୀ ସୁନାମଧନ୍ୟ ନିର୍ଦ୍ଦେଶକ ଭାବରେ ବେଶ୍ ପରିଚିତ । ସେ ଛୋଟ ଫିଲ୍ମରେ ବଡ଼ ବଡ଼ କଳାକାରମାନଙ୍କୁ ସ୍ଥାନ ଦେଇ ବେଶ୍ ଭଲ ଚିତ୍ର ନିର୍ମାଣ କରିବାରେ ସଫଳତା ପ୍ରାପ୍ତି ହୋଇଥିଲେ । ଖୁବ୍ ସ୍ୱଳ୍ପ ଅର୍ଥ ବ୍ୟୟ କରି ଚଳଚ୍ଚିତ୍ରରେ ବେଶ୍ କିଛି ମୋଟା ଅଙ୍କର ଅର୍ଥ ନିଜ ଚଳଚ୍ଚିତ୍ରରୁ ସେ ପାଇଥିଲେ । ସେହିପରି ଅଧିକ ବ୍ୟୟବହୁଳ ଚଳଚ୍ଚିତ୍ର ହେଲା 'ଶୋଲେ' ଓ ସନ୍ତୋଷୀ ମା' । ସଲିମ ଜାବେଦ ଆଉ ପଞ୍ଚମ ଦା ଚଳଚ୍ଚିତ୍ର କ୍ଷେତ୍ରରେ ଅଧିକ ନାମକରା ଲେଖକ ଓ ସଙ୍ଗୀତ ନିର୍ଦ୍ଦେଶକ । ବଡ଼ ବଡ଼ ନାୟକ ନାୟିକାମାନଙ୍କର କାଷ୍ଟିଙ୍ଗ୍ ସହ, ମନୋରଂଜନଧର୍ମୀ ଚଳଚ୍ଚିତ୍ର 'ଶୋଲେ' ଏକ ଇତିହାସ ସୃଷ୍ଟି କରୁଥିଲାବେଳେ, 'ଜୟ ସନ୍ତୋଷୀ ମା' ଦର୍ଶକଙ୍କୁ ମଧ୍ୟ ସେହି ପରିମାଣରେ ଆକୃଷ୍ଟ କରାଇବାର ଦୃଢ଼ ଦାବି ରଖିଥିଲା । ସଲିମ–ଜାବେଦ ଯୋଡ଼ି ଫିଲ୍ମ ଲେଖକ ଭାବରେ ଯେଉଁ ସୁନାମ ଅର୍ଜନ କରିବାର କ୍ଷମତା ଅର୍ଜନ କରି ପାରିଥିଲେ, ତାଙ୍କୁ ଆଉ ଅନ୍ୟ କୌଣସି ଲେଖକ ଟପିକରି ଯାଇପାରୁ ନଥିଲେ । ତାହା ଆଜି ବି ବିସ୍ମୟ ସୃଷ୍ଟି କରେ । ସେହିପରି ଭାବରେ ପଞ୍ଚମ ଦା ବା ରାହୁଲ ଦେବ ବର୍ମନ ଯେଭଳି ଭାବରେ ଚଳଚ୍ଚିତ୍ର ପାଇଁ ସଂଗୀତ ସଂଯୋଜନା କଲେ, ଆଜି ବି ସେଇ ଗୀତଗୁଡ଼ିକ ଦର୍ଶକଙ୍କୁ ମୁଗ୍ଧ ଓ ଚକିତ କରିଦିଏ । ସଂଜୀବ ଦାଙ୍କର ବଳିଷ୍ଠ ହୃଦୟସ୍ପର୍ଶୀ ଅଭିନୟ ଚଳଚ୍ଚିତ୍ର ପ୍ରେମୀଙ୍କୁ ଅନେକବାର ଆକୃଷ୍ଟ କରିଛି । 'ଶୋଲେ' ଚିତ୍ରରେ ତାଙ୍କର ବାସ୍ତବ ଅଭିନୟ ଏବେବି ଦର୍ଶକ ମନରେ ରୋମାଞ୍ଚ ଖେଳାଇଦିଏ । ଅଶୀ ଦଶକରେ 'ଏକ ଦୁଜେ କେଲିୟେ', 'ନମକ ହଲାଲ', 'କର୍ମା', 'କୁଲି', 'ମିଷ୍ଟର ଇଣ୍ଡିଆ', 'ରାମଲଖନ' ଆଦି ଚାଲୁ ମସଲାରେ ଭରପୂର ସାଧାରଣ ଚଳଚ୍ଚିତ୍ର ବି ବକ୍ସଅଫିସ୍ ହିଟ୍ କରିବାର ଯୋଗ୍ୟତା ହାସଲ କରି ପାରିଥିଲା । ଆଜିର କଳାକାର ଅମୀର ଆଉ ସଲମାନଙ୍କର ଆବିର୍ଭାବ ଏଇ ସମୟରେ ହିଁ ହୋଇଥିଲା । ଏହି ଦଶକର ଶେଷ ଭାଗରେ ଚଳଚ୍ଚିତ୍ର ଜଗତର ମଉଡ଼ମଣି, ନିର୍ଦ୍ଦେଶକ କଳାକାର ଓ ନିର୍ମାତା ରାଜକାପୁରଙ୍କ ଦେହାନ୍ତ ଚଳଚ୍ଚିତ୍ର ଜଗତରେ ଗଭୀର ଦୁଃଖର ଛାୟା ଖେଳାଇ ଦେଇଥିଲା । 'ତେଜାବ', 'ରାମଲଖନ' ଚଳଚ୍ଚିତ୍ରରେ ଅଭିନେତ୍ରୀ ମାଧୁରୀ ବେଶ୍ ଲୋକପ୍ରିୟ ହୋଇ ଉଠିଲେ । ଏହା ପରେ ପ୍ରାୟ ଗୋଟିଏ ଦଶକ ଧରି ସେ ଫିଲ୍ମ ଇଣ୍ଡଷ୍ଟ୍ରିରେ ନଂବର ୱାନ ହିରୋଇନ୍ ଭାବରେ ପରିଚିତ ହେଲେ । ଅଭିନେତା ଜିତେନ୍ଦ୍ର ସାତ ବର୍ଷ ଧରି ଦକ୍ଷିଣାଞ୍ଚଳରେ ହିନ୍ଦୀ ଫିଲ୍ମ ନିର୍ମାଣ କରି ଦକ୍ଷିଣର ହିନ୍ଦୀ ଫିଲ୍ମ ଇଣ୍ଡଷ୍ଟ୍ରିକୁ ଆହୁରି ମଜବୁତ୍ କରିଦେଲେ । ଏଇ ସମୟରେ ସବୁଠାରୁ ମସ୍ତବଡ଼ ବିଡମ୍ବନା ହେଉଛି ଅଭିନେତାଙ୍କର ମୂଳଚାଲ ଓ ନିର୍ଦ୍ଦେଶକଙ୍କ ସଂଖ୍ୟା କମ୍ ହୋଇଥିବାରୁ ସମସ୍ୟା ଉପୁଜିଲା । ବ୍ୟବସାୟିକ ଚିତ୍ର ନିର୍ମାଣ କ୍ଷେତ୍ରରେ ନବେ ଦଶକ ଚଳଚ୍ଚିତ୍ର ପାଇଁ ଶୁକ୍ଳ ପକ୍ଷ କହିଲେ ଅତ୍ୟୁକ୍ତି ହେବନି । 'ଦିଲୱାଲେ ଦୁଲହନୀୟା ଲେ ଜାଏଁଗେ', 'ହମ ଆପକେ ହୈ କୌନ' ଆଉ 'ସତ୍ୟା' କଥିତ ଦଶକର ସବୁଠାରୁ ସଫଳଧର୍ମୀ ହିନ୍ଦୀ ଚଳଚ୍ଚିତ୍ର । ଏହି ସମୟରେ ମଧ୍ୟ ସବୁଠାରୁ ବେଶ୍ ଆକର୍ଷଣୀୟ ଥିଲା ଶାହାରୁଖ ଖାନ୍‌ଙ୍କର ଚଳଚ୍ଚିତ୍ର ଜଗତକୁ ପ୍ରବେଶ । ଅନ୍ୟାନ୍ୟ ଚିତ୍ର ମଧ୍ୟରେ 'ଦିଲ୍' 'ଘାଏଲ୍' 'ଦିବାନା', 'ଜୋ ଜିତା ୱହି ସିକନ୍ଦର', 'ବେଟା', 'ଦାମିନୀ', '୧୯୪୨ ଏ ଲଭ୍ ଷ୍ଟୋରି' ଓ 'ଡର୍' ଇତ୍ୟାଦି ସଫଳ ଚଳଚ୍ଚିତ୍ର ଦର୍ଶକମାନଙ୍କୁ ଏକପ୍ରକାର ବାଂଧିକରି ରଖିଥିଲା । ସଂଗୀତକାର ନଦିମ ଶ୍ରବଣଙ୍କର ମଧୁର ସଂଗୀତ ସମସ୍ତଙ୍କ ମନକୁ ରସାଣିତ କରି ଦେଇଥିଲା । କେତେକ ଚଳଚ୍ଚିତ୍ରର ଚରମ ସଫଳତା ପଛରେ ଏଇ ସଂଗୀତକାର ଯୋଡ଼ିଙ୍କର ଚମତ୍କାର ସଂଗୀତ ନିର୍ଦ୍ଦେଶନାର କାଉଁରୀ ସ୍ପର୍ଶ ଥିଲା । ଅଭିନେତା ଶାହାରୁଖ୍ ଖାନ୍, ଅମିର, ଆଉ ସଲମାନ ଏଇ ତିନି ମହାନାୟକଙ୍କର ଉଚ୍ଚକୋଟୀର ଅଭିନୟ ଚଳଚ୍ଚିତ୍ରକୁ ବେଶ ଆକର୍ଷଣୀୟ କରିପାରିଲା । ଯେତେଯେତେ ରୋମାଣ୍ଟିକ ଫିଲ୍ମ ନିର୍ମାଣ ହେଲା ସବୁଠି ଶାହାରୁଖ୍ ଖାନ୍‌ଙ୍କର ମନ୍ତ୍ରମୁଗ୍ଧ ଅଭିନୟ । ଚଳଚ୍ଚିତ୍ର କ୍ରାନ୍ତିବୀର, ତ୍ରିରଂଗା ଫିଲ୍ମ ସାଥିରେ ପୋଖତ ଚଳଚ୍ଚିତ୍ର ଅଭିନେତା ନାନା ପାଟେକର୍‌ଙ୍କର ଅଭିନୟ ବେଶ୍ ହୃଦୟଗ୍ରାହୀ ହୋଇ ପାରିଲା । ଗୋବିନ୍ଦା–ଡେଭିଡ୍‌ଙ୍କ ଯୋଡ଼ି, ସଂଗୀତ ନିର୍ଦ୍ଦେଶକ ଏ.ଆର୍. ରେହେମନଙ୍କ ବିଶେଷ ଯୋଗଦାନ ରହିଲା । 'ବ୍ୟାଣ୍ଡିଟ କୁଇନ୍'ରେ ଶେଖର କାପୁର ବିଶ୍ୱ ପ୍ରସିଦ୍ଧ ନିର୍ଦ୍ଦେଶକ ଭାବରେ ପରିଚୟ ପାଇଲେ । ଚଳଚ୍ଚିତ୍ରଟିଏ ନିର୍ମାଣ ପାଇଁ କାହା ପାଖରେ ଆଉ ସମୟ ନାହିଁ । ଖୁବ୍ ସ୍ୱଳ୍ପ ସମୟ ଭିତରେ ଚିତ୍ରଟିଏ ନିର୍ମାଣ ଶେଷ ହେଉଛି ଏବଂ




ଅତି ବେଶୀରେ ତିନି ସପ୍ତାହ ଭିତରେ ଦର୍ଶକମାନଙ୍କ ପାଖରୁ ଅନ୍ତର୍ଦ୍ଧାନ ହୋଇ ଯାଉଛି । ସଂପ୍ରତି ମଲ୍ଟିପ୍ଲେକସ୍ ଅଧିକ ପରିମାଣରେ ବିସ୍ତାରିତ ହେବା ହେତୁ ଚଳଚ୍ଚିତ୍ର ଶିଳ୍ପକୁ ନେଇ ଗଣିତର ନୂଆ ଫର୍ମୁଲା ବାହାରୁଛି । କହିବାକୁ ଗଲେ ପରିବାରବର୍ଗଙ୍କ ଭିତରେ ଚଳଚ୍ଚିତ୍ର ନିର୍ମାଣ ସୀମିତ ହୋଇ ଯାଉଛି ।

ଅଭିଷେକ ବଚନ, ରଣବୀର କପୁର, ଶାହିଦ କପୁର, ଇମରାନ୍ ଖାନ୍, ସୋନମ କପୁର ଏବଂ ସୋନାକ୍ଷୀ ସିହ୍ନା ଇତ୍ୟାଦିଙ୍କୁ ନେଇ ଚଳଚ୍ଚିତ୍ର ନିର୍ମାଣ ହେଉଛି, ଯେଉଁଠି ବିଶେଷ ପ୍ରତିଯୋଗିତା ନାହିଁ । ଚଳଚ୍ଚିତ୍ର ନିର୍ମାଣରେ ବୈଷୟିକ ଉପଯୋଗ କ୍ଷେତ୍ରରେ ମଧ୍ୟ ତଦନୁରୂପ ଉପଯୋଗ କରାଯାଇଛି । ତଥାପି ଉଚ୍ଚକୋଟୀର ଚଳଚ୍ଚିତ୍ର ଭାବରେ– କହୋନା ପ୍ୟାର ହୈ, ମୋହବତେଁ, ଲଗାନ, ଗଦର, କ୍ରିଶ୍, ଚକ୍‌ଦେ ଇଣ୍ଡିଆ, ଯୋଦ୍ଧା ଆକବର, ରଂଗଦେ ବସନ୍ତୀ, ମୁନ୍ନାଭାଇ ଏମ୍‌ବିବିଏସ୍, ତାରେ ଜମିନ୍ ପର୍, ଡର୍ଟି ବଚର୍, କାହାନୀ ଏବଂ ବର୍ଫି ମଧ୍ୟ ବେଶ ସୁନାମ ଅର୍ଜନ କରିବାରେ ସକ୍ଷମ ହୋଇଛି । ଗୋଟିଏ ଶତକ ଧରି ଆମ ଚଳଚ୍ଚିତ୍ର ତା'ର ଅଭିଯାନ ଜାରି ରଖିଛି । ତାକୁ ଦୀର୍ଘପଥ ଅତିକ୍ରମ କରିବାକୁ ପଡ଼ିବ । ଆଉ ଏକ ଶତକର ସମାରୋହ ଆୟୋଜନ ହେବା ପୂର୍ବରୁ ଆମ ଚଳଚ୍ଚିତ୍ର ଶିଳ୍ପ କେଉଁ ଅବସ୍ଥାରେ ଥିବ ଦର୍ଶକମାନେ କିଭଳି ଥିବେ, ତାହା ଏବେ ଚର୍ଚ୍ଚାର ବିଷୟ । ତେବେ ଯାହାହେଉ ଚଳଚ୍ଚିତ୍ର ଦେଖିବା ପ୍ରତି ଦର୍ଶକଙ୍କ ଆଗ୍ରହ ଦ୍ୱିଗୁଣିତ ହେଉଛି, ଏହା ନିଃସନ୍ଦେହରେ କୁହାଯାଇପାରେ ।

ଇ-୫୦, ସେକ୍ଟର-୭
ସି.ଡି.ଏ, ମର୍କତନଗର, କଟକ-୧୪

# ମାୟାର ସଂସାର

**କାଞ୍ଚନ ନାୟକ**

ମରୁଦେହ ମରିଯିବ ଆତ୍ମା ତ ଅମର
ବୁଲୁଥିବ ସବୁବେଳେ ଘଟୁ ଘଟାନ୍ତର ।

କର୍ମଫଳ ଘେନି ପୁଣି ଜନମ ଲଭିବା
ବିଭୁ କୃପା ପାଇଥିଲେ ସଂସାରୁ ତରିବା ।

ଏ ସୃଷ୍ଟି ଅଳିକ ସ୍ରଷ୍ଟା ଏକା ଚିରନ୍ତନ
ହୀନକର୍ମୁ ନୀଚଜନ୍ମ ଭଜ ନାରାୟଣ ।

ନପାରିବ ବାନ୍ଧି ଆଉ ସଂସାର ବନ୍ଧନ
ମାତିଛୁ ତୁ କାହିଁ ପାଇଁ ମିଛ ଏ ସଂସାର ।

ସଂସାର ସୁଖ ଯେ ସିନା ଦୁଃଖର କାରଣ
ଦିନୁ ଦିନୁ କରେ ଟାଣ ମାୟାର ବନ୍ଧନ ।

ଟାଣି ନେଉଛିରେ ତୋତେ ଦୁଃଖର ସାଗର
ତୁହି ତୋର ମାର୍ଗ ଦ୍ରଷ୍ଟା ପଥିକ ପଥର ।

କାମ କ୍ରୋଧ ଲୋଭ ମୋହ ଗିରି ଆର ପାଶେ
ରହି ନଶୁଣିଲ ପ୍ରଭୁ ଯେତେ ମୁଁ ଡାକେ ।

କାମନାର ମରୁପଥେ ବୃଥା ମୁଁ ଭ୍ରମିଲି
ନପାଇ ପ୍ରଭୁଙ୍କୁ ମୋର ନିରବ ହୋଇଲି ।

କଳ୍ପନାର ମହାକାଶେ ଆଶାର ସଉଧ
ସୀମିତ ଜୀବନ ମୋର ମାୟାରେ ଆବଦ୍ଧ ।

ମାୟାର ପାଚେରୀ ସେ ଯେ ପର୍ବତ ସମାନ
ଏ ସଂସାରେ ମିଳେ ଖାଲି ଅଶେଷ କଷଣ ।

ପାରୁନାହିଁ ଯାଇ ଭାଙ୍ଗି ଦୃଢ ଏ ପ୍ରାଚୀର
ଦୟାକରି କୃପାକର ହେ ପ୍ରଭୁ ଠାକୁର ।

ପାରୁନାହିଁ ଯାଇ ଆଉ ଏବେ ତୁମ ପାଶେ
ନିଅ ମୋତେ ଡୋଳିବାରେ ଶ୍ରୀଚରଣ ପାଶେ ।

ଘର ନଂ- ୨ଆର୍.୪/୫
ୟୁନିଟ୍-୯(ଫ୍ଲାଟ୍), ଭୁବନେଶ୍ୱର

# ଭାରତ ରତ୍ନ ସାର୍ ଏମ୍. ବିଶ୍ୱେଶ୍ୱରାୟା

ପଣ୍ଡିତ ତ୍ରିଲୋଚନ ମିଶ୍ର

ମହାତ୍ମା ଗାନ୍ଧୀ ଦକ୍ଷିଣ ଆଫ୍ରିକାରୁ ୧୯୧୪ରେ ଭାରତକୁ ଫେରି ଗୁଜୁରାଟର ସାବରମତୀ ଆଶ୍ରମରେ ରହି ଅହିଂସା ଓ ଅସହଯୋଗକୁ ଆୟୁଧ କରି ଇଂରେଜମାନଙ୍କ ସହ ସଂଗ୍ରାମ କରିବାର ପରିକଳ୍ପନା କରୁଥିବା ସମୟରେ ସମ୍ବାଦ ପାଇଲେ ଯେ, ଓଡ଼ିଶାବାସୀ ଭୟଙ୍କର ଦୁର୍ଭିକ୍ଷର ଶିକାର ହୋଇଛନ୍ତି । ଏହି ଦୁଃଖଦ ସମ୍ବାଦ ଗାନ୍ଧିଜୀଙ୍କୁ ବଡ ବିବ୍ରତ କରିଥିଲା । ପରେ ପରେ ସେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ନିକଟତର ହୋଇ ଓଡ଼ିଶାର ଦାରିଦ୍ର୍ୟ ଦୂର କରିବା ନିମନ୍ତେ ଅନେକ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରିଥିଲେ । ଓଡ଼ିଶାର ସମସ୍ୟା ବହୁଳ ଅଞ୍ଚଳକୁ ନିଜେ ପଦଯାତ୍ରାରେ ଯାଇ ପ୍ରକୃତ ପରିସ୍ଥିତି ଅନୁଧ୍ୟାନ କରିଥିଲେ । କ୍ରମାଗତ ବନ୍ୟା ଉତ୍କଳବାସୀଙ୍କ ଆର୍ଥିକ ମେରୁଦଣ୍ଡ ଭାଙ୍ଗି ଦେଉଥିବା ଜାଣି ଗାନ୍ଧିଜୀ ଭାରତବର୍ଷର ତତ୍କାଳୀନ ସୁଦକ୍ଷ ସିଭିଲ୍ ଇଞ୍ଜିନିୟର ସାର୍ ଏମ୍. ବିଶ୍ୱେଶ୍ୱରାୟାଙ୍କୁ ଓଡ଼ିଶାର ବନ୍ୟା ନିୟନ୍ତ୍ରଣ ନିମନ୍ତେ ଏକ ମାଷ୍ଟରପ୍ଲାନ୍ ପ୍ରସ୍ତୁତ କରି ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କୁ ତଥା କେନ୍ଦ୍ର ସରକାରଙ୍କୁ ପ୍ରଦାନ କରିବା ପାଇଁ ଅନୁରୋଧ କରିଥିଲେ । ମହାତ୍ମା ଗାନ୍ଧୀଙ୍କ ଅନୁରୋଧ ତଥା ଉତ୍କଳବାସୀଙ୍କ ଅକଥନୀୟ ଦୁଃଖ ଦୁର୍ଦ୍ଦଶାକୁ ଲକ୍ଷ୍ୟ କରି ଦରଦୀ ହୃଦୟ ସାର୍ ଏମ୍. ବିଶ୍ୱେଶ୍ୱରାୟା ସହକର୍ମୀ ଇଞ୍ଜିନିୟରମାନଙ୍କ ସହ ଓଡ଼ିଶାର ନଦୀ ନାଳ ଘେରା ଦୁର୍ଗମ ବନ୍ୟାଞ୍ଚଳ ବୁଲି ନଦୀ ଜଳର ପ୍ରବାହ ସ୍ଥିତି ଅନୁଧ୍ୟାନ କରିଥିଲେ । ବହୁ ପରୀକ୍ଷା ନିରୀକ୍ଷା ପରେ ଓଡ଼ିଶାର ଦୁଃଖ ମହାନଦୀର ଜଳଧାରା ନିୟନ୍ତ୍ରଣକୁ ଅଣାଯାଇ ପାରିଲେ ଓଡ଼ିଶାବାସୀଙ୍କ ଦୁର୍ଦ୍ଦଶା ଦୂର ହେବା ସମ୍ଭବ ବୋଲି ସେ ବିବେଚନା କରିଥିଲେ । ସର୍ଭେ ତଥ୍ୟ ଅନୁଯାୟୀ ମହାନଦୀର ଜଳଧାରାକୁ ହୀରାକୁଦଠାରେ ଏକ ବହୁମୁଖୀ ନଦୀବନ୍ଧ ଯୋଜନା ଦ୍ୱାରା ବ୍ୟବହାର କରାଯାଇ ପାରିଲେ ବନ୍ୟା, ମରୁଡି ଦାଉରୁ ଓଡ଼ିଶାବାସୀ ଉଦ୍ଧାର ପାଇବା ସହ ଶିଳ୍ପର ବିକାଶ ଘଟିବ ବୋଲି ଦୃଢୋକ୍ତି ବ୍ୟକ୍ତ କରିଥିଲେ । ଏହି ତଥ୍ୟ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱନାଥ ଦାଶଙ୍କୁ ପ୍ରଦାନ କରି ତାଙ୍କ ସହ ହୀରାକୁଦ ବହୁମୁଖୀ ଯୋଜନା ବିଷୟରେ ବିସ୍ତୃତଭାବେ ଆଲୋଚନା କରିଥିଲେ । ଗାନ୍ଧିଜୀଙ୍କ ଅନୁରୋଧ ଅନୁଯାୟୀ ସାର୍ ଏମ୍. ବିଶ୍ୱେଶ୍ୱରାୟାଙ୍କୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ମହାମାନ୍ୟ ରାଜ୍ୟ ଅତିଥିର ସମ୍ମାନ ଦେବା ସହ ବ୍ୟୟ ବହୁଳ ସର୍ଭେ ଖର୍ଚ୍ଚର ଭରଣା କରିବାକୁ ଚାହିଁ ଥିଲେ । ମାତ୍ର ସେ ଏଥିପାଇଁ କୌଣସି ଆର୍ଥିକ ସହାୟତା ନେବାକୁ ମନା କରିବା ସହ ଏହା ତାଙ୍କର ଏକ ଜାତୀୟ କର୍ତ୍ତବ୍ୟ ବୋଲି ପ୍ରକାଶ କରିଥିଲେ । ମହାତ୍ମା ଗାନ୍ଧୀଙ୍କର ସାର୍ ଏମ୍. ବିଶ୍ୱେଶ୍ୱରାୟାଙ୍କୁ ୧୫.୧୦.୧୯୩୭ ତାରିଖରେ ପ୍ରଦତ୍ତ ପତ୍ରଟି ଏହିପରି ଥିଲା ।



Wardha

15.10.1937

Dear Sri Bisweswaraya,

You know the havoc brought by floods in Orissa. I have addressed the Chief Minister Sri Viswanath Dash to approach you for advice and




guidance. I have no doubt that you would give him such assistance as it may be in your power to give.

Yours Faithfully
Sd/-
M.K. Gandhi

ମହାମନା ଭାରତରତ୍ନ ସାର୍ ଏମ୍. ବିଶ୍ୱେଶ୍ୱରାୟାଙ୍କ ଏହି ମହାର୍ଘ ସେବା ଉତ୍କଳବାସୀ କେବେ ବି ଭୁଲି ପାରିବେ ନାହିଁ । ତାଙ୍କ ପ୍ରଦତ୍ତ ସେବା ଫଳରେ ଆଜି ଉତ୍କଳର ବନ୍ୟା, ମରୁଡି ନିୟନ୍ତ୍ରଣକୁ ଆସିବା ସହ ଉତ୍କଳବାସୀ ବିକାଶର ସ୍ୱପ୍ନ ଦେଖି ପାରିଛନ୍ତି । ଭାରତରତ୍ନ ସାର୍ ଏମ୍. ବିଶ୍ୱେଶ୍ୱରାୟା ୧୮୬୧ ମସିହା ସେପ୍ଟେମ୍ବର ୧୫ ତାରିଖରେ ମହୀଶୂର ରାଜ୍ୟର ନୈଷ୍ଠିକ ବ୍ରାହ୍ମଣ ଦମ୍ପତି ପଣ୍ଡିତ ଶ୍ରୀନିବାସ ଶାସ୍ତ୍ରୀ ଓ ଭେଙ୍କେଚାମାଙ୍କ କୋଳମଣ୍ଡନ କରିଥିଲେ । ୧୮୮୩ ମସିହାରେ ପୁନା ବିଶ୍ୱବିଦ୍ୟାଳୟ ପରିଚାଳିତ ଡିପ୍ଲୋମା ସିଭିଲ୍ ଇଞ୍ଜିନିୟରିଂ ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ପ୍ରଥମ ସ୍ଥାନ ପ୍ରାପ୍ତ ହୋଇଥିଲେ । ପରେ ପରେ ଇଂରେଜ ସରକାରଙ୍କ ପାଖରେ ପଚିଶି ବର୍ଷ କାଳ ଜଣେ ସୁଦକ୍ଷ ଇଞ୍ଜିନିୟର ଭାବେ କାର୍ଯ୍ୟ ପରିଚାଳନା କରିଥିଲେ । ୧୯୦୯ ମସିହାରେ ମହୀଶୂର ରାଜ୍ୟର ମୁଖ୍ୟ ଯନ୍ତ୍ରୀ ଓ ପରେ ପରେ ହାଇଦ୍ରାବାଦ ରାଜ୍ୟର ଇଞ୍ଜିନିୟରିଂ ପରାମର୍ଶଦାତା ତଥା ରାଜ୍ୟର ଦେୱାନ ଭାବେ କାର୍ଯ୍ୟ ନିର୍ବାହ କରିଥିଲେ । ଦେଶ ବିଦେଶର ଅନେକ ସୁନାମଧନ୍ୟ ପ୍ରକଳ୍ପଗୁଡ଼ିକର ସ୍ରଷ୍ଟା ଅଟନ୍ତି ସାର୍ ଏମ୍. ବିଶ୍ୱେଶ୍ୱରାୟା । ଇଜିପ୍ଟ ଦେଶର ବିଶ୍ୱ ପ୍ରସିଦ୍ଧ ଆଶୁଆନ୍ ଡ୍ୟାମ୍, ପାକିସ୍ଥାନର ଲଏଡ୍ ବ୍ୟାରେଜ୍, ର୍ୟାଦମ୍ ବହୁମୁଖୀ ଜଳସେଚନ ପ୍ରକଳ୍ପ, ସୁରଟ ଓ ପୁନା ସହର ପାଇଁ ଜଳ ଯୋଗାଣ ଯୋଜନା, ବିହାର ରାଜ୍ୟର ସର୍ବପ୍ରଥମ ଗଙ୍ଗା ନଦୀ ପୋଲ, ମହୀଶୂର ରାଜ୍ୟର ବିଶ୍ୱ ପ୍ରସିଦ୍ଧ କୃଷ୍ଣ ସାଗର ନଦୀବନ୍ଧ ଯୋଜନା, ବୃନ୍ଦାବନ ଗାର୍ଡେନ୍ସ ଗଠନର ଶ୍ରେୟ ତାଙ୍କୁ ହିଁ ମିଳିଥିଲା । ସେ ଜଣେ ସୁଦକ୍ଷ ଇଞ୍ଜିନିୟର ଥିଲେ । ସେ ମଧ୍ୟ ଥିଲେ ଜଣେ ସୁଦକ୍ଷ ପ୍ରଶାସକ, ଧୂରୀଣ ଅର୍ଥନୀତିଜ୍ଞ, ସଫଳ ଯୋଜନାବିତ୍, ସ୍ଥପତି ଓ ସ୍ୱଦେଶହିତୈଷୀ । ବିଶ୍ୱର ବହୁ ସ୍ୱନାମଧନ୍ୟ ବିଶ୍ୱବିଦ୍ୟାଳୟ ତାଙ୍କୁ ଡକ୍ଟର ଉପାଧି ପ୍ରଦାନ କରି ସମ୍ମାନିତ କରିଛନ୍ତି । ତତ୍କାଳୀନ ବହୁ ପ୍ରତିଷ୍ଠିତ ସ୍ୱଦେଶୀ ଓ ବିଦେଶୀ ଇଞ୍ଜିନିୟର ସାର୍ ଏମ୍. ବିଶ୍ୱେଶ୍ୱରାୟାଙ୍କ ଅଧୀନରେ କାମ କରିବାର ସୁଯୋଗ ପାଇ ନିଜ ନିଜକୁ ଗୌରବାନ୍ୱିତ ମନେ କରିଛନ୍ତି । ବ୍ରିଟିଶ ଶାସନ ସମୟରେ ଅନେକ ସଫଳ ପ୍ରକଳ୍ପ ଗଠନ ଲାଗି ବ୍ରିଟିଶ ପାର୍ଲିଆମେଣ୍ଟ ତାଙ୍କୁ ଉଚ୍ଚ ପ୍ରଶଂସା କରିବା ସହ ସମ୍ମାନଜନକ 'ସାର୍ ଉପାଧି' ପ୍ରଦାନ କରିଛନ୍ତି । ଏଭଳି ସମ୍ମାନ ପାଇବାରେ ସେ ସର୍ବପ୍ରଥମ ଭାରତୀୟ ଇଞ୍ଜିନିୟର ଅଟନ୍ତି । ତାଙ୍କ ସମର୍ପିତ ଦେଶ ସେବା, ସ୍ୱକାର୍ଯ୍ୟ ଦକ୍ଷତା, ନିଷ୍ଠା, ନୀତି ଆଦର୍ଶ ଆଗରେ ତତ୍କାଳୀନ ଭାରତର ପ୍ରମୁଖ ଜନନାୟକମାନେ ନତମସ୍ତକ ହୋଇଯାଉଥିଲେ । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ନିଜ ବକ୍ତବ୍ୟରେ ପ୍ରକାଶ କରିଥିଲେ ଯେ ସାର୍ ଏମ୍. ବିଶ୍ୱେଶ୍ୱରାୟା ଆଧୁନିକ ଭାରତ ଗଠନର ବିଶ୍ୱକର୍ମା ଅଟନ୍ତି । ଏହି ମହାନ୍ ଦେଶଭକ୍ତ ଇଞ୍ଜିନିୟରଙ୍କୁ ୧୯୫୫ ମସିହା ଡିସେମ୍ବର ୭ ତାରିଖ ଦିନ ଭାରତବର୍ଷର ସର୍ବଶ୍ରେଷ୍ଠ ସମ୍ମାନ ଭାରତରତ୍ନ ପ୍ରଦାନ କରାଯାଇଥିଲା ।

ସବୁ ମାନସମ୍ମାନ ପୁରସ୍କାର ସତ୍ତ୍ୱେ ଭାରତରତ୍ନ ସାର୍ ଏମ୍. ବିଶ୍ୱେଶ୍ୱରାୟା ଥିଲେ ଜଣେ ସରଳ, ନିଷ୍କଳଙ୍କ ଦରଦୀ ହୃଦୟ ସମ୍ପୂର୍ଣ୍ଣ ବ୍ୟକ୍ତିତ୍ୱ । ଏହି ମହାନ୍ ଦେଶଭକ୍ତ ଶତାୟୁ ଜୀବନ ଅତିକ୍ରାନ୍ତ କରି ୧୯୬୨ ଏପ୍ରିଲ ୨୪ ତାରିଖ ଦିନ ୧୦୧ ବର୍ଷ ବୟସରେ ସ୍ୱର୍ଗବାସ କଲେ । ସମଗ୍ର ଭାରତବର୍ଷର ସର୍ବୋଚ୍ଚ ସମ୍ମାନ ଭାରତରତ୍ନ ପାଇ ମଧ୍ୟ ସେ ଥିଲେ ନିର୍ଲିପ୍ତ କର୍ମଯୋଗୀ । ଏହି ମହାନ୍ ବିଶ୍ୱପ୍ରସିଦ୍ଧ ସ୍ୱଦେଶ ଭକ୍ତ ଇଞ୍ଜିନିୟରଙ୍କ ଜନ୍ମତିଥି ସେପ୍ଟେମ୍ବର ୧୫ ତାରିଖକୁ ଆମ ଦେଶରେ ଇଞ୍ଜିନିୟର ଦିବସ ରୂପେ ପାଳନ କରି ଆମେ ଆମର ଦାୟିତ୍ୱ ସରିଗଲା ବୋଲି ନଭାବି ତାଙ୍କ ପରି କର୍ମ ତତ୍ପର, ସୁଦକ୍ଷ, ନିଷ୍କଳଙ୍କ ସଫଳ ଦେଶଭକ୍ତ ହୋଇ ପାରିଲେ ଏହା ଭାରତରତ୍ନ ସାର୍ ଏମ୍. ବିଶ୍ୱେଶ୍ୱରାୟାଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ ।

ପ୍ରକୃତିବନ୍ଧୁ ଭବନ
ପ୍ରାଚୀ ବିହାର, କାକଟପୁର, ପୁରୀ





# ଜୈବ ବିବିଧତାର ଅନନ୍ୟ ଗନ୍ତାଘର : ଶିମିଳିପାଳ ଜାତୀୟ ଉଦ୍ୟାନ

**ସୁଶାନ୍ତ କୁମାର ସେନାପତି**

ଓଡ଼ିଶାର ଉତ୍ତର ପାର୍ଶ୍ୱରେ ପଶ୍ଚିମବଙ୍ଗ ଓ ଝାଡ଼ଖଣ୍ଡ ରାଜ୍ୟର ସୀମାକୁ ଲାଗି ରହିଛି ମୟୂରଭଞ୍ଜ ଜିଲ୍ଲା । ଏହି ଜିଲ୍ଲାରେ ରହିଛି ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୂର ତଥା ଜୈବ ବିବିଧତାରେ ପରିପୂର୍ଣ୍ଣ ଏକ ସ୍ଥାନ । ନାଆଁ ତା'ର 'ଶିମିଳିପାଳ ଜାତୀୟ ଉଦ୍ୟାନ' । ୨୭୫୦ ବର୍ଗ କିଲୋମିଟର ଅଞ୍ଚଳକୁ ନେଇ ୧୯୭୩ ମସିହାରେ ପ୍ରଥମେ ଏଠାରେ ଗଢ଼ି ଉଠିଥିଲା ଏକ ବ୍ୟାଘ୍ର ସଂରକ୍ଷଣ ପ୍ରକଳ୍ପ । ମାତ୍ର ୧୯୭୯ ମସିହାରେ ସେଥିରୁ ୨୨୭୧.୭୮ ବର୍ଗ କି.ମି. ଅଞ୍ଚଳ ଅଭୟାରଣ୍ୟର ମାନ୍ୟତା ପାଇଲା । ଅଭୟାରଣ୍ୟର ମାନ୍ୟତା ପାଇବାର ଯଥେଷ୍ଟ ପୂର୍ବରୁ ଶିମିଳିପାଳ ଥିଲା ଏକ ଘଞ୍ଚ ଜଙ୍ଗଲ ତଥା ଅଗମ୍ୟ ମୂଳକ । ଏଠାରେ ରହିଥିଲା ପାହାଡ଼ ଭଳି ଅସଂଖ୍ୟ ଶିମିଳି ଗଛ । ଶିମିଳି ଗଛର ବହୁଳତା ଯୋଗୁଁ ଏହାକୁ ଶିମିଳି ପାହାଡ଼ କୁହାଯାଉଥିଲା । କାଳକ୍ରମେ ଶିମିଳି ପାହାଡ଼ ଶବ୍ଦର ଅପଭ୍ରଂଶ ଘଟି ଶିମିଳିପାଳ ହୋଇଛି ।



ବିଭିନ୍ନ ଦିଗରୁ ବିଚାର କରି ଦେଖିଲେ ଜଣାଯାଏ ଯେ ଶିମିଳିପାଳ ଜୈବମଣ୍ଡଳର ଏକ ସ୍ୱାତନ୍ତ୍ର୍ୟତା ରହିଛି । ବିଶେଷ କରି ଏହାର ଭୌଗୋଳିକ ଅବସ୍ଥିତି, ପ୍ରାକୃତିକ ପରିବେଶ, ଜଳବାୟୁ ଓ ଭୂଗଠନ ଯୋଗୁଁ ଏହା ସମ୍ଭବ ହୋଇ ପାରିଛି । ସମୁଦ୍ର ପତ୍ତନଠାରୁ ୯୦୦ ମିଟର ଉଚ୍ଚରେ ଥିବା ଶିମିଳିପାଳର କେଉଁ ଅଞ୍ଚଳ ପ୍ରାୟ ୫୫୦ ମିଟର ଉଚ୍ଚା ଓ ପାହାଡ଼ିଆ ଏବଂ ଆଉ କେଉଁଠାରେ ଗଡ଼ାଣିଆ ହୋଇ ରହିଛି । ଦକ୍ଷିଣ ପୂର୍ବ ଆଡ଼କୁ ଏହା କ୍ରମଶଃ ତୀଖ ଭାବେ ଗଡ଼ାଣିଆ ହୋଇଥିବା ବେଳେ ଉତ୍ତର ପଶ୍ଚିମ ଆଡ଼କୁ ଅଳ୍ପ ଢାଲୁ ଅଞ୍ଚଳ । ଶତକଡ଼ା ୭୦ଭାଗରୁ ଅଧିକ ସାନ୍ଦ୍ରତା ଥିବା ଜଙ୍ଗଲ ଶିମିଳିପାଳ ଅଞ୍ଚଳରେ ଅଛି । ଏହି ଜୈବମଣ୍ଡଳର ଉତ୍ତର ପାର୍ଶ୍ୱରେ ରହିଛି ଆଂଶିକ ଚିରହରିତ୍ ଓ ଆର୍ଦ୍ର ପର୍ଣ୍ଣମୋଚୀ ଅରଣ୍ୟ । ଏକାଧାରରେ କହିବାକୁ ଗଲେ ଶିମିଳିପାଳ ହେଉଛି ବଣ ଜଙ୍ଗଲ, ତୃଣଭୂମି ଓ ଆର୍ଦ୍ରଭୂମିର ଏକ ସମାହାର । ଦକ୍ଷିଣ ପୂର୍ବ ଦିଗରେ ଢାଲୁ ଅଞ୍ଚଳରେ ଲମ୍ବା ଓ ବିଶାଳ ଶାଳ ଗଛଗୁଡ଼ିକ ପ୍ରହରୀ ଭଳି ଠିଆ ହୋଇଛନ୍ତି । ସ୍ଥାନେ ସ୍ଥାନେ ରହିଛି ବିସ୍ତୀର୍ଣ୍ଣ ତୃଣଭୂମି । ଖଇରିବୁରୁ ଓ ମେଘାସନୀ ନାମରେ ଦୁଇଟି ଉଚ୍ଚ ପର୍ବତ ଶୃଙ୍ଗ ଏଠାରେ ଅଛି, ଯାହାର ଉଚ୍ଚତା ଯଥାକ୍ରମେ ୧୧୭୮ ମିଟର ଓ ୧୧୫୮ ମିଟର ।

ଶିମିଳିପାଳର ପ୍ରାକୃତିକ ଗଠନ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ ପାଇଁ ଏକ ପ୍ରତିବନ୍ଧକ ରୂପେ କାର୍ଯ୍ୟ କରିଥାଏ । ଫଳରେ ସେଠାରେ ବୃଷ୍ଟିପାତ ହୋଇଥାଏ । ଏଠାକାର ଆର୍ଦ୍ରବାୟୁ ଧୀରେ ଧୀରେ ଗତି କରି ଓଡ଼ିଶାର ଦକ୍ଷିଣ ପଶ୍ଚିମାଞ୍ଚଳର ବିଭିନ୍ନ ସ୍ଥାନରେ ମଧ୍ୟ ବୃଷ୍ଟିପାତ କରାଇଥାଏ । ହିମାଳୟ ପାର୍ବତ୍ୟାଞ୍ଚଳ ଭାରତର




ହିତ ସାଧନ କଲାପରି ଶିମିଳିପାଳ ମଧ୍ୟ ବଙ୍ଗ, ବିହାର, ଓଡ଼ିଶା ଓ ମଧ୍ୟପ୍ରଦେଶର କେତେକ ଅଞ୍ଚଳର ଜଳବାୟୁକୁ ନିୟନ୍ତ୍ରିତ କରୁଛି । ଏଠାରେ ପ୍ରତିବର୍ଷ ୧୨୦୦ ରୁ ୨୦୦୦ ମିଲି ମିଟର ବର୍ଷା ହୁଏ । ଆଗ୍ନେୟଶିଳା ଦ୍ୱାରା ଗଠିତ ଶିମିଳିପାଳରେ ପର୍ଯ୍ୟାପ୍ତ ପରିମାଣର ଜଳସ୍ରୋତ ରହିଛି । ଏହା ଏଠାରେ ଥିବା ନଦୀ ଓ ଜଳପ୍ରପାତ ପାଇଁ ଜଳଉତ୍ସ ପାଲଟି ଥାଏ । ଏଠାରେ ବରେହିପାଣି ଓ ଯୋରନ୍ଦା ନାମକ ଦୁଇଟି ପ୍ରସିଦ୍ଧ ଜଳପ୍ରପାତ ରହିଛି । ଜଳପ୍ରପାତ ଦୁଇଟିର ଉଚ୍ଚତା ଯଥାକ୍ରମେ ୪୦୦ ଓ ୧୫୦ ମିଟର । ସେତିକି ନୁହେଁ ଶିମିଳିପାଳ ଭିତରେ ଥିବା ପର୍ବତମାଳାରୁ ବୁଢ଼ାବଳଙ୍ଗ, ପଲପଲା, ଦେଓ, ସାଳନ୍ଦୀ, ଖଇରି, ଖଡ଼ିକେଇ, ବୈତରଣୀ ଆଦି ୧୦ ଗୋଟି ଛୋଟବଡ଼ ନଦୀ ବାହାରିଛନ୍ତି । ହିମାଳୟଠାରୁ ଅଧିକ ପରିମାଣର ଜଳ ଶିମିଳିପାଳ ନଦୀଗୁଡ଼ିକୁ ଯୋଗାଇଥାଏ । ଏପରିକି ପୂର୍ବଘାଟ ପର୍ବତମାଳାରୁ ଶିମିଳିପାଳ ମଧ୍ୟରେ ରହିଥିବା ଜଙ୍ଗଲଗୁଡ଼ିକୁ ସଂଯୋଗ କରାଗଲେ ଓଡ଼ିଶା ସମେତ ଅନେକ ରାଜ୍ୟର ଜଳବାୟୁକୁ ନିୟନ୍ତ୍ରିତ କରାଯାଇ ପାରିବ । କେତେକ ବୈଜ୍ଞାନିକ କହନ୍ତି ଆଫ୍ରିକାର ସାହାରା, ରାଜସ୍ଥାନର ଥର୍ ମରୁଭୂମି ଓ ଓଡ଼ିଶା ଏକ ଦ୍ରାଘିମାରେ ରହିଥିଲେ ମଧ୍ୟ ଓଡ଼ିଶା ସେଇ ଦୁଇ ଅଞ୍ଚଳ ପରି ମରୁଭୂମି ନହେବାର କାରଣ ହେଲା ଶିମିଳିପାଳ । ତେଣୁ ଭୌଗୋଳିକ ଦୃଷ୍ଟିକୋଣରୁ ଶିମିଳିପାଳର ଗୁରୁତ୍ୱ କେତେ ଯେ ଅଧିକ ତାହା ଏଥିରୁ ଅନୁମେୟ ।

ମୟୂରଭଞ୍ଜ ଜିଲ୍ଲାର ମୋଟ ୩୩୩୦.୧୪ ବର୍ଗ କିଲୋମିଟର ସଂରକ୍ଷିତ ବନାଞ୍ଚଳ ମଧ୍ୟରୁ ଶିମିଳିପାଳ କେବଳ ୨୭୯୫ ବର୍ଗ କିଲୋମିଟର ସ୍ଥାନରେ ପରିବ୍ୟାପ୍ତ । ସେଥିମଧ୍ୟରୁ ୧୯୫୦ ବର୍ଗ କିଲୋମିଟର ବାହ୍ୟ ଅଞ୍ଚଳ ହୋଇଥିବା ବେଳେ ୮୪୫ ବର୍ଗ କିଲୋମିଟର ଅଞ୍ଚଳ ନିବୃତ ଅଞ୍ଚଳର ଅନ୍ତର୍ଭୁକ୍ତ ଅଟେ । ୧୯୮୦ ମସିହାରୁ ଏହାକୁ ଏକ ଜାତୀୟ ଉଦ୍ୟାନର ମାନ୍ୟତା ପ୍ରଦାନ କରାଯାଇଛି । ଶିମିଳିପାଳ ଜାତୀୟ ଉଦ୍ୟାନରେ ବିଭିନ୍ନ ପ୍ରକାରର ଜୀବଜନ୍ତୁ ଓ ଗଛଲତା ଦୃଷ୍ଟିଗୋଚର ହୋଇଥାନ୍ତି । ସେମାନଙ୍କ ମଧ୍ୟରେ ଅଛନ୍ତି ୫୫ ପ୍ରଜାତିର ସ୍ତନ୍ୟପାୟୀ ପ୍ରାଣୀ, ୬୪ ପ୍ରକାରର ସରୀସୃପ, ୩୦୪ ପ୍ରଜାତିର ପକ୍ଷୀ, ୨୦ ପ୍ରକାରର ଉଭୟଚର ପ୍ରାଣୀ, ଅସଂଖ୍ୟ ପ୍ରଜାତିର କୀଟପତଙ୍ଗ, ୧୦୭୬ ପ୍ରଜାତିର ବୃକ୍ଷଲତା ଓ ୯୪ ପ୍ରକାରର ଚିତ୍ରା ଜାତୀୟ ଉଦ୍ଭିଦ । ସାରା ଭାରତରେ ସମୁଦାୟ ଯେତେ ସଂଖ୍ୟକ ସ୍ତନ୍ୟପାୟୀ ପ୍ରାଣୀ ଅଛନ୍ତି ତାହାର ୧୫.୭ ଶତାଂଶ ଶିମିଳିପାଳରେ ଦେଖାଯାଆନ୍ତି । ସେହିପରି ଭାରତରେ ଦେଖାଯାଉଥିବା ଜୀବଜନ୍ତୁଙ୍କର ୧୨ଶତାଂଶ ସରୀସୃପ, ୧୦ ଶତାଂଶ ଉଭୟଚର ଓ ୨୪.୮ ଶତାଂଶ ପକ୍ଷୀ ଶିମିଳିପାଳରେ ଅଛନ୍ତି ।

ଓଡ଼ିଶାର ସବୁଠୁ ଅଧିକ ସଂଖ୍ୟକ ହାତୀ ଓ ମହାବଳ ବାଘଙ୍କର ଅଭୟାରଣ୍ୟ ଭାବେ ଶିମିଳିପାଳ ପ୍ରସିଦ୍ଧି ଲାଭ କରିଥିବା ବେଳେ ତୃଣଭୋଜୀ ଜୀବଙ୍କ ସଂଖ୍ୟା ମଧ୍ୟ ଏଠାରେ ଅଧିକ ଅଟେ । ପୂର୍ବଘାଟ ଭାରତର ସର୍ବବୃହତ ବ୍ୟାଘ୍ର ସଂରକ୍ଷଣ ଅଞ୍ଚଳ ଭାବେ ଶିମିଳିପାଳ ପରିଗଣିତ ହେଉଥିବା ବେଳେ କଳା ବାଘ (ମେଲାନିଷ୍ଟିକ ଟାଇଗର)ଙ୍କ ଏକମାତ୍ର ଜନ୍ମସ୍ଥାନ ଭାବେ ଖ୍ୟାତି ଅର୍ଜନ କରିଛି । ୨୦୦୨ ମସିହା ସୁଦ୍ଧା ଏଠାରେ ବାଘଙ୍କ ସଂଖ୍ୟା ଥିଲା ୧୦୧ ଓ ୪୫୬ଟି ହାତୀ ଥିଲେ । କେବଳ ହାତୀ ଓ ବାଘଙ୍କ ପାଇଁ ଯେ ଶିମିଳିପାଳ ବିଖ୍ୟାତ ତାହା ନୁହେଁ, ବିଶ୍ୱସ୍ତରୀୟ ଅଭୟାରଣ୍ୟ ଓ ଜୈବମଣ୍ଡଳ ଏଠାରେ ଅଛି । ହାତୀ ଓ ବାଘଙ୍କୁ ଛାଡ଼ିଦେଲେ ଏଠାରେ ଦେଖିବାକୁ ମିଳୁଥିବା ଅନ୍ୟାନ୍ୟ ପ୍ରମୁଖ ଜୀବମାନଙ୍କ ମଧ୍ୟରେ ଅଛନ୍ତି–ଭାଲୁ, ଚିତାବାଘ, ହେଟା ବାଘ, ବଣ ବିଲେଇ, ବଜ୍ରକାପ୍ଟା, ବଡ଼ ଗୁଣ୍ଡୁଚି, ବାଦ୍‌ହା, ବଣୁଆ କୁକୁର, ହରିଣ, ସମ୍ବର, ଚଉଶିଂଘା, ଗୟଳ, ଠେକୁଆ, ଉଡ଼ନ୍ତା ଗୁଣ୍ଡୁଚି ମୂଷା, ମାଙ୍କଡ଼, ଶାଳିଆ ପତନି, ଅରଣା ମଇଁଷି, ନୀଳଗାଈ, ଗୋଧି, ଝିଙ୍କ, ମାଙ୍କଡ଼, ମୟୂର, କୁମ୍ଭୀର, କଇଁଛ, ବିଭିନ୍ନ ପ୍ରକାରର ସରୀସୃପ ଓ ଉଭୟଚର ପ୍ରାଣୀ । ୧୭୯ ପ୍ରଜାତିର ଚିତ୍ରିତ ପ୍ରଜାପତି ଏହି ଜଙ୍ଗଲରେ ଅଛନ୍ତି । ଏମାନଙ୍କ ମଧ୍ୟରୁ ୧୮ଟି ପ୍ରଜାତି ହେଉଛି ମଧ୍ୟ ଏବଂ ପୂର୍ବ ଭାରତର । ଏଠାରେ ଥିବା ସରୀସୃପମାନଙ୍କ ମଧ୍ୟରେ ଅଛନ୍ତି ବିଲୁପ୍ତ ପ୍ରାୟ ଅଜଗର, ଅହିରାଜ, ସାପମାନଙ୍କର ରାଜା ନାଗ ଓ ବଉଳା କୁମ୍ଭୀର । କାଠହଣା, କୋଚିଲାଖାଇ, ଗୋବରା, ବାଜପକ୍ଷୀ, ଭଦଭଦଳିଆ, ଭୂଇଁ ଛାପୁଲି ଆଦି ନାନା ରଙ୍ଗ ବେରଙ୍ଗର ପକ୍ଷୀ ଏଠାରେ ଉଡ଼ି ବୁଲୁଥାନ୍ତି । ତୃଣଭୋଜୀ ପ୍ରାଣୀଙ୍କ ମଧ୍ୟରେ ସବୁଠୁ ଛୋଟ ହରିଣ ଭାବେ ଜଣାଶୁଣା 'ଗୁରାଣ୍ଡି' ଏବେ ବିଲୁପ୍ତ ପ୍ରାୟ । ହିଂସ୍ରଜନ୍ତୁ ଭାବେ ପରିଚିତ ବଳିଆ କୁକୁର, ବାଜପେଚା ଓ ଶିମିଳିପାଳର ରାଣୀଭାବେ ବିବେଚିତ ତଥା ପରିଚିତ 'ମଇନା' କେବେଠୁ ବିଲୁପ୍ତ ଅବସ୍ଥାକୁ ଆସିଲେଣି ।

ଏଠାରେ ବହିଯାଇଥିବା ନଦୀମାନଙ୍କରେ ପ୍ରାୟ ୩୭ ପ୍ରକାରର ବିଭିନ୍ନ ଜାତିର ମାଛ ଦେଖିବାକୁ ମିଳିଥାନ୍ତି । କେତେକ ଜୀବନ୍ତ ଅଛନ୍ତି ଯେଉଁମାନେ କେବଳ ଶିମିଳିପାଳ ଅଥବା ଏହାର ଆଖପାଖ ଅଞ୍ଚଳରେ ଦୃଷ୍ଟିଗୋଚର ହୁଅନ୍ତି । ଟସର ତନ୍ତୁରୁ ରେଶମ ପ୍ରସ୍ତୁତକାରୀ ଏକ ବିଶେଷ ପ୍ରକାରର ମୋଡ଼ାଲ କୋଷାପୋକ ଶିମିଳିପାଳ ବ୍ୟତୀତ ଅନ୍ୟତ୍ର ଦେଖାଯାଆନ୍ତି ନାହିଁ । ଏଠାରେ ଦେଖାଯାଉଥିବା 'ଆନ୍ଥେରିଆ ମିଲିଟା' ଓ 'ଆନ୍ଥେରିଆ ଗାଫିଆ' ଭଳି ଟସର ପୋକଗୁଡ଼ିକ ରେଶମ ଉତ୍ପାଦନରେ ପ୍ରମୁଖ ଭୂମିକା

ଗ୍ରହଣ କରିଥାନ୍ତି । ଏହି ଧରଣର ଟସର ପୋକ ଶିମିଳିପାଳର ଅନନ୍ୟ ସୃଷ୍ଟି । ଏକଦା ଭାରତୀୟ ପ୍ରାଣୀ ବିଜ୍ଞାନ ସର୍ବେକ୍ଷଣ ସଂସ୍ଥା ଦ୍ୱାରା ଅନୁଧ୍ୟାନ ସମୟରେ ଯୋରନ୍ଦା ଜଳପ୍ରପାତ ଅଞ୍ଚଳରେ ଗୋଟିଏ ପ୍ରକାର ଶାଳିଆପତନୀ ଆବିଷ୍କାର କରାଯାଇଥିଲା । ତା'ର ନାଆଁ ରଖାଯାଇଥିଲା– 'ପାରାଡକ୍ସୁରସ୍ ଯୋରନ୍ଦେନସିସ୍' । 'ଫିଲାଟସ୍ ଶିମିଳିପାଲନ୍ସିସ୍' ନାମକ ଏକ ବେଙ୍ଗ ମଧ୍ୟ ପ୍ରଥମେ ଶିମିଳିପାଳ ଅଞ୍ଚଳରୁ ଠାବ କରାଯାଇଥିଲା । ସେହି ବେଙ୍ଗର ଆକୃତି ଆମ ହାତର ଆଙ୍ଗୁଳି ପରି ମୋଟା । ଏହିସବୁ ମୌଳିକ ଜୀନିୟ ଗୁଣ ପ୍ରଦର୍ଶନ କରୁଥିବାରୁ ଶିମିଳିପାଳର ଭୂମିକା ଜୀବବିଜ୍ଞାନ ଦୃଷ୍ଟିରୁ ଅତି ଗୁରୁତ୍ୱପୂର୍ଣ୍ଣ । ସେଥିପାଇଁ କେହି କେହି ବୈଜ୍ଞାନିକ ଶିମିଳିପାଳକୁ 'ଜିନ୍‌ର ଭଣ୍ଡାର' ଭାବରେ ଅଭିହିତ କରିଥାନ୍ତି ।

ଭାରତରେ ପ୍ରାୟ ୧୫୦୦୦ ସପୁଷ୍ପକ ଉଦ୍ଭିଦ ଥିବାବେଳେ ତାହାର ୭.୧ ପ୍ରତିଶତ ଶିମିଳିପାଳରେ ଅଛନ୍ତି । ସେଥିମଧ୍ୟରୁ ଶତକଡ଼ା ୫୦ ଭାଗ ହେଉଛି ଶାଳଗଛ । ଶିମିଳି, ଅଶୋକ, ଅସନ, ଚମ୍ପା, ଜାମୁ, କେନ୍ଦୁ, ମହୁଲ, ଦେବଦାରୁ, ଶାଳ, ପିଆଶାଳ ଓ ଶିଶୁ ଇତ୍ୟାଦି ମୂଲ୍ୟବାନ୍ ବୃକ୍ଷରାଜି ଏଠାରେ ଦେଖିବାକୁ ମିଳିଥାଏ । ଖାଲି ସେତିକି ନୁହେଁ ଶିମିଳିପାଳ ଜାତୀୟ ଉଦ୍ୟାନରେ ୨୦୦ରୁ ଊର୍ଦ୍ଧ୍ୱ ପ୍ରଜାତିର ଔଷଧୀୟ ବୃକ୍ଷଲତା ରହିଛି । ଏଠାରେ ମିଳୁଥିବା ୧୨୩ ପ୍ରକାର ଚିତ୍ରା ଜାତୀୟ ଉଦ୍ଭିଦ (ଅର୍କିଡ୍‌ସ) ମଧ୍ୟରୁ ୯୪ ପ୍ରକାରର ଆକର୍ଷଣୀୟ ରଙ୍ଗ ବେରଙ୍ଗ ଫୁଲ ଫୁଟୁଥିବା ଚିତ୍ରାକୁ ଚିହ୍ନଟ କରାଯାଇଛି । ଭାରତରେ ମିଳୁଥିବା ଚିତ୍ରାଜାତୀୟ ଉଦ୍ଭିଦର ଏହା ୮ ଶତାଂଶ ଅଟେ । ସେଗୁଡ଼ିକ ମଧ୍ୟରୁ ୩ଟି ପ୍ରଜାତିର ଚିତ୍ରା କେବଳ ଶିମିଳିପାଳରେ ହିଁ ଦେଖିବାକୁ ମିଳିଥାଏ । ଏହି ୩ଟି ପ୍ରଜାତି ହେଲା– ମେଘାସନିଏନ୍‌ସିସ୍, ଟିନା ହୁକେରିଆନା ଏବଂ ବଲ୍‌ବୋଫାଇଲସ୍ ପାଣିଗ୍ରାହୀଆନମ୍ । Colx acquatica ନାମକ ଏକ ପ୍ରକାର ବିରଳ ଜଳଜ ଘାସ ଶିମିଳିପାଳର କବାଟଘାଇ ଅଞ୍ଚଳରେ ଦେଖିବାକୁ ମିଳିଥାଏ । ଏହି ଘାସଟି ଅନ୍ୟ କେଉଁଠାରେ ନାହିଁ । Oryza officinalis ଏବଂ Oryza granulota ନାମକ ଦୁଇଟି ପ୍ରଜାତିର ନୂତନ କିସମର ଧାନ ଶିମିଳିପାଳର ଖେଜୁରି ପାହାଡ଼ରୁ ୧୯୮୦ ମସିହାରେ ଆବିଷ୍କାର କରାଯାଇଥିଲା ।

ଜୈବ ବିବିଧତାର ଅନ୍ୟ ଏକ ଦିଗନ୍ତ ହେଉଛି ଶିମିଳିପାଳରେ ବସବାସ କରୁଥିବା ଆଦିମ ଅଧିବାସୀ । ଏହି ଜୈବମଣ୍ଡଳ ଭିତରେ ୬୧ଟି ଗାଁ ଏବଂ ବାହାରେ ୧୨୦୦ଟି ଗାଁ ରହିଛି । ୫,୦୦,୦୦୦ରୁ ଊର୍ଦ୍ଧ୍ୱ ଲୋକ ଏହି ଗାଁମାନଙ୍କରେ ବାସ କରନ୍ତି । ଏଠାରେ ବାସ କରୁଥିବା ସମ୍ପ୍ରଦାୟମାନେ ହେଲେ– ବାଥୁଡ଼ି, କନ୍ଧ, କୋହ୍ଲ, ସାନ୍ତାଳ, ଗଣ୍ଡ, ଭୂମିଜ, ଖଡ଼ିଆ ଓ ମାଙ୍କଡ଼ିଆ । ଏହି ଜନଜାତିମାନେ ନିଜର ଜୀବନ ଜୀବିକା ନିର୍ବାହ ପାଇଁ ମୁଖ୍ୟତଃ ଜଙ୍ଗଲ ଉପରେ ନିର୍ଭର କରି ଚଳନ୍ତି । ଏମାନେ ଗଛର ଫଳମୂଳ, ଝୁଣା, ମହୁ, ପାଳୁଅ ଛତୁ ଓ ବିଭିନ୍ନ ପ୍ରକାରର କନ୍ଦ ସଂଗ୍ରହ କରିଥାନ୍ତି । ସେଥିପାଇଁ ଶିମିଳିପାଳକୁ ଏମାନଙ୍କର ଭାତହାଣ୍ଡି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏମାନଙ୍କର ସଂସ୍କୃତି, ପରମ୍ପରା ଓ ଜୀବନଶୈଳୀ ଜୈବ ବିବିଧତାର ଏକ ଅନନ୍ୟ ବିଭବ ।

ପ୍ରାକୃତିକ ପରିବର୍ତ୍ତନ, ଅବାଧ ଗଛକଟା ଓ ଜୀବଜନ୍ତୁ ଶୀକାର ହେତୁ ଶିମିଳିପାଳରେ ଥିବା ବୃକ୍ଷଲତା ଓ ଜୀବଜନ୍ତୁଙ୍କ ଉପରେ ଏହାର ପ୍ରଭାବ ପଡୁଛି । ଏହା ସତ୍ତ୍ୱେ ମଧ୍ୟ ଶିମିଳିପାଳ ଜୈବ ବିବିଧତାର ଏକ ଅଭୁତପୂର୍ବ ଭଣ୍ଡାର । ଶିମିଳିପାଳ ସ୍ୱତନ୍ତ୍ର ପ୍ରଜାତିର ଜୀବଜନ୍ତୁ, ବୃକ୍ଷଲତା ଏବଂ ଅର୍କିଡ୍ (ଚିତ୍ରା ଜାତୀୟ ଉଦ୍ଭିଦ)ଙ୍କର ଜନ୍ମସ୍ଥାନ ହୋଇଥିବାରୁ ଏହା ସାରା ବିଶ୍ୱବାସୀଙ୍କ ପାଇଁ ପ୍ରଯୁକ୍ତି କ୍ଷେତ୍ର ଭାବେ ପରିଚୟ ସୃଷ୍ଟି କରି ଆସିଛି । ଏପରିକି ଜୈବ ବିବିଧତା କ୍ଷେତ୍ରରେ ଏହା ହିମାଳୟର ପୂର୍ବଘାଟ ଏବଂ ପଶ୍ଚିମଘାଟଠୁଁ ବି ସମୃଦ୍ଧ । ୨୦୦୯ ମସିହା ମଇ ମାସ ୨୬ ତାରିଖରେ ଦକ୍ଷିଣ କୋରିଆର କେଦୁ ଦ୍ୱୀପଠାରେ ଅନୁଷ୍ଠିତ ମନୁଷ୍ୟ ଓ ଜୈବମଣ୍ଡଳ ସମ୍ପର୍କିତ ୨୧ତମ ଆନ୍ତର୍ଜାତିକ ଅଧିବେଶନରେ ଶିମିଳିପାଳକୁ ବିଶ୍ୱସ୍ତରୀୟ ଜୈବମଣ୍ଡଳର ମାନ୍ୟତା ମଧ୍ୟ ମିଳିଛି । ମୋଟାମୋଟି ଉପରେ କହିବାକୁ ଗଲେ ହାତୀ ଅଭୟାରଣ୍ୟ, ବ୍ୟାଘ୍ର ପ୍ରକଳ୍ପ, କୁମ୍ଭୀର ଗବେଷଣା କେନ୍ଦ୍ର, ଗଛଲତାରେ ଭରପୂର ଘଞ୍ଚ ଅରଣ୍ୟର ଏକକ ସମାହାର ତଥା ଜୈବ ବିବିଧତାର ଅନନ୍ୟ ଗନ୍ତାଘର ହେଉଛି 'ଶିମିଳିପାଳ ଜାତୀୟ ଉଦ୍ୟାନ' ।

ଏମ୍.ଆଇ.ଜି.–(୧) ୨୦/୪
ହାଉସିଂବୋର୍ଡ଼ କଲୋନୀ,
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର–୭୫୧୦୧୬





# ପଞ୍ଚଧାର ପାଦଦେଶେ ଆଠମଲ୍ଲିକ

**ହିମାଂଶୁ ଶେଖର ପାଢୀ**

ଓଡ଼ିଶାର କେନ୍ଦ୍ରାଞ୍ଚଳରେ ଅବସ୍ଥିତ ପଞ୍ଚଧାର ପର୍ବତମାଳା। ସେଠାରେ ପ୍ରକୃତି ସର୍ବଦା ଚଳଚଞ୍ଚଳ । ଚିରଦିନ ବସନ୍ତର ଅଖଣ୍ଡ ରାଜତ୍ୱ । ଏହାର ଅନନ୍ତ ବୈଚିତ୍ର୍ୟମୟୀ ପ୍ରକୃତି ଯୁଗେ ଯୁଗେ ଅନେକ କବି, ଭାବୁକ ଓ ପର୍ଯ୍ୟଟକମାନଙ୍କ ଦୃଷ୍ଟି ଆକର୍ଷଣ କରି ଆସିଛି । ସମୁଦ୍ର ପତ୍ତନଠାରୁ ୭୬୦ ମିଟର ଉଚ୍ଚରେ ଅବସ୍ଥିତ ଏହି ପର୍ବତମାଳାର ଦୈର୍ଘ୍ୟ ପ୍ରାୟ ପଞ୍ଚାବନ କି.ମି., ପ୍ରସ୍ଥ କେଉଁଠି ଦଶ ଓ ଆଉ କେଉଁଠି ବାର କି.ମି. । ଚିର ସବୁଜ ଏହି ପର୍ବତଶ୍ରେଣୀ ପାଞ୍ଚୋଟି ଧାରର ସମଷ୍ଟିକୁ ନେଇ ଗଠିତ । ୧୯୨୭–୩୧ ମସିହାର ବନ୍ଦୋବସ୍ତ ଅନୁସାରେ ଏହା ବଡଝର, ମୂଳଝର, ନେକୁଡିଆଝର, ବହୁଝର ଓ ଚଣାଗାଡିଆଝରର ସମିଶ୍ରଣରେ ସୃଷ୍ଟି ହୋଇଛି । ଦକ୍ଷିଣ–ପୂର୍ବ ଓ ଉତ୍ତର–ପଶ୍ଚିମ ଆଡକୁ ବିସ୍ତାରିତ ଏହି ପର୍ବତମାଳାର ପରିସର ହାତୀଧରା ଓ ତଲେଇପଥର ସଂରକ୍ଷିତ ଜଙ୍ଗଲ ମଧ୍ୟରେ ବିଦ୍ୟମାନ । ପଞ୍ଚଧାର କ୍ରୋଡଦେଶରେ କେତକୀଝର, ତଲେଇପଥର, ଝିମେଇତୁଆ ଓ କୁଟଗାଁଖୋଲ ପ୍ରଭୃତି ମନୋରମ ସ୍ଥାନ । ପ୍ରାଚୀନ କାଳରୁ ଅନେକ ସାଧୁ ସନ୍ନ୍ୟାସୀ, ମହାପୁରୁଷ ଓ ସାଧକମାନଙ୍କର ଏହା ସାଧନାସ୍ଥଳୀ ଥିଲା । କଥିତ ଅଛି, ଆଠମଲ୍ଲିକର ପୂର୍ବତନ ରାଜା ଯୋଗୀନ୍ଦ୍ର ଦେଓ ନିଜର ମନ୍ତ୍ରୀ ପିତାମ୍ବର ମଲ୍ଲିକଙ୍କୁ ରାଜ୍ୟ ଶାସନ ଭାର ଅର୍ପଣ କରି ତଲେଇପଥର ଜଙ୍ଗଲକୁ ଯାଇ ସେଠାରେ ମାସ ମାସ ଧରି ତପସ୍ୟାରତ ହେଉଥିଲେ । ଏହି ସ୍ଥାନ ସମ୍ପ୍ରତି ତପାଖୋଲ ନାମରେ ସୁପରିଚିତ ।

ପଞ୍ଚଧାର ପର୍ବତମାଳାର ନିଘଞ୍ଚ ଜଙ୍ଗଲ ଅନେକ ବନ୍ୟଜନ୍ତୁମାନଙ୍କର ନିବାସସ୍ଥଳୀ । ହସ୍ତୀ, ବ୍ୟାଘ୍ର, ଗୟଳ, ମୃଗ, ସମ୍ବର, ବରାହ, ଶୂକର ଓ ଭଲ୍ଲୁକ ପ୍ରଭୃତି ବନ୍ୟଜନ୍ତୁମାନେ ଏଠାରେ ନିର୍ଭୟରେ ଭ୍ରମଣ କରୁଥାନ୍ତି । ଏହା ସହିତ ଅହିରାଜ ଭଳି ବୃହତ ସର୍ପମାନେ ମଧ୍ୟ ଅନେକ ସମୟରେ ପର୍ଯ୍ୟଟକମାନଙ୍କ ଦୃଷ୍ଟି ପଥାରୂଢ କରିଥାନ୍ତି । ଶାଳ, ପିଆଶାଳ, ଶାଗୁଆନ ଓ ଶିଶୁ ପ୍ରଭୃତି ଦୁର୍ଲ୍ଲଭ ବୃକ୍ଷରାଜି ଏଠାରେ ବିପୁଳ ପରିମାଣରେ ଦେଖିବାକୁ ମିଳେ ।

ବର୍ଷା ଦିନେ ପଞ୍ଚଧାର ପର୍ବତମାଳା ଅପୂର୍ବଶ୍ରୀ ଧାରଣ କରେ । କଟକ, ଭୁବନେଶ୍ୱର, ସମ୍ବଲପୁରଠାରୁ ଆଠମଲ୍ଲିକ ଯିବାକୁ ହେଲେ ପଞ୍ଚଧାର ପର୍ବତମାଳା ମଧ୍ୟ ଦେଇ ଯାଇଥିବା ଘାଟି ରାସ୍ତାରେ ଯିବାକୁ ପଡେ । ବର୍ଷା ଦିନେ ଏହାର ଶୃଙ୍ଗମାନଙ୍କ ମଧ୍ୟରେ ଭସା ବଉଦମାନଙ୍କର ଲୁଚକାଳି ଖେଳ ପର୍ଯ୍ୟଟକ ମନରେ ଅସୁମାରୀ ଆନନ୍ଦ ସୃଷ୍ଟି କରେ । ସେତେବେଳେ ଏହା ମଧ୍ୟ ଦେଇ ପ୍ରବାହିତ କୁକୁଡାଯୋରର ପୂର୍ଣ୍ଣଗର୍ଭା ଦୃଶ୍ୟ ଦେଖି ପର୍ଯ୍ୟଟକମାନେ ବିମୋହିତ ହୋଇପଡନ୍ତି ।

ପଞ୍ଚଧାର ପର୍ବତମାଳାର ଅଳ୍ପ ଦୂରରେ ଅବସ୍ଥିତ ଆଠମଲ୍ଲିକ ଏକ ଛୋଟ ସହର । ଏହାର ତିନୋଟି ପାର୍ଶ୍ୱରେ ପଞ୍ଚଧାର ପର୍ବତମାଳା ଈଶ୍ୱରଦତ୍ତ ତୋରଣ ଭଳି ଦଣ୍ଡାୟମାନ ହୋଇଥିବା ବେଳେ ଦକ୍ଷିଣ ପାର୍ଶ୍ୱରେ କଲ୍ଲୋଳିନୀ ମହାନଦୀ ଏହାର ପାଦଧୌତ କରୁଛି । ଏହି ସହର ସମ୍ପ୍ରତି ଏକ ଉପଖଣ୍ଡର ସଦର ମହକୁମା । ସ୍ୱାଧୀନତା ପୂର୍ବରୁ ଆଠମଲ୍ଲିକ ସହର କଇଁତ୍ରାଗଡ ଭାବରେ ପରିଚିତ ଥିଲା । ଚତୁର୍ଦ୍ଦଶ ଶତାବ୍ଦୀରେ ସୁନ୍ଦରଗଡ ଜିଲ୍ଲାର ବଣାଇ ରାଜ୍ୟର କଦମ୍ବ ରାଜବଂଶର ଜଣେ ସଦସ୍ୟଙ୍କ ଦ୍ୱାରା ଏଠାରେ ରାଜ୍ୟ ସ୍ଥାପନ କରାଯାଇଥିଲା । କଦମ୍ବ ରାଜବଂଶର ରାଜାମାନେ ଆଠମଲ୍ଲିକ ରାଜ୍ୟର ବିଭିନ୍ନ ସ୍ଥାନରେ ଅନେକ ମଠ ଓ ମନ୍ଦିରମାନ ନିର୍ମାଣ କରି ଶୈବ, ବୈଷ୍ଣବ ଓ ଶାକ୍ତ ଧର୍ମର ବିକାଶ ଘଟାଇବା ସଙ୍ଗେ ସଙ୍ଗେ ଆର୍ଯ୍ୟ ଓ ଅଣ–ଆର୍ଯ୍ୟ ସଂସ୍କୃତିର ଅପୂର୍ବ ସମ୍ମିଶ୍ରଣ କରେଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ।

ଆଠମଲ୍ଲିକ ସହରର ପ୍ରମୁଖ ଦର୍ଶନୀୟ ସ୍ଥାନ ମଧ୍ୟରେ ଦେବୀ ମାହେଶ୍ୱରୀଙ୍କ ମନ୍ଦିର ଅନ୍ୟତମ । ସ୍ଥାନୀୟ ମହାତ୍ମା ଗାନ୍ଧୀ

ବସ୍‌ଷ୍ଟାଣ୍ଡଠାରୁ ପ୍ରାୟ ଏକ କି.ମି. ଦୂରରେ ରୁଗୁଡିସାହିଠାରେ ତାଙ୍କ ଆସ୍ଥାନ ଅବସ୍ଥିତ । ଆଠମଲ୍ଲିକ ଅଞ୍ଚଳର ପ୍ରତ୍ୟେକ ଅଧିବାସୀଙ୍କ ଅନ୍ତରରେ ତାଙ୍କ ପ୍ରତି ଗଭୀର ଭକ୍ତି ଭାବନା ରହିଛି । କଦମ୍ବ ରାଜବଂଶର ଇଷ୍ଟଦେବୀ ଭାବରେ ଆବହମାନ କାଳରୁ ପୂଜା ପାଇ ଆସୁଥିବା ମା' ମାହେଶ୍ୱରୀ ଆଠମଲ୍ଲିକ ଅଞ୍ଚଳର ସର୍ବମୟକର୍ତ୍ତ୍ରୀ ଭାବରେ ଲୋକମାନଙ୍କୁ ଅଭୟ ବର ପ୍ରଦାନ କରିଥାନ୍ତି ।

ଦେବୀ ମାହେଶ୍ୱରୀ ଏଠାରେ ଏକାଦଶ ଭୁଜା ଦୁର୍ଗା ରୂପରେ ପୂଜିତା । ଦେବୀ ଦୁର୍ଗାଙ୍କ ମୂର୍ତ୍ତି ସାଧାରଣତଃ ଦୁଇ, ଚାରି, ଛଅ, ଆଠ, ଦଶ ଓ କୋଡିଏ ଭୁଜା ହୋଇଥିବା ବେଳେ ଏକାଦଶ ଭୁଜା ମୂର୍ତ୍ତି ଦେଖିବା ବିରଳ ମନେହୁଏ । ତେଣୁ ମୂର୍ତ୍ତିକଳା ଇତିହାସରେ ଆଠମଲ୍ଲିକର ମା' ମାହେଶ୍ୱରୀଙ୍କ ମୂର୍ତ୍ତିର ଯେ ସ୍ୱତନ୍ତ୍ର ସ୍ଥାନ ରହିଛି ଏଥିରେ ସନ୍ଦେହ ନାହିଁ । ତେବେ ଏକାଦଶ ଭୁଜା ମୂର୍ତ୍ତି ନିର୍ମାଣର ପ୍ରାସଙ୍ଗିକତା ରହିଛି । ଦେବୀ ଭାଗବତରୁ ଜଣାଯାଏ ଯେ ମହିଷାସୁରକୁ ହତ୍ୟା କରିବା ସମୟରେ ମା' ଦଶଭୁଜା ଦୁର୍ଗା ବିବସ୍ତ୍ର ହୋଇ ନିଜର ଅପରୂପ ସୌନ୍ଦର୍ଯ୍ୟରେ ତାକୁ ବିମୋହିତ କରି ଦେଇଥିଲେ । ମହିଷାସୁରକୁ ହତ୍ୟା କରିବା ପରେ ତାଙ୍କର ହିତାହିତ ଜ୍ଞାନ ଫେରିଲା । ଦେବତାମାନେ ତାଙ୍କୁ ବିବସ୍ତ୍ର ରହିଥିବା କଥା ଚେତାଇ ଦେବାରୁ ଦେବୀ ଲଜ୍ଜାବୋଧ କଲେ । ସଙ୍ଗେ ସଙ୍ଗେ ନାଭିରୁ ଅନ୍ୟ ଏକ ହାତ ବାହାରି ଆସି ତାଙ୍କ ଯୌନାଙ୍ଗକୁ ଘୋଡାଇ ଦେଲା । ଏହି ଘଟଣା ହିଁ ମାହେଶ୍ୱରୀଙ୍କ ମୂର୍ତ୍ତିରେ ପ୍ରତିଫଳିତ ହୋଇଛି ।

୧୯୨୦ ମସିହାରେ ନିର୍ମିତ ବର୍ତ୍ତମାନର ମନ୍ଦିର ଭିତରେ ଦେବୀ ମାହେଶ୍ୱରୀ ପୂର୍ବମୁଖା ହୋଇ ବସିଛନ୍ତି । ତାଙ୍କ ସହିତ ଏଠାରେ ଦଧିବାମନଙ୍କୁ ମଧ୍ୟ ପୂଜା କରାଯାଏ । ତେଣୁ ଏହା ହେଉଛି ବୈଷ୍ଣବ ଓ ଶାକ୍ତ ଧର୍ମର ଅପୂର୍ବ ସମନ୍ୱୟର ପୀଠ । ସେମାନଙ୍କ ବ୍ୟତୀତ ଏଠାରେ ମହାକାଳୀ, ନାରାୟଣୀ, ମହାଲକ୍ଷ୍ମୀ, ମହାକାଳ ଭୈରବୀ ଦେବୀମାନଙ୍କୁ ପୂଜା କରାଯାଏ । ପ୍ରତିଦିନ ମାହେଶ୍ୱରୀଙ୍କ ପୂଜା ମହାଆଡମ୍ବର ସହକାରେ ଏଠାରେ ଅନୁଷ୍ଠିତ ହୁଏ । ଭୋଗ ହିସାବରେ ତାଙ୍କୁ ମୁଆଁ, ନଡିଆ, ଦହି, ଚହ୍ଲା, କ୍ଷୀର ପ୍ରଭୃତି ଅର୍ପଣ କରାଯାଏ । ଦିନକୁ ଦୁଇବେଳା ଘୃତ ଅନ୍ନର ଭୋଗ ଲାଗେ। ଯାନିଯାତ୍ରା ଓ ପର୍ବପର୍ବାଣି ଦିନମାନଙ୍କରେ ବିଶେଷତଃ ଆଶ୍ୱିନ ମାସରେ ଷୋହଳ ପୂଜା କରାଯିବାର ବ୍ୟବସ୍ଥା ରହିଛି । ବ୍ରାହ୍ମଣମାନେ ମା' ମାହେଶ୍ୱରୀଙ୍କୁ ତାନ୍ତ୍ରିକ ରୀତିରେ ପୂଜା କରୁଥିବା ବେଳେ ତାଙ୍କ ସହିତ ପ୍ରତିଷ୍ଠିତ ଦଧିବାମନଙ୍କୁ ସାତ୍ତ୍ୱିକ ରୀତିରେ ପୂଜା କରିଥାନ୍ତି ।

ଆଠମଲ୍ଲିକ ସହରଠାରୁ ପଶ୍ଚିମ ଦିଗରେ ବୌଦ୍ଧ ସହରକୁ ମାଧପୁର ଦେଇ ଲମ୍ବି ଯାଇଥିବା ରାସ୍ତାରେ ପ୍ରାୟ ଛଅ କି.ମି. ଗଲେ ବାଟରେ ପଡେ ପବିତ୍ର ପୀଠ ଦେଉଳଝରୀ । ଘଞ୍ଚ କିଆବଣ ଆଚ୍ଛାଦିତ ପ୍ରକୃତିର ସୁରମ୍ୟ କୋଳରେ ଚବିଶ ଏକର ଭୂମି ଉପରେ ଅବସ୍ଥିତ ଏହି ପୀଠ କେବଳ ଶୈବ ଓ ଶାକ୍ତ ଧର୍ମାବଲମ୍ବୀ ଭକ୍ତମାନଙ୍କର ନୁହେଁ, ତତ୍‌ସହିତ ସୌନ୍ଦର୍ଯ୍ୟ ପିପାସୁ ପର୍ଯ୍ୟଟକମାନଙ୍କ ଆଗମନର କେନ୍ଦ୍ରବିନ୍ଦୁ ପାଲଟିଛି । ଏହି ପୁଣ୍ୟ ପୀଠରେ ଚାରିଶମ୍ଭୁଙ୍କୁ ପୂଜା କରାଯାଏ । ସେମାନେ ହେଲେ ସିଦ୍ଧେଶ୍ୱର, ମହେଶ୍ୱର, କେଦାରେଶ୍ୱର ଏବଂ ଜାଗେଶ୍ୱର । ଏହା ସହିତ ଶାକ୍ତ ଧର୍ମର ପ୍ରଧାନ ଠାକୁରାଣୀ ମା' ମାହେଶ୍ୱରୀ ଏବଂ ବନବିଧିକାର ଦେବୀ ଖମ୍ଭେଶ୍ୱରୀ ମଧ୍ୟ ଏଠାରେ ଉପସ୍ଥିତ ରହି କେଉଁ ପ୍ରାଚୀନ କାଳରୁ ଭକ୍ତମାନଙ୍କୁ ଆଶୀର୍ବାଦ ପ୍ରଦାନ କରୁଛନ୍ତି । ଆଠମଲ୍ଲିକ– ମାଧପୁର ରାସ୍ତାକୁ ଲାଗି ରହିଥିବା ଏହି ପୀଠର ଫାଟକ ଅତିକ୍ରମ କରି କିଛିବାଟ ଆଗକୁ ଗଲେ ବାମପାର୍ଶ୍ୱରେ ତିନୋଟି ସିମେଣ୍ଟ କୁଣ୍ଡ ଦୃଶ୍ୟମାନ ହୁଏ । ଏହି କୁଣ୍ଡକୁ ଲାଗି ପଶ୍ଚିମ ଦିଗରେ ଅବସ୍ଥିତ ପ୍ରଭୁ ମହେଶ୍ୱର, ଦେବୀ ମାହେଶ୍ୱରୀ ଏବଂ ପ୍ରଭୁ କେଦାରେଶ୍ୱରଙ୍କ ମନ୍ଦିର । ଏମାନେ ସମସ୍ତେ ପୂର୍ବମୁଖା । କେଦାରେଶ୍ୱର ମନ୍ଦିରର ସମ୍ମୁଖରେ ପଶ୍ଚିମାଭିମୁଖୀ ଖମ୍ଭେଶ୍ୱରୀଙ୍କ ମନ୍ଦିର । ଏହି ମନ୍ଦିର ସମୂହର ନିକଟବର୍ତ୍ତୀ ପୂର୍ବଦିଗରେ ପଶ୍ଚିମାଭିମୁଖୀ ବାବା ଯାଗେଶ୍ୱରଙ୍କ ମନ୍ଦିର । ସାଧାରଣତଃ ଶୈବପୀଠମାନଙ୍କରେ ଏକରୁ ଅଧିକ ଶିବ ମନ୍ଦିର ଥିଲେ ଗୋଟିଏ ମନ୍ଦିର ପଶ୍ଚିମମୁଖା ରହିଥାଏ ଏବଂ ଏହାର ଦେବତାକୁ ପଶ୍ଚିମ ସୋମନାଥ କୁହାଯାଏ । ତେବେ ଏଠାରେ ପ୍ରଭୁ ଯାଗେଶ୍ୱର ପଶ୍ଚିମମୁଖୀ ହୋଇ ମଧ୍ୟ ନିଜର ନାଁରେ ପ୍ରସିଦ୍ଧ । ଏହାହିଁ ଏହି ପୀଠର ପ୍ରଧାନ ବିଶେଷତ୍ୱ ।

ଏହି ମନ୍ଦିର ସମୂହ ଅତିକ୍ରମ କରି ବାମ ପାର୍ଶ୍ୱରେ ଲମ୍ବି ଯାଇଥିବା ରାସ୍ତାରେ ଅଳ୍ପବାଟ ଗଲେ ପଡେ ପ୍ରଭୁ ସିଦ୍ଧେଶ୍ୱରଙ୍କ ମନ୍ଦିର । ଦେଉଳଝରୀର ଚାରିଶମ୍ଭୁଙ୍କ ମଧ୍ୟରେ ସେ ମୁଖ୍ୟ ଦେବତା । ଭକ୍ତମାନେ ପ୍ରଥମେ ବାବା ସିଦ୍ଧେଶ୍ୱରଙ୍କୁ ଦର୍ଶନ କରିସାରି ପରେ ଅନ୍ୟ ଦେବଦେବୀଙ୍କୁ ଦର୍ଶନ କରନ୍ତି । ସିଦ୍ଧେଶ୍ୱର ମନ୍ଦିରର ବେଢା ମଧ୍ୟରେ ମୁଖ୍ୟ ମନ୍ଦିର ଜଗମୋହନ, ନାଟ ମଣ୍ଡପ, ଭୋଗ ମଣ୍ଡପ ଆଦି ଅବସ୍ଥିତ । ଜଗମୋହନର ଚଟାଣ ମାର୍ବଲ ପଥରରେ ନିର୍ମିତ ହୋଇଛି । ଏହି ମନ୍ଦିରର ଗର୍ଭଗୃହରେ ଶିବ ଓ ପାର୍ବତୀଙ୍କ ଅଷ୍ଟଧାତୁରେ ନିର୍ମିତ ପ୍ରତିମା ପ୍ରତିଷ୍ଠିତ । ଗର୍ଭଗୃହର ଅନ୍ୟ ଏକ ଆକର୍ଷଣ ହେଲା ଏହାର ଶିବଲିଙ୍ଗ । ଭୂପୃଷ୍ଠରୁ ପ୍ରାୟ ଛଅ ଫୁଟ ତଳେ ଅବସ୍ଥିତ ଏହି ସ୍ୱୟଂମ୍ଭୁ ଲିଙ୍ଗର ନିମ୍ନଭାଗରେ ଏକ ଉଷ୍ଣଝର





ଅନବରତ ବୋହି ଏହାକୁ ଧୌତ କରୁଛି । ଲିଙ୍ଗକୁ ଧୌତକରି ସେଠାରୁ ଏକ କ୍ଷୀଣ ଜଳଧାର ହୋଇ ମହାନଦୀ ପର୍ଯ୍ୟନ୍ତ ବୋହିଯାଇଛି । ଅନ୍ୟାନ୍ୟ ଶିବ ମନ୍ଦିର ପରି ସିଦ୍ଧେଶ୍ୱର ମନ୍ଦିରର ପାର୍ଶ୍ୱ ଦେବତା ଭାବରେ ଦକ୍ଷିଣ ଦିଗରେ ଗଣେଶ୍ୱର, ପଶ୍ଚିମ ଦିଗରେ କାର୍ତ୍ତିକେଶ୍ୱର ଏବଂ ଉତ୍ତର ଦିଗରେ ଦେବୀ ପାର୍ବତୀ ଅବସ୍ଥିତ । ଏହି ମନ୍ଦିର ବେଢା ମଧ୍ୟସ୍ଥ ଦକ୍ଷିଣ ଦିଗରେ ବରୁଣ କୁଣ୍ଡ ଦୃଶ୍ୟମାନ । ସିଦ୍ଧେଶ୍ୱର ବାବାଙ୍କ ସ୍ନାନ ଓ ଭୋଗ ଇତ୍ୟାଦି ପାଇଁ ଆବଶ୍ୟକ ଜଳ ଏହିଠାରୁ ବ୍ୟବହୃତ ହୋଇଥାଏ । ଏଠାରେ ପ୍ରତିଷ୍ଠିତ ଠାକୁର ପ୍ରଥମେ ଏକ ଚାଳଘରେ ପୂଜା ପାଉଥିଲେ । ୧୯୩୬ ମସିହାରେ ଆଠମଲ୍ଲିକ ଗଡଜାତର ମହାରାଜା କିଶୋର ଚନ୍ଦ୍ର ଦେଓଙ୍କ ଦ୍ୱାରା ବର୍ତ୍ତମାନର ମନ୍ଦିର ନିର୍ମାଣ କରାଯାଇଥିଲା । ପରେ ପରେ କେତେଜଣ ଭକ୍ତଙ୍କ ଉଦ୍ୟମରେ ଯାଗେଶ୍ୱର, ମହେଶ୍ୱର ଏବଂ କେଦାରେଶ୍ୱର ମନ୍ଦିର ନିର୍ମିତ ହେଲା ।

ସିଦ୍ଧେଶ୍ୱର ମନ୍ଦିରରେ ସ୍ୱୟଂମ୍ଭୁ ଲିଙ୍ଗର ଆବିର୍ଭାବ ସମ୍ପର୍କରେ ଏକ କିମ୍ବଦନ୍ତୀ ରହିଛି । ଏହି କିମ୍ବଦନ୍ତୀ ଅନୁସାରେ ତ୍ରେତୟା ଯୁଗରେ ଭଗବାନ ରାମଚନ୍ଦ୍ର ବନବାସରେ ଥିବା ସମୟରେ ଦେଉଳଝରୀର ଅଦୂରରେ ଅବସ୍ଥିତ ପଞ୍ଚଧାର ପର୍ବତରେ କିଛି କାଳ ଅବସ୍ଥାନ କରିଥିଲେ । ଏହି ସମୟରେ ମା' ସୀତା ପଞ୍ଚଧାର ପର୍ବତର ପାଦଦେଶରେ ଏହି ସ୍ୱୟଂମ୍ଭୁ ଲିଙ୍ଗକୁ ଠାବ କରି ପୂଜାର୍ଚ୍ଚନା କରୁଥିଲେ । ପ୍ରଭୁ ରାମଚନ୍ଦ୍ର ପଞ୍ଚଧାର ପର୍ବତ ଛାଡି ଚାଲିଯିବା ବେଳେ ମା' ସୀତା ଗଙ୍ଗାଦେବୀଙ୍କୁ ସ୍ମରଣ କରି ପ୍ରତ୍ୟେକ ଦିନ ସିଦ୍ଧେଶ୍ୱର ବାବାଙ୍କୁ ସ୍ନାନ କରାଇ ପୂଜାର୍ଚ୍ଚନା କରିବାକୁ ଅନୁରୋଧ କରିଥିଲେ । ସେହିଦିନଠାରୁ ଗଙ୍ଗାମାତା ଲିଙ୍ଗର ନିମ୍ନଭାଗରୁ ପ୍ରସ୍ଫୁଟିତ ହୋଇ ଉଷ୍ମ ଜଳରାଶି ଦ୍ୱାରା ସିଦ୍ଧେଶ୍ୱର ମହାପ୍ରଭୁଙ୍କ ସ୍ନାନ କରାଇ ଆସିଛନ୍ତି । ଯେଉଁ ବର୍ଷ ବୈଶାଖ ମାସରେ ବାରୁଣୀ ଯୋଗ ପଡେ, ସେତେବେଳେ ଦେଉଳଝରୀଠାରେ ଥିବା ସମସ୍ତ ଶିବଲିଙ୍ଗର ନିମ୍ନ ଭାଗରୁ ଅଧିକ ଜଳ ଉଦ୍‌ଗୀରଣ ହୋଇ ଲିଙ୍ଗଗୁଡିକ ପାଣିରେ ବୁଡିଯାଏ । ୧୯୭୧ ମସିହାରେ ଏପରି ଏକ ବାରୁଣୀ ଯୋଗ ପଡିଥିଲା ବୋଲି କୁହାଯାଏ ।

ଦେଉଳଝରୀର ଅନ୍ୟ ଏକ ଆକର୍ଷଣ ହେଲା ଏହାର ଉଷ୍ମ ପ୍ରସ୍ରବଣ । ସମ୍ପ୍ରତି ଏଠାରେ ଚବିଶିଟି ଉଷ୍ମ ପ୍ରସ୍ରବଣ କୁଣ୍ଡ ରହିଛି, ଯାହା ଓଡ଼ିଶାର ଅନ୍ୟାନ୍ୟ ଉଷ୍ମପ୍ରସ୍ରବଣ ଥିବା ସ୍ଥାନରେ ବିରଳ । ଏହି ଭୂଖଣ୍ଡର ଉଷ୍ମଝର ସିକ୍ତ ଓ ତପ୍ତ । ଭୂମଧ୍ୟସ୍ଥ ଗନ୍ଧକର ଉତ୍ତପ୍ତ ବାଷ୍ପ ଓ ଜଳ ଉଦ୍‌ଗୀରଣ ହୋଇ ଉପରକୁ ଉଠି କ୍ଷୀଣ ସ୍ରୋତ ଧାରରେ ପ୍ରବାହମାନ । ଏହାର ଉତ୍ତାପ ଏକଶହ ଚଉତିରିଶ ଡିଗ୍ରୀ ସେଣ୍ଟିଗ୍ରେଡ୍ । ପୌରାଣିକ ମତାନୁସାରେ ଉକ୍ତ ସ୍ଥାନରେ ଏକଦା ଚୌରାଅଶୀଟି ଉଷ୍ମ କୁଣ୍ଡ ଥିଲା । ପ୍ରତ୍ୟେକ କୁଣ୍ଡରେ ଅବଗାହନ କଲେ ଗୋଟିଏ ନର୍କରୁ ମୁକ୍ତି ମିଳେ ବୋଲି ବିଶ୍ୱାସ କରାଯାଏ । ସମ୍ପ୍ରତି ଅଧିକାଂଶ କୁଣ୍ଡ ପୋତି ହୋଇ ପଡିଥିବା ବେଳେ ମାତ୍ର ଚବିଶିଟି କୁଣ୍ଡର ସ୍ଥିତି ଜଣାପଡେ । ପ୍ରତ୍ୟେକ କୁଣ୍ଡର ନାମକରଣ ହୋଇଛି । ଉକ୍ତ କୁଣ୍ଡଗୁଡିକ ମଧ୍ୟରେ ଅଗ୍ନିକୁଣ୍ଡ, ରକ୍ତକୁଣ୍ଡ, ହିମକୁଣ୍ଡ ଓ ଘୃତକୁଣ୍ଡ ଇତ୍ୟାଦି ପ୍ରଧାନ । ମହେଶ୍ୱର, ମାହେଶ୍ୱରୀ ଓ କେଦାରେଶ୍ୱର ମନ୍ଦିର ସମ୍ମୁଖରେ ଅବସ୍ଥିତ ଦୁଇଟି ବିଶାଳ କୁଣ୍ଡ, ଭକ୍ତ ଓ ପର୍ଯ୍ୟଟକମାନଙ୍କ ସ୍ନାନକୁଣ୍ଡ ଭାବରେ ବ୍ୟବହୃତ ହୁଏ । ଏହି ଦୁଇଟି କୁଣ୍ଡ ମଧ୍ୟରୁ ଗୋଟିକର ଜଳ ଉଷ୍ମ ହୋଇଥିବା ବେଳେ ଅନ୍ୟଟି ଶୀତଳ । ଶୀତ ଦିନରେ ଉଷ୍ମ କୁଣ୍ଡରେ ଭକ୍ତ ଓ ପର୍ଯ୍ୟଟକମାନେ ସ୍ନାନ କରି ଆନନ୍ଦିତ ହୁଅନ୍ତି । ଆଶ୍ଚର୍ଯ୍ୟର କଥା, ଏହି କୁଣ୍ଡ ଦୁଇଟି ଲାଗି ରହିଥିଲେ ମଧ୍ୟ ଏବଂ ଉଭୟ କୁଣ୍ଡ ମଧ୍ୟରେ ସଂଯୋଗ ଦ୍ୱାରଦେଇ ଜଳ ପ୍ରବାହିତ ହେଉଥିଲେ ମଧ୍ୟ କୌଣସି କୁଣ୍ଡସ୍ଥିତ ଜଳର ତାପମାତ୍ରା କେବେହେଲେ ପରିବର୍ତ୍ତନ ହୁଏ ନାହିଁ ।

ମହାନଦୀ କୂଳରେ ସୁଶୋଭିତ ବୃକ୍ଷରାଜି ମଧ୍ୟରେ ଅବସ୍ଥିତ ବେଲପୁଞ୍ଜି ମଠ । ମଠ ଭିତରେ ଏକ ବିରାଟ ପ୍ରାର୍ଥନା ପ୍ରକୋଷ୍ଠ, ଯାହାକି ରାସ ମଣ୍ଡପ ନାମରେ ସର୍ବଜନବିଦିତ । ତା' ନିକଟରେ କଇଁଫୁଲିଆ ବାବାଙ୍କର ସମାଧିପୀଠ । ଦେଉଳଝରୀଠାରୁ ପ୍ରାୟ ୧୭ କି.ମି. ଦୂରରେ ଅବସ୍ଥିତ ଏହି ସୁରମ୍ୟ ସ୍ଥାନରେ ସବୁଦିନ ଭକ୍ତ ତଥା ଶାନ୍ତିପ୍ରିୟ ମଣିଷମାନଙ୍କର ପ୍ରବଳ ଭିଡ ହୁଏ । ଭଜନ ସଂକୀର୍ତ୍ତନ ଓ ଧୂପ ଦୀପରେ ଏହା ସର୍ବଦା ମୁଖରିତ ହେଉଥାଏ । ଶୀତଦିନେ ଏଠାରେ ବଣଭୋଜି ପାଇଁ ପ୍ରବଳ ଭିଡ ଲାଗି ରହେ । ଖରାଦିନେ ସାୟଂ କାଳରେ ଅନେକ ପ୍ରକୃତି ପ୍ରେମୀ ମଣିଷ ଏଠାକୁ ଛୁଟି ଆସନ୍ତି ଦୈନନ୍ଦିନର ବ୍ୟସ୍ତ ଜୀବନରୁ ଟିକିଏ ମୁକ୍ତି ପାଇଁ । ମହାଆନନ୍ଦରେ ମହାନଦୀରେ ନୌବିହାର କରନ୍ତି । ମଳୟ ପବନ ସାଙ୍ଗକୁ ନାଉରିଆର ମନ ଫୁଲାଣିଆ ଗୀତ ସେମାନଙ୍କ ମନକୁ ହରଣ କରିନିଏ ।

ଆଠମଲ୍ଲିକରୁ ପୂର୍ବ ଦିଗକୁ ପଚିଶି କି.ମି. ଗଲେ ଦୋରୁହା ଗ୍ରାମ ଦୃଷ୍ଟିଗୋଚର ହୁଏ । ଏହି ଗ୍ରାମ ନିକଟସ୍ଥ ମହାନଦୀ କୂଳରେ ପଞ୍ଚଧାର ପର୍ବତର ପାଦଦେଶରେ ତଥା ସାତକୋଶିଆ ଗଣ୍ଡର ପ୍ରାରମ୍ଭରେ ମା' ବିନିକେୟୀ ଠାକୁରାଣୀ ଏକ ସୁରମ୍ୟ ପରିବେଶରେ ବୃକ୍ଷ ମୂଳରେ ପୂଜା ପାଉଛନ୍ତି । ତାଙ୍କର ଉକ୍ତ ସ୍ଥାନକୁ ଆଗମନ ସମ୍ପର୍କରେ ଏକ ସୁନ୍ଦର କିମ୍ବଦନ୍ତୀ ଅଛି । ଏହି କିମ୍ବଦନ୍ତୀ ଅନୁସାରେ ସୁବର୍ଣ୍ଣପୁର ଜିଲ୍ଲାର ବିନିକା ଅଞ୍ଚଳରୁ ବାଣିଜ୍ୟ ଉଦ୍ଦେଶ୍ୟରେ ତଳମୁଣ୍ଡରୁ ଆସିଥିବା ବଣିକମାନେ ସେହି ଅଞ୍ଚଳରୁ ବିନିକେୟୀ ଠାକୁରାଣୀଙ୍କୁ ଚୋରିକରି ନେଇଯାଉଥିଲେ ।

ସାତକୋଶିଆ ଗଣ୍ଡର ଦୋରୁହା ଗ୍ରାମ ଉପକଣ୍ଠରେ (ଯେଉଁଠି ଦେବୀ ସମ୍ପ୍ରତି ଅବସ୍ଥାପିତା) ମା'ଙ୍କ ଇଚ୍ଛାରେ ଡଙ୍ଗା ଆଗକୁ ନଯିବାରୁ ତାଙ୍କୁ ମହାନଦୀ କୂଳରେ ରଖିଦେଇ ସେମାନେ ଚାଲିଗଲେ । ସେହିଦିନଠାରୁ ମା' ବିନିକେୟୀ ସେଠାରେ ପୂଜା ପାଉଛନ୍ତି ।

ମା' ବିନିକେୟୀଙ୍କ ମୂର୍ତ୍ତିଟି କେଉଁ ଶତାବ୍ଦୀର ତାହା ସ୍ପଷ୍ଟ ରୂପେ ନିରୂପଣ କରାଯାଇ ନାହିଁ । ତେବେ ଏହାର ଗଠନ ପ୍ରଣାଳୀ ଓ ସ୍ଥାପତ୍ୟରୁ ମୂର୍ତ୍ତିଟି ନବମ ଶତାବ୍ଦୀରେ ନିର୍ମିତ ହୋଇଥିବାର ଅନୁମାନ କରାଯାଏ । ସୁବର୍ଣ୍ଣପୁର ଜିଲ୍ଲାର ବୈଦ୍ୟନାଥସ୍ଥିତ କୋଶଳେଶ୍ୱର ମନ୍ଦିରର କାରୁକାର୍ଯ୍ୟ ସହିତ ଏହାର ଗଠନ ଶୈଳୀର ସାମଞ୍ଜସ୍ୟ ରହିଛି । କୋଶଳେଶ୍ୱର ମନ୍ଦିର ପରାକ୍ରମଶାଳୀ ତେଲୁଗୁଚୋଡମାନଙ୍କ ରାଜତ୍ୱ କାଳରେ ନିର୍ମାଣ କରାଯାଇଥିଲା । ସେଠାରେ ଥିବା ସ୍ଥାପତ୍ୟଗୁଡ଼ିକ ମା' ବିନିକେୟୀଙ୍କ ମୂର୍ତ୍ତିର ଶୈଳୀରେ ନିର୍ମାଣ କରାଯାଇଥିବାର ଅନୁମିତ ହୁଏ । ମା'ଙ୍କ ମୂର୍ତ୍ତିଟି ଦୁଷ୍ଟ ସଂହାର ମୁଦ୍ରାରେ ନିର୍ମିତ । ମା' ବିନିକେୟୀ ତାଙ୍କର ଗୋଟିଏ ପାଦ ଏକ ବାଳକ ଉପରେ ରଖିଥିବାବେଳେ ଅନ୍ୟ ପକ୍ଷରେ କୋଳରେ ଏକ ଶିଶୁକୁ ଆଲିଙ୍ଗନ କରୁଛନ୍ତି । ଏଥିରୁ ତାଙ୍କର ଦୁଷ୍ଟ ସଂହାରଣ ଓ ସନ୍ଥ ପାଳନର ପ୍ରମାଣ ମିଳେ । ଶାନ୍ତ, ସରଳ ଓ ନିରୀହ ଲୋକମାନଙ୍କୁ ଦେବୀ ସ୍ନେହ କରୁଥିବା ବେଳେ ଦୁଷ୍ଟ, ଗର୍ବୀ ଓ ଅହଂକାରୀ ବ୍ୟକ୍ତିମାନଙ୍କ ପ୍ରତି ଦଣ୍ଡବିଧାନ କରନ୍ତି ।

ମା' ବିନିକେୟୀ ଠାକୁରାଣୀଙ୍କ ପୀଠ ଏକ ମନୋରମ ପ୍ରାକୃତିକ ପରିବେଶ ମଧ୍ୟରେ ଅବସ୍ଥିତ । ସମ୍ମୁଖରେ ମହାନଦୀର ନୀଳ ଜଳରାଶିର ଦୃଶ୍ୟ ଅତୀବ ମନମୁଗ୍ଧକର । ଅନ୍ୟ ପାର୍ଶ୍ୱରେ ଶ୍ୟାମଳ ସମ୍ଭାରର ଅପୂର୍ବ ପ୍ରାକୃତିକ ଦୃଶ୍ୟ ଭକ୍ତର ହୃଦୟକୁ ସ୍ୱର୍ଗୀୟ ଆନନ୍ଦରେ ଉଦ୍‌ବେଳିତ କରେ । ବିଶେଷତଃ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ କାଳରେ ଏହି ସ୍ଥାନଟି ଅନୁପମ ଶୋଭାରେ ମଣ୍ଡିତ ହୋଇଥାଏ । ଗ୍ରୀଷ୍ମ କାଳରେ ଏଠାରେ ସାନ୍ଧ୍ୟ ସମୀରଣ ନିଷ୍ଠୁର ନିଦାଘଜନିତ କ୍ଳାନ୍ତିକୁ ହରଣ କରିନିଏ । ଦେବୀଙ୍କ ପୂଜା ସମୟରେ ଘଣ୍ଟ ଓ ଶଙ୍ଖଧ୍ୱନୀ ଭକ୍ତର ମନରେ ଭାବାନ୍ତର ସୃଷ୍ଟି କରେ । କ୍ଷଣିକ ପାଇଁ ସାଂସାରିକ ମାୟାର ବନ୍ଧନ ଛିନ୍ନ କରି ମନପକ୍ଷୀ ଉଡିଯାଏ ସେହି ଅଜଣା ଅନନ୍ତ ଆକାଶର ଉଦାର ହୃଦୟକୁ ।

ନୃତ୍ୟରତା ମହାନଦୀର କୂଳେ କୂଳେ ଯେଉଁ ଶୋଭା ସମ୍ପଦ ରହିଛି, ତା' ଭିତରେ ଏ ସ୍ଥାନଟି କ୍ଷୁଦ୍ର ହେଲେ ମଧ୍ୟ ଅନନ୍ୟ । ମହାନଦୀର ଗଭୀର ଜଳରାଶି, ଶ୍ୟାମଘନ ପର୍ବତମାଳାର ତରଙ୍ଗାୟିତ ଭଙ୍ଗୀ, ପକ୍ଷୀମାନଙ୍କ କାକଳି, ନୌବିହାର ସମୟରେ ନାଉରିଆର ମନ ଭୁଲାଣିଆ ସଙ୍ଗୀତ, ସର୍ବୋପରି ମେଘମୁକ୍ତ ଆକାଶର ନୀଳିମା ସବୁ ଯେମିତି ପର୍ଯ୍ୟଟକକୁ ସ୍ତବ୍ଧ କରିଦିଏ । ବର୍ଷର ଅଧିକାଂଶ ସମୟରେ ଏଠାରେ ଅସୁମାରୀ ପର୍ଯ୍ୟଟକଙ୍କ ଭିଡ ପରିଲକ୍ଷିତ ହୁଏ ।

**କେମିତି ଯିବେ:** ଭୁବନେଶ୍ୱର, କଟକ, ଅନୁଗୋଳ, ସମ୍ବଲପୁର, ରେଢାଖୋଲ ଏବଂ ବୌଦ୍ଧରୁ ସିଧାସଳଖ ବସ୍ ସେବା ଆଠମଲ୍ଲିକକୁ ରହିଛି । ବୌଦ୍ଧ ଓ ଅନୁଗୋଳ ସହରରୁ ପ୍ରତି ଘଣ୍ଟାରେ ବସ୍ ମିଳେ । ବାରିପଦା, ବାଲେଶ୍ୱର, ରାଉରକେଲା, ବ୍ରହ୍ମପୁର ପ୍ରଭୃତି ସ୍ଥାନରୁ ଆସୁଥିବା ପର୍ଯ୍ୟଟକମାନେ ସମ୍ବଲପୁର–କଟକ ଜାତୀୟ ରାଜପଥରେ ଅବସ୍ଥିତ ବଇଣ୍ଡା ଷ୍ଟେସନରେ ଓହ୍ଲାଇ ଆଠମଲ୍ଲିକ ଯାଉଥିବା ବସ୍ ଧରିପାରିବେ । ଆଠମଲ୍ଲିକର ଦୂରତା କଟକରୁ ୨୧୦ କି.ମି, ଭୁବନେଶ୍ୱରରୁ ୨୪୦ କି.ମି., ସମ୍ବଲପୁରରୁ ୧୬୦ କି.ମି., ଅନୁଗୋଳରୁ ୮୦ କି.ମି., ବୌଦ୍ଧରୁ ୪୦ କି.ମି. ଏବଂ ବଇଣ୍ଡାରୁ ୩୬ କି.ମି. ରାସ୍ତା ।

**କେଉଁଠି ରହିବେ:** ଆଠମଲ୍ଲିକରେ ପୂର୍ତ୍ତ ବିଭାଗ, ମାନଯୋର ଜଳସେଚନ ପ୍ରକଳ୍ପ ଏବଂ ଉପଖଣ୍ଡ ପ୍ରଶାସନର ଅତିଥିଶାଳା ରହିଛି । ସ୍ୱଳ୍ପ ଖର୍ଚ୍ଚରେ ରହିବା ପାଇଁ ଏନ୍.ଏ.ସି. ପରିଚାଳିତ ଏକ ଧର୍ମଶାଳା ମଧ୍ୟ ଏଠାରେ ରହିଛି । ଆଠମଲ୍ଲିକରୁ ଅଟୋ ବା ଟ୍ୟାକ୍ସିରେ ଉପର ବର୍ଣ୍ଣିତ ସମସ୍ତ ସ୍ଥାନ ଯାଇପାରିବେ । ଅଧିକ ସୁଖ ଓ ସ୍ୱାଚ୍ଛନ୍ଦ୍ୟ ଚାହୁଁଥିବା ପର୍ଯ୍ୟଟକମାନେ ଅନୁଗୋଳରେ ଏକ ଭଲ ହୋଟେଲରେ ଅବସ୍ଥାନ କରି ଗୋଟିଏ ଦିନରେ ସମସ୍ତ ସ୍ଥାନ ଭ୍ରମଣ କରିପାରିବେ ।

ବିଭାଗୀୟ ମୁଖ୍ୟ, ଇତିହାସ ବିଭାଗ
ବୀରମହାରାଜପୁର ମହାବିଦ୍ୟାଳୟ,
ବୀରମହାରାଜପୁର–୭୬୭୦୧୮
ଜିଲ୍ଲା: ସୁବର୍ଣ୍ଣପୁର



# ଓଡ଼ିଶାର ପର୍ଯ୍ୟଟନ କେନ୍ଦ୍ର ବିଜୁ ଦ୍ୱୀପ

ଶରତ କୁମାର ରାଉତ

ଭାରତର ଦକ୍ଷିଣ-ପୂର୍ବ ଦିଗରେ ଅବସ୍ଥିତ ମନୋରମ ଦେଶ ଥାଇଲାଣ୍ଡ ଏକ ପ୍ରଦୂଷଣ ମୁକ୍ତ ଓ ଅନୁଶାସିତ ଦେଶ ଭାବେ ପ୍ରସିଦ୍ଧ । ଏହା ମଧ୍ୟ ମନୋରମ ସପିଙ୍ଗ୍ କମ୍ପ୍ଲେକ୍ସ, ସୁନ୍ଦର ସଡ଼କ ଓ କମନୀୟ ଦୃଶ୍ୟରାଜି ଭରା ସମୁଦ୍ର ବେଳାଭୂମି ଏବଂ ସୁସ୍ଥ ପରିବେଶ ପାଇଁ ପ୍ରସିଦ୍ଧ । ମୁଖ୍ୟତଃ ମୂଳ ଥାଇ, ଚୀନ୍, ମାଳୟ ଓ ଭାରତୀୟମାନଙ୍କୁ ନେଇ ହିଁ ଏହି ଦେଶ ଗଢ଼ି ଉଠିଛି । ଏଠାରେ ଥାଇ ୭୭ ଶତକଡ଼ା ହୋଇଥିବା ବେଳେ ଚୀନୀ ୧୪ ଶତକଡ଼ା, ମାଳୟ ୫ ଶତକଡ଼ା ଓ ଭାରତୀୟ ୪ ଶତକଡ଼ା ଅଛନ୍ତି । ଏଠାର ଶାସକୀୟ ଭାଷା ମଧ୍ୟରେ ଥାଇ, ଇଂରାଜୀ, ମନ୍ଦେରିଆନ୍, ମାଳୟ ଏବଂ ତାମିଲ୍ ଅନ୍ୟତମ । ପର୍ଯ୍ୟଟନ ଦୃଷ୍ଟିରୁ ସାରା ଥାଇଲାଣ୍ଡ ଓ ତା'ର ସମୁଦ୍ର ବେଳାଭୂମିର ମନୋରମ ଦୃଶ୍ୟରାଜି ବିଶ୍ୱରେ ପ୍ରମୁଖ ସ୍ଥାନ ଦଖଲ କରିଛି । ସବୁଠୁଁ ଆକର୍ଷକ ଦୃଶ୍ୟରାଜି ହେଲା, ମନୋରମ ସୁଉଚ୍ଚ ଅଟ୍ଟାଳିକା ଭରା ବ୍ୟାଙ୍କକ୍ ସହର ଓ ଏହାର ନିକଟବର୍ତ୍ତୀ ପଟାୟା ସମୁଦ୍ର ବେଳାଭୂମିର କମନୀୟ ରୂପ । ଏହାଠୁଁ ଆହୁରି ମନମୁଗ୍ଧକର ଦୃଶ୍ୟ ଓ ପରିବେଶ, ବେଳାଭୂମିରୁ ବଙ୍ଗୋପସାଗର ଭିତରକୁ ମାତ୍ର ୧୩ କିଲୋମିଟର ଦୂରବର୍ତ୍ତୀ ଏକ ଆଇଲାଣ୍ଡ୍‌ରେ ଦେଖିବାକୁ ମିଳେ । ଏହି ଆଇଲାଣ୍ଡ୍ ଏସିଆ ମହାଦେଶର ପ୍ରମୁଖ ପର୍ଯ୍ୟଟନ କ୍ଷେତ୍ର ମଧ୍ୟରେ ଅନ୍ୟତମ । ବିରଳ ପ୍ରାକୃତିକ ଦୃଶ୍ୟରାଜି ଭରା ଏହି ଆଇଲାଣ୍ଡର ଲୋଭନୀୟ ଆକର୍ଷଣ ହିଁ ପଟାୟା ବେଳାଭୂମିକୁ କମନୀୟ ରୂପରେ ସଜେଇଥିବା କୁହାଯାଇପାରେ । ଏହି ବେଳାଭୂମିର ଦୈର୍ଘ୍ୟ ମାତ୍ର ୧.୨୫ କିଲୋମିଟର ଓ ଚଉଡ଼ା ମାତ୍ର ୧୫୦ ମିଟର । ୧୭ ଏକର ବିଶିଷ୍ଟ ଏହି ଆଇଲାଣ୍ଡର ଅପରୂପ ସୌନ୍ଦର୍ଯ୍ୟକୁ ଉପଭୋଗ କରିବା ପାଇଁ ସାରା ବିଶ୍ୱରୁ ପ୍ରତିଦିନ ଛୁଟି ଆସନ୍ତି ହଜାର ହଜାର ପର୍ଯ୍ୟଟକ । ପର୍ଯ୍ୟଟକମାନଙ୍କ ଆଗମନରେ ପଟାୟା ଅନେକ ସୁନ୍ଦର ଅଟ୍ଟାଳିକାକୁ ନେଇ ଏକ ଲୋଭନୀୟ ନଗରୀରେ ପରିଣତ ହୋଇଛି । ପଟାୟା ବେଳାଭୂମିରୁ ଆଇଲାଣ୍ଡକୁ ଯିବା ପାଇଁ ଲଞ୍ଚ ବୋଟ୍‌ର ବ୍ୟାପକ ସୁବିଧା ରହିଛି । ପ୍ରତି ଟିକେଟ୍‌ର ମୂଲ୍ୟ ୧୨୦୦ ଭାଟ୍ ବା ଭାରତୀୟ ମୁଦ୍ରାରେ ୯ ହଜାର ୧୨୦ ଟଙ୍କା । ଏଠାକାର ଅଣ୍ଡର ୱାଟର୍ ୱାର୍ଲଡ଼୍ ଭିତରେ ବିଶ୍ୱର ଦୁର୍ଲଭ ସାମୁଦ୍ରିକ ଜୀବ ଆଦି ଦେଖିବାକୁ ମିଳିଥାଏ । କେତେକ ସ୍ୱତନ୍ତ୍ର ସବ୍-ମେରାଇନ୍‌ରେ ଅର୍ଦ୍ଧ ଗୋଲକ ସ୍ତରର ଚଟାଣରେ ରୋଲର୍ ସଂଯୁକ୍ତ ରହିଛି ଓ ତିନି ପାଖରେ କାଚର ଟ୍ୟୁବ୍‌ରେ ପାଣି ରହିଛି । ରୋଲର୍ ଉପରେ ଦର୍ଶକମାନେ ଛିଡ଼ା ହେଲେ, ସମୁଦ୍ର ଭିତରର ଦୁର୍ଲଭ ଜୀବଙ୍କୁ ସହଜରେ ଦେଖିହୁଏ । ଏହି ସ୍ୱତନ୍ତ୍ର ସବ୍-ମେରାଇନ୍‌ରେ ପ୍ରତି ଟିକେଟ୍‌ର ମୂଲ୍ୟ ୧୭୦୦ ଭାଟ୍ । ଏହି କମନୀୟ ଆଇଲାଣ୍ଡର ପ୍ରାକୃତିକ ଦୃଶ୍ୟ ବାସ୍ତବରେ ଅବର୍ଣ୍ଣନୀୟ । ଏହା ବିଶ୍ୱ ପର୍ଯ୍ୟଟନର ବିଖ୍ୟାତ କ୍ଷେତ୍ର ସିଙ୍ଗାପୁରଠାରୁ ଦୁଇପାଦ ଆଗରେ ଅଛି । ଏହାକୁ ନଦେଖିଲେ ବିଶ୍ୱାସ କରିବା ସମ୍ଭବ ନୁହେଁ ।

ଉଲ୍ଲେଖ କରାଯାଇପାରେ ଯେ, ଦୁର୍ଲଭ ପର୍ଯ୍ୟଟନ କ୍ଷେତ୍ରର ମାନ୍ୟତା ଲାଭ କରିଥିବା ବିଶ୍ୱର କୌଣସି ସମୁଦ୍ର ତଟ, ଆଇଲାଣ୍ଡ ବା ଐତିହାସିକ ସ୍ଥାନଠାରୁ ଓଡ଼ିଶାର ସମୁଦ୍ର ତଟ, ଆଇଲାଣ୍ଡ ବା ଐତିହାସିକ ସ୍ଥାନ ଅଧିକ ମନୋରମ, ଉନ୍ନତ ମାନର ଓ ଅପରୂପ ସୌନ୍ଦର୍ଯ୍ୟରେ ଭରା, ତାହା ହୁଏତ ସମସ୍ତେ ଜାଣନ୍ତି ନାହିଁ । ଏଠାରେ କେନ୍ଦ୍ରାପଡ଼ା ଜିଲ୍ଲାର ସମୁଦ୍ର ତଟ ଓ ଏକ ଅନାମଧେୟ ଆଇଲାଣ୍ଡର ଉଦାହରଣ ନିଆଯାଇପାରେ । ପଟାୟାର ସେହି କମନୀୟ କ୍ଷୁଦ୍ର ବେଳାଭୂମି ସଦୃଶ ଅବିକଳ ଧନୁ ଆକାରର ୭.୬ କି.ମି. ଦୈର୍ଘ୍ୟ ବିଶିଷ୍ଟ ଏକ ମନଲୋଭା ବେଳାଭୂମି ଲମ୍ବିଛି ସାତଭାୟା ଓ ବରୁଣେଇ ମୁହାଣ ମଧ୍ୟରେ । ଏହା ସଂଲଗ୍ନ ରହିଛି ବିଶ୍ୱ ବିଖ୍ୟାତ ଭିତରକନିକା ଅଭୟାରଣ୍ୟ, ସାମୁଦ୍ରିକ ଅଭୟାରଣ୍ୟ ଓ କଇଁଛ ପ୍ରଜନନ କେନ୍ଦ୍ର ସହିତ । ତଟବର୍ତ୍ତୀ ଅଳ୍ପ କେତୋଟି ଗ୍ରାମକୁ ଛାଡ଼ି ଦେଲେ, ସାରା ଅଞ୍ଚଳ ଘଞ୍ଚ ଅରଣ୍ୟାନୀରେ ପୂର୍ଣ୍ଣ । ଏହି ସୁଦୀର୍ଘ





କମନୀୟ ବେଳାଭୂମିଠାରୁ ବଙ୍ଗୋପ ସାଗର ଭିତରକୁ ହାରାହାରି ୧୮ କି.ମି. ଦୂରରେ ରହିଛି ଏକ ପ୍ରାକୃତିକ ଅନାମଧ୍ୟେୟ ଆଇଲାଣ୍ଡ୍। ଏହା ସୁନ୍ଦର ବୃକ୍ଷରାଜି ଓ କମନୀୟ ସୌନ୍ଦର୍ଯ୍ୟରେ ଭରା ୨୪ ଏକର ପରିମିତ ଅଞ୍ଚଳ। ଏହାର ମାତ୍ର ୫ କି.ମି. ଦୂର ଦକ୍ଷିଣକୁ ବ୍ରିଟିଶ୍ ବାଣିଜ୍ୟର କୋଠା ହୁକିଟେଲା ଓ ଏଠାରୁ ମାତ୍ର ୪.୫ କି.ମି. ଦୂର ଦକ୍ଷିଣକୁ ବତୀଘର ଏବଂ ଏହାର ପଶ୍ଚିମକୁ ସ୍ଥଳ ସୀମାକୁ ଲାଗି ରହିଛି ଜମ୍ବୁ ଜେଟ୍ଟୀ ଓ ଖରିନାସୀ ଜେଟ୍ଟୀ। ଜମ୍ବୁ ଜେଟ୍ଟୀ ନିକଟରୁ ୬.୫ କି.ମି. ସମୁଦ୍ର ଭିତରକୁ ଅନ୍ୟ ଏକ ଆଇଲାଣ୍ଡ ରହିଛି, ଯାହାର ନାମ ମାଦେଲିଚଡା। ପ୍ରାୟ ୧୦୦ଏକର ପରିମିତ ଅଞ୍ଚଳର ଏହି ଆଇଲାଣ୍ଡ, ହୁକିଟେଲା ଓ ବତୀଘର ଭୌଗୋଳିକ ଦୃଷ୍ଟିରୁ ଏକ ସମବାହୁ ତ୍ରିଭୁଜ ଭିତରେ ରହିଛନ୍ତି। ଅର୍ଥାତ୍ ଏହି ଆଇଲାଣ୍ଡ ପାଖରୁ ୪.୫ କି.ମି. ଉତ୍ତର-ପୂର୍ବକୁ ହୁକିଟେଲା ଓ ୪.୫ କି.ମି. ଦକ୍ଷିଣ-ପୂର୍ବକୁ ବତୀଘର ଓ ବଙ୍ଗୋପ ସାଗରର ରିମ୍‌ଝିମ୍ ନୀଳ ଜଳରାଶି ପ୍ରତ୍ୟେକ ନିଜ ନିଜର ଅପରୂପ ସୌନ୍ଦର୍ଯ୍ୟ ପରିପ୍ରକାଶ କରୁଥିବା ବେଳେ ଏସବୁର ଫେଣ୍ଟାଫେଣ୍ଟିରେ ଯେଉଁ ଦୁର୍ଲଭ ପ୍ରାକୃତିକ ଦୃଶ୍ୟରାଜିର ସମାହାର ଘଟୁଛି, ତାହାର ଏଯାଏଁ ଉପଯୁକ୍ତ ଉପଯୋଗ ହୋଇ ପାରିନାହିଁ। ଏହା ସମ୍ଭବ ହେଲେ, ଏହା ଯେ ପୃଥିବୀର ଦୁର୍ଲଭ ପର୍ଯ୍ୟଟନ କ୍ଷେତ୍ର ମଧ୍ୟରେ ଅନନ୍ୟ ଭୂମିକା ଗ୍ରହଣ କରିବ, ଏଥିରେ ତିଳେ ହେଁ ସନ୍ଦେହ ନାହିଁ। ଏହାଦ୍ୱାରା ଓଡ଼ିଶା ସରକାରଙ୍କର ପ୍ରଚୁର ବୈଦେଶିକ ମୁଦ୍ରା ଆୟ ହୋଇପାରିବ। ସ୍ଥାନୀୟ ଅଞ୍ଚଳର ଆର୍ଥିକ ଓ ପାରିପାର୍ଶ୍ୱିକ ଉନ୍ନତି ସମ୍ଭବ ହୋଇପାରିବ।

ଓଡ଼ିଶାର ବେଳାଭୂମିକୁ ଉପଯୁକ୍ତ ଉପଯୋଗ କରି ବିଶ୍ୱର ପ୍ରମୁଖ ପର୍ଯ୍ୟଟନ କ୍ଷେତ୍ରରେ ପରିଣତ କରାଇବା ଉତ୍କଳର ମୁକୁଟବିହୀନ ସମ୍ରାଟ ବିଜୁବାବୁଙ୍କର ସ୍ୱପ୍ନ ଥିଲା ଓ ସେ ବହୁବାର ଉପକୂଳବାସୀଙ୍କୁ ଏଥିପାଇଁ ପ୍ରତିଶ୍ରୁତି ମଧ୍ୟ ଦେଇଥିଲେ। ସେ ସ୍ୱୟଂ ଇଣ୍ଡୋନେସିଆ, ଥାଇଲାଣ୍ଡ ଓ ସିଙ୍ଗାପୁର ବେଳାଭୂମିର ଉପଯୁକ୍ତ ଉପଯୋଗ ହୋଇଥିବା ଦେଖି ଓଡ଼ିଶାର ବେଳାଭୂମିକୁ ସେହି ଢଙ୍ଗରେ ଗଢି ତୋଳିବାକୁ ଏକ ପ୍ରକାର ସେ ବଦ୍ଧପରିକର ଥିଲେ। ମାତ୍ର ତାଙ୍କ ଜୀବଦ୍ଦଶାରେ ଏହା ସମ୍ଭବ ହୋଇ ପାରି ନଥିଲା। ତାଙ୍କର ଅଧୁରା ସ୍ୱପ୍ନ ପୂରଣ କରିବା ତାଙ୍କ ପୁତ୍ର ତଥା ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ପାଇଁ କିଛି ବଡ଼ କଥା ନୁହେଁ। ଏହାକୁ ପଟାୟା ଭଳି ପର୍ଯ୍ୟଟନ କ୍ଷେତ୍ରରେ ପରିଣତ କରିବାକୁ ହେଲେ ମାତ୍ର ୨୦୦ ରୁ ୩୦୦ କୋଟି ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହୋଇପାରେ।

ବିଶ୍ୱର ଅନେକ ବିକଶିତ ଦେଶ ତା'ର ପର୍ଯ୍ୟଟନ ଶିଳ୍ପର ବିକାଶ ଯୋଗୁଁ ଆଗକୁ ବଢିଥିବା ନଜିର ରହିଛି। ମାତ୍ର ଆମ ଦେଶରେ ଏଇ ଧାରଣା, ଧାରଣାରେ ହିଁ ରହିଯାଇଛି। ଏ କ୍ଷେତ୍ରରେ ରାଜ୍ୟ ପର୍ଯ୍ୟଟନ ବିଭାଗର ସକ୍ରିୟ ଭୂମିକା ଆବଶ୍ୟକ। ଏଇ ଅଜ୍ଞାତ ଆଇଲାଣ୍ଡକୁ ବିଜୁ ଦ୍ୱୀପ ନାମରେ ନାମିତ କରାଯାଇପାରେ। ପଟାୟା ପରିଭ୍ରମଣରୁ ଫେରିଥିବା ବିଶିଷ୍ଟ ଶିକ୍ଷାବିତ୍ ତଥା ତୁଙ୍ଗ ରାଜନୈତିକ ନେତା ଡକ୍ଟର ଗନ୍ଧର୍ବ ଚନ୍ଦ୍ର ନାୟକଙ୍କ ମତରେ ପଟାୟା ଓ ବିଶ୍ୱର ଅନ୍ୟାନ୍ୟ ଦ୍ୱୀପଠାରୁ ଆମ ଓଡ଼ିଶାର ସମୁଦ୍ର ମଧ୍ୟସ୍ଥ ପ୍ରାକୃତିକ ଦ୍ୱୀପଗୁଡ଼ିକ ବହୁ ଗୁଣରେ ଉନ୍ନତ, କମନୀୟ ଓ ଦର୍ଶନୀୟ। ପଟାୟା ଭଳି କେନ୍ଦ୍ରାପଡ଼ା ଜିଲ୍ଲାର ଏହି ଦ୍ୱୀପଗୁଡ଼ିକୁ ନେଇ ଏକ ପର୍ଯ୍ୟଟନ ସ୍ଥଳୀର ମାନ୍ୟତା ଦେବା ସହ ଏହାର ନାମ ବିଜୁ ପର୍ଯ୍ୟଟନ କ୍ଷେତ୍ର ରଖାଯାଉ ବୋଲି ଡକ୍ଟର ନାୟକ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । ପରିବେଶବିତ୍ ହେମନ୍ତ କୁମାର ରାଉତଙ୍କ ମତରେ ଏଥିପାଇଁ କେନ୍ଦ୍ରାପଡ଼ା ଜିଲ୍ଲା ପ୍ରଶାସନର ନିଷ୍ଠା ଓ ଆନ୍ତରିକତାର ଆବଶ୍ୟକତା ରହିଛି । ତେବେ ଜିଲ୍ଲାରେ ରହିଥିବା ବିଶ୍ୱବିଖ୍ୟାତ ଭିତରକନିକା ଅଭୟାରଣ୍ୟ, ସାମୁଦ୍ରିକ ଅଭୟାରଣ୍ୟ, ଜାତୀୟ ଉଦ୍ୟାନ, ହେନ୍ତାଳ ଜଙ୍ଗଲ ଆଦି ଐତିହ୍ୟର ମଜଭୁତ୍ ସୁରକ୍ଷା ଓ ପର୍ଯ୍ୟଟନ ସ୍ଥଳୀର ବିକାଶ ପାଇଁ ସରକାର ନିଷ୍ଠାର ସହ ଉଦ୍ୟମ କରିବେ ବୋଲି ଜିଲ୍ଲାବାସୀ ଗଭୀର ଆଶା ରଖିଛନ୍ତି ।

ଘର ନଂ- ୨ଆରଏ-୩୨, ରୋଡ୍-୩,
ୟୁନିଟ୍-୯, ଭୁବନେଶ୍ୱର



# ପଞ୍ଚାୟତ ନିର୍ବାଚନରେ ଦ୍ୱି–ସନ୍ତାନ ନୀତି

**ଡକ୍ଟର ପୁରୁଷୋତ୍ତମ ବିଶ୍ୱାଳ**

ଗଣତାନ୍ତ୍ରିକ ପଦ୍ଧତିରେ କ୍ଷମତାର ବିକେନ୍ଦ୍ରୀକରଣ ହେଉଛି ପଞ୍ଚାୟତିରାଜ ବ୍ୟବସ୍ଥାର ମୁଖ୍ୟ ଆଭିମୁଖ୍ୟ । ସ୍ଥାନୀୟ ଆବଶ୍ୟକତା ଓ ଲୋକମାନଙ୍କ ଆଶା, ଆକାଂକ୍ଷା ବିକେନ୍ଦ୍ରୀକରଣ ବ୍ୟବସ୍ଥା ଦ୍ୱାରା ସମ୍ମାନିତ ହୁଏ । ସମଗ୍ର ବିଶ୍ୱରେ ତୃଣମୂଳ ଗଣତନ୍ତ୍ରର ସଫଳ ରୂପାୟନର ପ୍ରକୃଷ୍ଟ ଉଦାହରଣ ହେଉଛି ଭାରତବର୍ଷରେ ପ୍ରଚଳିତ ପଞ୍ଚାୟତିରାଜ ଅନୁଷ୍ଠାନ । ଗ୍ରାମ୍ୟ ଭାରତରେ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ସଶକ୍ତିକରଣ ଓ ଗଣତାନ୍ତ୍ରିକ ବିକେନ୍ଦ୍ରୀକରଣ ବ୍ୟବସ୍ଥାର ସୁଦୃଢୀକରଣ ଦିଗରେ ଭାରତୀୟ ସମ୍ବିଧାନର ୭୩ତମ ସଂଶୋଧନ ଏକ ପ୍ରଗତିଶୀଳ ଓ ବୈପ୍ଳବିକ ପଦକ୍ଷେପ । ଗଣତନ୍ତ୍ରର ଏକ ପ୍ରମୁଖ ଉପାଦାନ ହେଉଛି ନିର୍ବାଚନ । ସାମ୍ବିଧାନିକ ସଂଶୋଧନ ପରେ ସମ୍ବିଧାନର ଅନୁଚ୍ଛେଦ ୨୪୩–ଇ ଅନୁଯାୟୀ ଦେଶରେ ନିୟମିତ ଭାବେ ପଞ୍ଚାୟତିରାଜ ବ୍ୟବସ୍ଥାରେ ନିର୍ବାଚନ ଅନୁଷ୍ଠିତ ହେଉଛି ।

ଆମ ଦେଶର ଲୋକସଂଖ୍ୟା ୧୯୯୧ ମସିହା ଜନଗଣନା ଅନୁଯାୟୀ ୮୪ କୋଟି ୬୪ ଲକ୍ଷରେ ପହଞ୍ଚିଥିଲା । ବିଗତ ଜନଗଣନାର ତଥ୍ୟ ହିସାବକୁ ନେଲେ ଉକ୍ତ ଦଶନ୍ଧି ମଧ୍ୟରେ ଜନସଂଖ୍ୟାର ଅଭିବୃଦ୍ଧି ହାର ଥିଲା ୨୩ ଦଶମିକ ୮୭ ପ୍ରତିଶତ । ଜନସଂଖ୍ୟାର ବିସ୍ଫୋରଣକୁ ଗମ୍ଭୀରତାର ସହ ବିଚାର କରିଥିଲେ ଭାରତ ସରକାର । ପ୍ରଧାନମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଜାତୀୟ ବିକାଶ ପରିଷଦ ୧୯୯୨ ମସିହାରେ ଜନସଂଖ୍ୟା ସଂକ୍ରାନ୍ତରେ ଏକ କମିଟି ଗଠନ କରିଥିଲେ । କେରଳ ରାଜ୍ୟର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ କେ. କରୁଣାକରନ ଉକ୍ତ କମିଟିର ଅଧ୍ୟକ୍ଷ ଦାୟିତ୍ୱରେ ରହିଥିଲେ । କମିଟି ତାଙ୍କର ରିପୋର୍ଟ ୧୯୯୩ ମସିହାରେ ଜାତୀୟ ବିକାଶ ପରିଷଦକୁ ପ୍ରଦାନ କରିଥିଲେ । ଜନସଂଖ୍ୟା ବୃଦ୍ଧିକୁ ନିୟନ୍ତ୍ରଣ କରିବା ଉଦ୍ଦେଶ୍ୟରେ କମିଟି ସୁପାରିଶ କରିଥିଲେ ଯେ ଦୁଇଟିରୁ ଅଧିକ ସନ୍ତାନ ଥିବା କୌଣସି ବ୍ୟକ୍ତି ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କରେ ନିର୍ବାଚିତ ପ୍ରତିନିଧି ଭାବେ ରହିପାରିବେ ନାହିଁ ଏ ଦିଗରେ ଆଇନ ପ୍ରଣୟନ କରିବାର ଆବଶ୍ୟକତା ରହିଛି ବୋଲି କମିଟି ତାଙ୍କର ମତ ପ୍ରଦାନ କରିଥିଲେ । ଏଭଳି ଏକ ପଦକ୍ଷେପ କ୍ଷୁଦ୍ର ପରିବାର ଗଠନ ଦିଗରେ ସମାଜରେ ସଚେତନତା ସୃଷ୍ଟି କରିପାରିବ ଓ ଜନସଂଖ୍ୟା ନିୟନ୍ତ୍ରଣରେ ସହାୟକ ହୋଇ ପାରିବ ବୋଲି ଆଶାପୋଷଣ କରାଯାଇଥିଲା ।

୧୯୫୯ ମସିହା ଅକ୍ଟୋବର ମାସ ୨ ତାରିଖ ପବିତ୍ର ଗାନ୍ଧୀ ଜୟନ୍ତୀ ଅବସରରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ରାଜସ୍ଥାନର ନଗୌର ଜିଲ୍ଲାଠାରେ ପଞ୍ଚାୟତିରାଜ ବ୍ୟବସ୍ଥାର ଶୁଭ ଉଦ୍‌ଘାଟନ କରିଥିଲେ । ଜାତୀୟ ବିକାଶ ପରିଷଦ ପକ୍ଷରୁ ଗଠିତ କରୁଣାକରନ କମିଟି କେନ୍ଦ୍ର ସରକାରଙ୍କୁ ଜନସଂଖ୍ୟା ନିୟନ୍ତ୍ରଣ ସଂକ୍ରାନ୍ତରେ ତାଙ୍କର ସୁପାରିଶ ପ୍ରଦାନ କରିବା ପୂର୍ବରୁ ରାଜସ୍ଥାନ ସରକାର ତାଙ୍କ ରାଜ୍ୟରେ ପଞ୍ଚାୟତିରାଜ ଓ ପୌର ପରିଷଦ ନିର୍ବାଚନରେ ଦ୍ୱି–ସନ୍ତାନ ନୀତି ପ୍ରଚଳନ କରିଥିଲେ । ଏହି ନିୟମ ରାଜସ୍ଥାନରେ ୧୯୯୨ ମସିହାଠାରୁ କାର୍ଯ୍ୟକାରୀ ହେଲା । ତା' ପରବର୍ଷ ୧୯୯୩ ମସିହାରେ ଅବିଭକ୍ତ ଆନ୍ଧ୍ର ପ୍ରଦେଶ ଓ ହରିଆଣା ରାଜ୍ୟ ଦ୍ୱୟ ପଞ୍ଚାୟତ ନିର୍ବାଚନରେ ଦ୍ୱି–ସନ୍ତାନ ନୀତି ଅବଲମ୍ବନ କଲେ । ଓଡ଼ିଶା ସରକାରଙ୍କ ପକ୍ଷରୁ ୧୯୯୪ ମସିହାରେ ପଞ୍ଚାୟତ ନିର୍ବାଚନ ନିମନ୍ତେ ଏହି ବ୍ୟବସ୍ଥା କାର୍ଯ୍ୟକାରୀ ହେଲା । ହିମାଚଳ ପ୍ରଦେଶ ଓ ମଧ୍ୟପ୍ରଦେଶ ଭଳି ରାଜ୍ୟ ୨୦୦୦ ମସିହାରେ ଏହିଭଳି ନିୟମ ପ୍ରଣୟନ କଲେ । ମହାରାଷ୍ଟ୍ର ରାଜ୍ୟରେ ଦ୍ୱି–ସନ୍ତାନ ନୀତି ୨୦୦୩ ମସିହାରେ କାର୍ଯ୍ୟକାରୀ ହେଲା । ମଧ୍ୟପ୍ରଦେଶର ବିଭାଜନ ପରେ ଛତିଶଗଡ ରାଜ୍ୟରେ ଏହା ପ୍ରଚଳିତ ବିଧି ଅନୁଯାୟୀ କାର୍ଯ୍ୟକାରୀ ହେଲା । ଗୁଜୁରାଟ ରାଜ୍ୟ ସମେତ ଆମ

ଦେଶର ନଅ ଗୋଟି ରାଜ୍ୟ ଦ୍ୱି–ସନ୍ତାନ ନୀତି ନିମନ୍ତେ ଅଧିନିୟମ ପ୍ରଣୟନ କରିଥିଲେ ।

ଓଡ଼ିଶା ଗ୍ରାମପଞ୍ଚାୟତ ଅଧିନିୟମ, ୧୯୯୪ ଅନୁଯାୟୀ କୌଣସି ବ୍ୟକ୍ତିର ୧୯୯୪ ମସିହା ପରଠାରୁ ଦୁଇଟିରୁ ଅଧିକ ଜୀବିତ ସନ୍ତାନ ଥିଲେ, ସେହି ବ୍ୟକ୍ତି ପଞ୍ଚାୟତ ନିର୍ବାଚନରେ ପ୍ରାର୍ଥୀ ହୋଇ ପାରିବେ ନାହିଁ । ଏହି ନିୟମ ଉଭୟ ପୁରୁଷ ଓ ମହିଳାମାନଙ୍କ କ୍ଷେତ୍ରରେ ଲାଗୁ ହେଉଛି । ଓଡ଼ିଶାରେ ଏହି ନିୟମ ୨୦୦୨, ୨୦୦୭ ଓ ୨୦୧୨ ମସିହାରେ ଅନୁଷ୍ଠିତ ପଞ୍ଚାୟତ ନିର୍ବାଚନ ସମୟରେ ଲାଗୁ ହୋଇଥିଲା । ଏହି ନିୟମ ଦ୍ୱାରା ଉଭୟ ପୁରୁଷ ଓ ମହିଳାମାନେ କ୍ଷତିଗ୍ରସ୍ତ ହେଉଥିବା ବେଳେ ଆଇନ ଦ୍ୱାରା ପ୍ରଭାବିତ ମହିଳାମାନଙ୍କ ସଂଖ୍ୟା ଅଧିକ । ଉକ୍ତ ତିନିଗୋଟି ପଞ୍ଚାୟତ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରି ବିଜୟ ଲାଭ କରିଥିବା ଅଗଣିତ ପୁରୁଷ ଓ ମହିଳା ନିର୍ବାଚିତ ପ୍ରତିନିଧିଙ୍କୁ ଏହିଭଳି ନିୟମ ଯୋଗୁଁ ସେମାନଙ୍କର ପଦବୀ ହରାଇବାକୁ ପଡିଥିଲା । ବିପୁଳ ଜନସମର୍ଥନ ଲାଭ କରି ମଧ୍ୟ ପରବର୍ତ୍ତୀ ସମୟରେ ସେମାନଙ୍କୁ ଅଦାଲତରେ ବିଚାରର ସମ୍ମୁଖୀନ ହେବାକୁ ପଡିଥିଲା କାରଣ ସେମାନଙ୍କର ସନ୍ତାନ ସଂଖ୍ୟା ଦୁଇରୁ ଊର୍ଦ୍ଧ୍ୱ ଥିଲା । ରାଜନୈତିକ କାରଣରୁ ପ୍ରଶାସନ ନିକଟରେ ପରାଜିତ ପ୍ରାର୍ଥୀଙ୍କ ପକ୍ଷରୁ ଅଭିଯୋଗ ଆଗତ କରାଯାଇଥିଲା ବା ପ୍ରସଙ୍ଗ ବିଚାରାଳୟକୁ ଯାଇଥିଲା ।

କେବଳ ଗ୍ରାମାଞ୍ଚଳ ଜନତାଙ୍କ ବିକାଶ ନିମନ୍ତେ ପଞ୍ଚାୟତିରାଜ ବ୍ୟବସ୍ଥାର ଜନ୍ମ । ଗ୍ରାମାଞ୍ଚଳମାନଙ୍କରେ ଅନେକ ଦମ୍ପତିଙ୍କର ଦୁଇଟିରୁ ଅଧିକ ସନ୍ତାନ ରହିଥିବାରୁ ସେମାନେ ପଞ୍ଚାୟତ ନିର୍ବାଚନରେ ପ୍ରାର୍ଥୀ ହେବାରୁ ବଞ୍ଚିତ ହେଉଛନ୍ତି । ଜନସଂଖ୍ୟା ନିୟନ୍ତ୍ରଣ ବା ଜନସଂଖ୍ୟା ବୃଦ୍ଧିକୁ ନିରୁତ୍ସାହିତ କରିବା ଦ୍ୱି–ସନ୍ତାନ ନୀତିର ପ୍ରଧାନ ଆଭିମୁଖ୍ୟ ହୋଇଥିଲେ ମଧ୍ୟ ଏହା ଆମ ଦେଶରେ କେବଳ ପଞ୍ଚାୟତିରାଜ ଅନୁଷ୍ଠାନର ନିର୍ବାଚନରେ କାର୍ଯ୍ୟକାରୀ ହେଉଛି । ରାଜ୍ୟ ବିଧାନସଭା ଓ କେନ୍ଦ୍ର ଲୋକସଭା ନିମନ୍ତେ ଅନୁଷ୍ଠିତ ହେଉଥିବା ନିର୍ବାଚନରେ ଦ୍ୱି–ସନ୍ତାନ ନୀତି କରୁଣାକରନ କମିଟି ସୁପାରିଶର ଦୁଇ ଦଶନ୍ଧି ପରେ ମଧ୍ୟ ଲାଗୁ ହୋଇନାହିଁ । ଦୁଇରୁ ଅଧିକ ସନ୍ତାନ ଥିବା ଅଗଣିତ ରାଜନୈତିକ ନେତା ନିର୍ବାଚନରେ ବିଜୟ ଲାଭ କରି ରାଜ୍ୟ ଓ କେନ୍ଦ୍ର ସରକାରରେ ପ୍ରତିନିଧିତ୍ୱ କରୁଥିବା ବେଳେ ପଞ୍ଚାୟତ ନିର୍ବାଚନରେ ସେହିଭଳି ବ୍ୟକ୍ତି ୱାର୍ଡମେମ୍ବର ମଧ୍ୟ ହୋଇ ପାରୁନାହାନ୍ତି । ନିର୍ବାଚନରେ ବିଜୟ ଘୋଷିତ ହେବା ପରେ ମଧ୍ୟ ପରବର୍ତ୍ତୀ କାଳରେ ସେମାନଙ୍କୁ ତାଙ୍କ ପଦବୀରୁ ଅପସାରଣ କରାଯାଉଛି । ଗ୍ରାମ୍ୟ ଜନତାଙ୍କ ରାଜନୈତିକ, ଆର୍ଥିକ ସଶକ୍ତିକରଣ ନିମନ୍ତେ ପଞ୍ଚାୟତ ନିର୍ବାଚନ ଉଦ୍ଦିଷ୍ଟ । ମାତ୍ର ଗ୍ରାମ୍ୟ ପୁରୁଷ ଓ ମହିଳାମାନଙ୍କ ପ୍ରତି ଲାଗୁ କରାଯାଉଥିବା ଏଭଳି ପାତର ଅନ୍ତର ନୀତି ତୃଣମୂଳ ଗଣତନ୍ତ୍ର ପାଇଁ ଶୁଭଙ୍କର ନୁହେଁ ।

ଭାରତବର୍ଷର ସାମ୍ପ୍ରତିକ ସାମାଜିକ ବ୍ୟବସ୍ଥାରେ ସନ୍ତାନ ଜନ୍ମ ହେବାର ନିଷ୍ପତ୍ତି ସବୁ ସମୟରେ ଜଣେ ସ୍ୱାମୀ ବା ତାଙ୍କ ପତ୍ନୀଙ୍କର ଇଚ୍ଛା ଉପରେ ନିର୍ଭର କରେ ନାହିଁ । ବିଭିନ୍ନ ଆର୍ଥିକ ଓ ସାମାଜିକ ଚାପର ବଶବର୍ତ୍ତୀ ହୋଇ ଜଣେ ମହିଳା ଅଧିକ ସନ୍ତାନ ଜନ୍ମ ଦେବାକୁ ବାଧ୍ୟ ହୋଇଥାଏ । ଏକାଧିକ କନ୍ୟା ସନ୍ତାନର ପିତାମାତା ହେବା ପରେ ସେହି ପ୍ରଜନନକ୍ଷମ ଦମ୍ପତିଙ୍କ ଉପରେ ଗୋଟିଏ ପୁତ୍ର ସନ୍ତାନର ଜନକ ଜନନୀ ହେବା ପାଇଁ ପରିବାର ପକ୍ଷରୁ ପ୍ରବଳ ଚାପ ସୃଷ୍ଟି କରାଯାଏ । ଏହିଭଳି ସାମାଜିକ ଚାପ ଓ ପାରିବାରିକ ବାଧ୍ୟବାଧକତାର ବଶବର୍ତ୍ତୀ ହୋଇ ପୁତ୍ର ସନ୍ତାନ ଜନ୍ମ ଦେବାର ଆଶାରେ ସେମାନେ ବାରମ୍ବାର ଗର୍ଭଧାରଣ କରିଥାନ୍ତି । ଏହିଭଳି ଏକ ସାମାଜିକ କୁସଂସ୍କାର ସମାଜରୁ ଲୋପ ପାଇବା ଏତେ ସହଜସାଧ୍ୟ ନୁହେଁ ।

ବହୁ କ୍ଷେତ୍ରରେ ଦେଖାଯାଉଛି ନିର୍ବାଚନ ପୂର୍ବରୁ ମନୋନୟନ ପତ୍ର ଦାଖଲ କଲାବେଳେ ଅନେକ ପ୍ରାର୍ଥୀ ଓ ପ୍ରାର୍ଥିନୀ ଦ୍ୱି–ସନ୍ତାନ ନିୟମର କାର୍ଯ୍ୟକାରିତା ସମ୍ପର୍କରେ ସଚେତନ ନୁହଁନ୍ତି । ବିଚାରର ସମ୍ମୁଖୀନ ହୋଇ ପଦବୀ ହରାଇଥିବା କେତେକ ମହିଳା ମଧ୍ୟ ପ୍ରକାଶ କରିଛନ୍ତି ଯେ ଗର୍ଭ ପରୀକ୍ଷା ସମୟରେ ତାଙ୍କର ପୁତ୍ର ସନ୍ତାନ ଜନ୍ମ ହେବ ବୋଲି ଡାକ୍ତର କହିଥିଲେ ।

ସରକାରଙ୍କ ଦ୍ୱାରା ନିର୍ଦ୍ଧାରିତ ଏକ ନିର୍ଦ୍ଦିଷ୍ଟ ତାରିଖର ପରବର୍ତ୍ତୀ ସମୟରେ ଦୁଇଗୋଟିରୁ ଅଧିକ ଜୀବିତ ସନ୍ତାନ ଥିଲେ ସେମାନେ ନିର୍ବାଚିତ ପ୍ରତିନିଧି ହେବାର ସୁଯୋଗରୁ ବଞ୍ଚିତ ହେଉଛନ୍ତି । କିନ୍ତୁ ଏହି ନିର୍ଦ୍ଧାରିତ ତାରିଖ ପୂର୍ବରୁ କୌଣସି ଦମ୍ପତିଙ୍କର ଦୁଇରୁ ଅଧିକ ସନ୍ତାନ ଥିଲେ, ସେମାନଙ୍କୁ ନିର୍ବାଚନରେ ଅଂଶଗ୍ରହଣ କରିବାକୁ ବାରଣ କରାଯାଉନାହିଁ । ଏହି ନିୟମ କେବଳ ପ୍ରଜନନକ୍ଷମ ଦମ୍ପତିମାନଙ୍କ ନିମନ୍ତେ ଲାଗୁ କରାଯାଉଥିବା ବେଳେ ନିର୍ଦ୍ଧାରିତ ସମୟ ପୂର୍ବରୁ ବିରାଟ ପରିବାର ଗଠନ କରିଥିବା ଅଧିକ ବୟସର ଦମ୍ପତିମାନେ ଏହାଦ୍ୱାରା ପ୍ରଭାବିତ ହେଉ ନାହାନ୍ତି ।

ଓଡ଼ିଶାରେ ଦ୍ୱି–ସନ୍ତାନ ନୀତି କାର୍ଯ୍ୟକାରୀ ହେଉଥିଲେ ମଧ୍ୟ ରାଜ୍ୟର ଜନସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ୨୦୦୧ ମସିହାର ଜନଗଣନା ଅନୁଯାୟୀ ଆମ ରାଜ୍ୟର ଲୋକସଂଖ୍ୟା ୩କୋଟି ୬୮ଲକ୍ଷ ଥିବାବେଳେ ୨୦୧୧ ମସିହା ଜନଗଣନା





ଅନୁସାରେ ଏହା ୪କୋଟି ୧୯ଲକ୍ଷରେ ପହଞ୍ଚିଛି । ଭାରତର ଲୋକସଂଖ୍ୟା ବର୍ତ୍ତମାନ ୧୨୬ କୋଟିରୁ ଅଧିକ ହେଲାଣି । ପଞ୍ଚାୟତ ନିର୍ବାଚନରେ ପ୍ରାର୍ଥୀଭାବେ ଅଂଶଗ୍ରହଣ କରୁଥିବା ବ୍ୟକ୍ତିମାନଙ୍କ ସଂଖ୍ୟା ରାଜ୍ୟର ମୋଟ ଜନସଂଖ୍ୟା ତୁଳନାରେ ନଗଣ୍ୟ । ଏହିଭଳି ଅଳ୍ପ ସଂଖ୍ୟକ ବ୍ୟକ୍ତିଙ୍କ ପ୍ରତି ଦ୍ୱି-ସନ୍ତାନ ନୀତି ଲାଗୁ କରାଯାଇ ରାଜ୍ୟର ଜନସଂଖ୍ୟା ନିୟନ୍ତ୍ରଣରେ ଏହି ଆଇନର ବିଶେଷ କିଛି ପ୍ରଭାବ ପରିଲକ୍ଷିତ ହେଉନାହିଁ । ଏହି ନିୟମ ପ୍ରଣୀତ ହେବା ପରଠାରୁ ରାଜ୍ୟର ଜନସଂଖ୍ୟା ହ୍ରାସ ଦିଗରେ ଏହା କେତେଦୂର ଫଳପ୍ରଦ ହୋଇଛି, ରାଜ୍ୟ ସରକାର ନିରପେକ୍ଷ ଭାବେ ଏହାର ବିଶ୍ଳେଷଣ କରିବାର ଆବଶ୍ୟକତା ରହିଛି ।

ସମାଜରେ ପୋଷ୍ୟ ସନ୍ତାନ ଓ ଛାଡପତ୍ରର ମାତ୍ରା ବୃଦ୍ଧି ପାଉଛି । ଦ୍ୱି-ସନ୍ତାନ ନୀତି ମହିଳା ସଶକ୍ତିକରଣର ପରିପନ୍ଥୀ ବୋଲି ବୁଦ୍ଧିଜୀବୀମାନେ ମତ ପ୍ରଦାନ କରୁଛନ୍ତି । ମଧ୍ୟପ୍ରଦେଶ ଓ ଛତିଶଗଡ ସରକାର ସେମାନଙ୍କ ରାଜ୍ୟରେ ୨୦୦୦ ମସିହାଠାରୁ ଏହି ନିୟମକୁ ଉଠାଇ ଦେଲେଣି । ହିମାଚଳ ପ୍ରଦେଶ ଓ ହରିଆଣା ରାଜ୍ୟ ଏହିଭଳି ନିୟମର ଅପକାରିତାକୁ ଉପଲବ୍ଧି କରି ୨୦୦୫ ମସିହାରୁ ଏହାର ଉଚ୍ଛେଦ କରି ସାରିଲେଣି । ସାମ୍ବିଧାନିକ ବ୍ୟବସ୍ଥା ଅନୁସାରେ ଓଡ଼ିଶାରେ ୨୦୧୭ ମସିହାରେ ପଞ୍ଚାୟତ ନିର୍ବାଚନ ଅନୁଷ୍ଠିତ ହେବ । ପଞ୍ଚାୟତିରାଜ ବ୍ୟବସ୍ଥାରେ ସମଗ୍ର ଦେଶରେ ଓଡ଼ିଶା ଅତୀତରେ ଅଗ୍ରଣୀ ଭୂମିକା ଗ୍ରହଣ କରିଆସିଛି । ବର୍ତ୍ତମାନ ଓଡ଼ିଶାର ପ୍ରଗତିଶୀଳ ରାଜ୍ୟ ସରକାର ରାଜ୍ୟରେ ବଳବତ୍ତର ଥିବା ଦ୍ୱି-ସନ୍ତାନ ନୀତିର ପୁନଃସମୀକ୍ଷା କରିବେ ବୋଲି ଆଶା କରାଯାଏ ।

ଶାନ୍ତିବଜାର
ପୋ: ଧର୍ମଶାଳା
ଜିଲ୍ଲା- ଯାଜପୁର-୭୫୫୦୦୮






ସୂଚନା ଓ ଲୋକ ସମ୍ପର୍କ ବିଭାଗ ଓ ଉତ୍କଳୀୟ ମିଳିତ ମଞ୍ଚ, କୋଲକାତା ତରଫରୁ ସ୍ୱାଧୀନତା ଦିବସ ପାଳନ ଅବସରରେ ଆୟୋଜିତ ସଭା ।





# ସପ୍ରସଙ୍ଗ ଓଡ଼ିଶା



## ''ସ୍ୱଚ୍ଛ ଓଡ଼ିଶା ଅଭିଯାନ'' ସମୟରେ ପରିମଳ ହାସଲ ନିମନ୍ତେ ଲକ୍ଷ୍ୟ ନିର୍ଦ୍ଦିଷ୍ଟ କରିବାକୁ ମୁଖ୍ୟ ଶାସନ ସଚିବଙ୍କ ନିର୍ଦ୍ଦେଶ

ସ୍ୱଚ୍ଛ ଓଡ଼ିଶା ଅଭିଯାନ ସମୟରେ ଉଭୟ ଗ୍ରାମ ଓ ସହରାଞ୍ଚଳରେ ପରିମଳତା ହାସଲ ନିମନ୍ତେ ଲକ୍ଷ୍ୟ ନିର୍ଦ୍ଦିଷ୍ଟ କରିବାକୁ ମୁଖ୍ୟ ଶାସନ ସଚିବ ଶ୍ରୀ ଗୋକୁଳ ଚନ୍ଦ୍ର ପତି ଉଭୟ ଗ୍ରାମ୍ୟ ଉନ୍ନୟନ ଏବଂ ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଏହି ପରିପ୍ରେକ୍ଷୀରେ ସଚିବାଳୟଠାରେ ଅନୁଷ୍ଠିତ ଏକ ଉଚ୍ଚସ୍ତରୀୟ ବୈଠକରେ ଅଧ୍ୟକ୍ଷତା କରି ଶ୍ରୀ ପତି କହିଛନ୍ତି କି, ସ୍ୱଚ୍ଛ ଅଭିଯାନରେ ବ୍ୟାପକ ସଚେତନତାଭିତ୍ତିକ କାର୍ଯ୍ୟକ୍ରମ ସହ ପରିମଳତା ହାସଲ ପାଇଁ ବାସ୍ତବ କ୍ଷେତ୍ରରେ କାର୍ଯ୍ୟ ଆବଶ୍ୟକ । ଏହି ସମୟ ମଧ୍ୟରେ ଅତି କମ୍‌ରେ ୫୦ ଟି ଗ୍ରାମକୁ ପୂର୍ଣ୍ଣ ପରିମଳ ଗ୍ରାମ କରିବା, ବିଦ୍ୟାଳୟରେ ଥିବା ପାଇଖାନାଗୁଡ଼ିକୁ ପୂର୍ଣ୍ଣମାତ୍ରାରେ କାର୍ଯ୍ୟକାରୀ କରାଇବା, ବସ୍‌ଷ୍ଟାଣ୍ଡ ଓ ପର୍ଯ୍ୟଟନ ସ୍ଥାନମାନଙ୍କୁ ନର୍ଦ୍ଦମା ଓ ମଇଳା ଆଦିରୁ ସବୁଦିନ ପାଇଁ ମୁକ୍ତ ରଖିବା ଆଦି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସ୍ଥିର କରି ସେସବୁକୁ ହାସଲ କରିବା ନିମନ୍ତେ ମୁଖ୍ୟ ଶାସନ ସଚିବ ନିର୍ଦ୍ଦେଶ ଦେଇଛନ୍ତି । ସର୍ବସାଧାରଣ ସ୍ଥାନ ଓ ବିଦ୍ୟାଳୟ ପରିସରମାନଙ୍କରେ କମ୍ ସମୟ ମଧ୍ୟରେ ନିର୍ମାଣ କରାଯାଇ ପାରୁଥିବା ସ୍ୱଳ୍ପ ଖର୍ଚ୍ଚଭିତ୍ତିକ ଇଞ୍ଜିନିୟରିଂ କୌଶଳଗୁଡ଼ିକୁ ଚିହ୍ନଟ କରି ସେସବୁର ପ୍ରୟୋଗାତ୍ମକ ସମୀକ୍ଷା କରିବା ପାଇଁ ବୈଠକରେ ନିଷ୍ପତ୍ତି ହୋଇଛି ।

ସ୍ୱଚ୍ଛ ଓଡ଼ିଶା ଅଭିଯାନକୁ ବାସ୍ତବବାଦୀ ଓ ଲକ୍ଷ୍ୟ ହାସଲଭିତ୍ତିକ କରିବା ନିମନ୍ତେ ଏକ ଯୌଥ ଅଭିଯାନ କମିଟି ଗଠନ କରାଯାଇଛି । ଗ୍ରାମ୍ୟ ଉନ୍ନୟନ, ଗୃହ ନିର୍ମାଣ ଓ ନଗର ଉନ୍ନୟନ, ବିଦ୍ୟାଳୟ ଓ ଗଣଶିକ୍ଷା, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ, ମହିଳା ଓ ଶିଶୁ ବିକାଶ ଏବଂ ସୂଚନା ଓ ଲୋକ ସଂପର୍କ ବିଭାଗର ପଦସ୍ଥ ଅଧିକାରୀମାନଙ୍କୁ ଏହି କମିଟିରେ ସାମିଲ କରାଯାଇଛି ।

ସ୍ୱଚ୍ଛ ଓଡ଼ିଶା ଅଭିଯାନ –୨୦୧୪କୁ ଗ୍ରାମାଞ୍ଚଳରେ ସେପ୍ଟେମ୍ବର ୨୫ରୁ ଅକ୍ଟୋବର ୨୩ ଏବଂ ସହରାଞ୍ଚଳରେ ସେପ୍ଟେମ୍ବର ୨୫ରୁ ଅକ୍ଟୋବର ୨ ତାରିଖ ପର୍ଯ୍ୟନ୍ତ ଆନୁଷ୍ଠାନିକ ଭାବେ ପାଳନ କରିବା ପାଇଁ ନିତୀଗତ ନିଷ୍ପତ୍ତି ନିଆଯାଇଛି ।

ଉମାକାନ୍ତ ମହାପାତ୍ର, ସୂଚନା ଅଧିକାରୀ

## କେନ୍ଦ୍ର ବୟନ ସଚିବଙ୍କ ଓଡ଼ିଶା ଗସ୍ତ ଏବଂ ବିଭିନ୍ନ ଯୋଜନା ସମୀକ୍ଷା

ରାଜ୍ୟରେ ଥିବା ପ୍ରାଥମିକ ବୁଣାକାର ସମବାୟ ସମିତିଗୁଡ଼ିକ ଜରିଆରେ ବୁଣାକାରମାନଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସି ସେମାନଙ୍କର ସମସ୍ୟାର ସମାଧାନ କରିବା ସହ ସେମାନଙ୍କର ଅର୍ଥନୈତିକ ଅଭିବୃଦ୍ଧିର ତ୍ୱରାନ୍ୱିତ କରିବା ପାଇଁ କ୍ଷେତ୍ର ଅଧିକାରୀମାନଙ୍କୁ କେନ୍ଦ୍ର ବୟନ ସଚିବ ଡକ୍ଟର ସଂଜୟ କୁମାର ପଣ୍ଡା ପରାମର୍ଶ ଦେଇଛନ୍ତି ।





ଏକ ଦୁଇଦିନିଆ ଓଡ଼ିଶା ଗସ୍ତରେ ଆସିଥିବା ଡକ୍ଟର ପଣ୍ଡା ରାଜ୍ୟ ବୟନଶିଳ୍ପ ନିର୍ଦ୍ଦେଶାଳୟଠାରେ ବୟନ, ହସ୍ତତନ୍ତ ଏବଂ ସେରିକଲଚର କ୍ଷେତ୍ର ଅଧିକାରୀମାନଙ୍କ ସହ ଏକ ବୈଠକରେ ଯୋଗ ଦେଇ ରାଜ୍ୟର ବୟନ ଓ ହସ୍ତତନ୍ତ କ୍ଷେତ୍ରର ବିକାଶ ଏବଂ ବୁଣାକାରମାନଙ୍କ ଉନ୍ନତି କଳ୍ପେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଯୋଜନାର କାର୍ଯ୍ୟକାରିତା ଏବଂ ଅଗ୍ରଗତି ସମ୍ପର୍କରେ ସମୀକ୍ଷା କରିଛନ୍ତି । ବୈଠକରେ ଡକ୍ଟର ପଣ୍ଡା କହିଥିଲେ, ୨୦୦୯ ବୁଣାକାର ଗଣନା ଅନୁଯାୟୀ କ୍ଷେତ୍ର ଅଧିକାରୀମାନେ ପ୍ରତ୍ୟେକ ବୁଣାକାର ପରିବାର ଏବଂ ହସ୍ତତନ୍ତ ପୁଞ୍ଜଗୁଡ଼ିକୁ ଅନୁଧ୍ୟାନ କରି ପ୍ରତ୍ୟେକ ପରିବାରରେ ଏଇ ବୃତ୍ତି ପ୍ରତି ଆଗ୍ରହୀ ଥିବା ବ୍ୟକ୍ତିମାନଙ୍କୁ ଚିହ୍ନଟ କରନ୍ତୁ । ତନ୍ମଧ୍ୟରୁ ଶିକ୍ଷିତ ବୁଣାକାରମାନଙ୍କୁ ଉପଯୁକ୍ତ ପ୍ରଶିକ୍ଷଣ ଦେଇ ଜଣେ ଜଣେ ଉଦ୍ୟୋଗୀରେ ପରିଣତ କରିବାକୁ ଉଦ୍ୟମ କରାଯିବ । ମଧ୍ୟସ୍ଥିମାନଙ୍କୁ ବାଦ୍ ଦେଇ କିଭଳି ବୁଣାକାର ଏବଂ ଗ୍ରାହକମାନଙ୍କ ମଧ୍ୟରେ ସିଧାସଳଖ ସମ୍ପର୍କ ସ୍ଥାପନ ହୋଇ ପାରିବ ସେଥିପ୍ରତି ମଧ୍ୟ କ୍ଷେତ୍ର ଅଧିକାରୀମାନେ ଯତ୍ନବାନ ହେବାକୁ ସେ ପରାମର୍ଶ ଦେଇଥିଲେ । ରାଜ୍ୟ ବୟନ ଓ ହସ୍ତତନ୍ତ ସଚିବ ଶ୍ରୀମତୀ ଚିତ୍ରା ଅରୁମୁଗମ ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଯୋଜନା ସମ୍ପର୍କରେ ଅବଗତ କରାଇବା ସହ କେନ୍ଦ୍ର ସରକାରଙ୍କ ନିକଟରେ ଓଡ଼ିଶାର ବୟନ ଓ ହସ୍ତତନ୍ତ କ୍ଷେତ୍ରର ବିକାଶ ପାଇଁ ଦିଆଯାଇଥିବା ପ୍ରସ୍ତାବଗୁଡ଼ିକୁ ତୁରନ୍ତ ପାରିତ କରାଇବାକୁ କେନ୍ଦ୍ର ସଚିବଙ୍କୁ ଅନୁରୋଧ କରିଥିଲେ । ରାଜ୍ୟରେ ଏକ ମେଗା କ୍ଲଷ୍ଟର ସ୍ଥାପନ ସମ୍ପର୍କରେ ମଧ୍ୟ ବୈଠକରେ ଆଲୋଚନା ହୋଇଥିଲା । ରାଜ୍ୟରେ ବୟନ ଶିଳ୍ପର ବିକାଶ ପାଇଁ ପର୍ଯ୍ୟାପ୍ତ ଅନୁକୂଳ ବାତାବରଣ ରହିଛି ଏବଂ ଏହାର ବିକାଶ ନିମନ୍ତେ କେନ୍ଦ୍ର ସରକାରଙ୍କ ତରଫରୁ ସମସ୍ତ ସହାୟତା ଯୋଗାଇ ଦିଆଯିବ ବୋଲି କେନ୍ଦ୍ର ବୟନ ସଚିବ ପ୍ରତିଶ୍ରୁତି ଦେଇଥିଲେ । ପୂର୍ବରୁ ଡକ୍ଟର ପଣ୍ଡା ନୂଆପାଟଣା ତନ୍ତୁବାୟ ସହଯୋଗ ସମିତି ଏବଂ ପୁରୀ ଜିଲ୍ଲା ରଘୁରାଜପୁର ଗ୍ରାମ ପରିଦର୍ଶନ କରିବା ସହ ବୁଣାକାର ଓ ପଟ୍ଟଚିତ୍ର କାରିଗରମାନଙ୍କ ସହ ଆଲୋଚନା କରିଥିଲେ । ରାଜ୍ୟରେ ପ୍ରାଥମିକ ସମବାୟ ସମିତିଗୁଡ଼ିକ ଉତ୍ତମ ପ୍ରଦର୍ଶନ କରୁଥିବାରୁ ସେମାନଙ୍କର କାର୍ଯ୍ୟକାରିତାକୁ ସେ ଉଚ୍ଚ ପ୍ରଶଂସା କରିଥିଲେ । ସେହିଭଳି ପୁରୀଠାରେ ରାଜ୍ୟ ବୟନ, ହସ୍ତତନ୍ତ ଓ ହସ୍ତଶିଳ୍ପ ସଚିବ, ପର୍ଯ୍ୟଟନ ବିଭାଗର ଅଧିକାରୀ ଏବଂ ପୁରୀ ଜିଲ୍ଲାପାଳଙ୍କ ସହ ଏକ ଉଚ୍ଚସ୍ତରୀୟ ବୈଠକରେ ପୁରୀ କୋଣାର୍କ ଏବଂ ଭୁବନେଶ୍ୱର ସ୍ୱର୍ଣ୍ଣତ୍ରିଭୁଜ ମଧ୍ୟରେ କିଭଳି ଏକ ହସ୍ତତନ୍ତ ଏବଂ ହସ୍ତଶିଳ୍ପ କରିଡର ସ୍ଥାପନ କରାଯାଇ ପାରିବ ସେ ସମ୍ପର୍କରେ ବିଶଦ ଆଲୋଚନା କରି ଏକ ପ୍ରକଳ୍ପ ପ୍ରସ୍ତୁତ କରିବାକୁ ବିଭାଗୀୟ ଅଧିକାରୀମାନଙ୍କୁ ପରାମର୍ଶ ଦେଇଥିଲେ ।

ରାଜ୍ୟ ମୁଖ୍ୟ ଶାସନ ସଚିବଙ୍କ ସହ ସାକ୍ଷାତକାରରେ ଓଡ଼ିଶାରେ ଏକ ଟେକ୍ସଟାଇଲ ପାର୍କ ସ୍ଥାପନ, ବୟନଶିଳ୍ପର ଅଭିବୃଦ୍ଧି, ରପ୍ତାନୀ ଏବଂ ବିଶେଷ ତାଲିମ ଓ ଦକ୍ଷତା ବୃଦ୍ଧି କାର୍ଯ୍ୟକ୍ରମ ସମ୍ପର୍କରେ ମଧ୍ୟ ଡକ୍ଟର ପଣ୍ଡା ଆଲୋଚନା କରିଥିଲେ ।

ସୁଚେତା ପ୍ରିୟଦର୍ଶିନୀ, ସୂଚନା ଅଧିକାରୀ

# ଭୁବନେଶ୍ୱରରେ ନିର୍ମିତ ହେବ ଟୁରିଜିମ୍ ପ୍ଲାଜା

ବିଭିନ୍ନ ରାଜ୍ୟର ପର୍ଯ୍ୟଟନ କେନ୍ଦ୍ର, ପର୍ଯ୍ୟଟକ ସୂଚନା କେନ୍ଦ୍ର, ପରିଦର୍ଶକ କାଫେଟେରିଆ, ହସ୍ତଶିଳ୍ପ ଓ ହସ୍ତତନ୍ତ ବିକ୍ରୟ କେନ୍ଦ୍ର, ହୋଟେଲ୍ ଓ ଟୁର୍ ଅପରେଟରଙ୍କ ପାଇଁ ଫେସିଲିଟେସନ୍ କେନ୍ଦ୍ର, ଏସବୁ ଗୋଟିଏ ସ୍ଥାନରେ କାର୍ଯ୍ୟ କରିବ । ଓଡ଼ିଶାର ସଂସ୍କୃତି ଓ ପର୍ଯ୍ୟଟନକୁ ପ୍ରଚାର ପ୍ରସାର କରିବା ପାଇଁ ଦେଶର ସମସ୍ତ ରାଜ୍ୟର ପର୍ଯ୍ୟଟନ ବିଭାଗ ସହ ଯୋଗାଯୋଗ କରି ସେମାନଙ୍କ ପର୍ଯ୍ୟଟନ ବିଭବକୁ ଓଡ଼ିଶା ମଧ୍ୟରେ ଓ ପରସ୍ପର ମଧ୍ୟରେ ଆଦାନ ପ୍ରଦାନ କରିବାର ସୁଯୋଗ ପାଇଁ ଏକ ବହୁତଳ ପ୍ରାସାଦରେ କାର୍ଯ୍ୟ କରିବ ଏହି ଟୁରିଜିମ୍ ପ୍ଲାଜା । ଏ ସମ୍ପର୍କରେ ପର୍ଯ୍ୟଟନ ଓ ସଂସ୍କୃତି ସଚିବ ଡଃ ଅରବିନ୍ଦ କୁମାର ପାଢୀ କହିଛନ୍ତି ଯେ ଭୁବନେଶ୍ୱରର ଶିଶୁ ଭବନ ଛକ, ସଂଗ୍ରହାଳୟ ପରିସର, ମଦନପୁରସ୍ଥିତ ସଂସ୍କୃତି ବିଶ୍ୱବିଦ୍ୟାଳୟ ପରିସର ଏବଂ ୟୁନିଟ୍–୮ ସ୍ଥିତ ଡେଲ୍ଟା ଛକଠାରେ ସରକାରୀ ଜମି ଅଛି ବୋଲି ସାଧାରଣ ପ୍ରଶାସନ ବିଭାଗ ସୂଚନା ଦେଇଛି । ଖୁବ୍‌ଶୀଘ୍ର ଯେକୌଣସି ଗୋଟିଏ ଜାଗାରେ ଜମି ଚିହ୍ନଟ ହେବା ପରେ ନିର୍ମାଣ କାର୍ଯ୍ୟ ଆରମ୍ଭ ହେବ । ଏଥିପାଇଁ ଆପାତତଃ ୭ କୋଟି ଟଙ୍କା ବ୍ୟୟ ହେବ । ଏହି କାର୍ଯ୍ୟ ପାଇଁ ଆର୍କିଟେକ୍ଟ ସ୍ଥିର କରାଯାଇ ସାରିଛି ।

ପୁଷ୍ପାଞ୍ଜଳି ପାଇକରାୟ, ସୂଚନା ଅଧିକାରୀ



# ସ୍କୁଲ ଛାତ୍ରଛାତ୍ରୀଙ୍କ ସୁରକ୍ଷା ପାଇଁ ନୂଆ ଗାଇଡ୍‌ଲାଇନ୍

ରାଜ୍ୟରେ ଶିଶୁମାନଙ୍କ ସୁରକ୍ଷା ପାଇଁ ମହିଳା ଓ ଶିଶୁ ବିକାଶ ବିଭାଗ ପକ୍ଷରୁ ଶିଶୁ ସୁରକ୍ଷା ପ୍ରୋଟୋକଲ୍ ପ୍ରସ୍ତୁତ କରାଯାଇଛି । ପ୍ରକାଶିତ ବିଜ୍ଞପ୍ତି ଅନୁସାରେ ଦୁଇ ମାସ ମଧ୍ୟରେ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ, ମହିଳା ଓ ଶିଶୁ ବିକାଶ ବିଭାଗ, କ୍ରୀଡା ବିଭାଗ, ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ ଓ କେନ୍ଦ୍ର ସରକାରଙ୍କ କର୍ତ୍ତୃତ୍ୱାଧୀନ ସମସ୍ତ ପ୍ରକାର ବିଦ୍ୟାଳୟ ବେସରକାରୀ ବିଦ୍ୟାଳୟ ଓ ହଷ୍ଟେଲରେ ଏହି ଗାଇଡ୍ ଲାଇନ୍ କାର୍ଯ୍ୟକାରୀ କରାଯିବ ।

ଗାଇଡ୍‌ଲାଇନ୍ ଅନୁସାରେ ଏଣିକି ସମସ୍ତ ବିଦ୍ୟାଳୟରେ ଶିଶୁ ସୁରକ୍ଷା ଅଧିକାରୀ ରହିବେ । ଏହି ଦାୟିତ୍ୱରେ ବିଦ୍ୟାଳୟର ପ୍ରଧାନ ଶିକ୍ଷକ, ଅଧୀକ୍ଷକ ଓ ଅଧକ୍ଷ ରହିବେ । ବିଦ୍ୟାଳୟର ଉଭୟ ୱେବସାଇଟ୍ ଓ ସମସ୍ତଙ୍କ ଦୃଷ୍ଟି ପଡୁଥିବା ଭଳି ବିଦ୍ୟାଳୟ କାନ୍ଥରେ ସ୍ୱତନ୍ତ୍ର ଭାବେ ପ୍ରୋଟୋକଲ ସଂକ୍ରାନ୍ତ ସମସ୍ତ ତଥ୍ୟ ରହିବ । ଛାତ୍ରୀ ଏବଂ ୧୦ ବର୍ଷରୁ କମ୍ ବୟସର ଛାତ୍ରଙ୍କ ସୁରକ୍ଷା ପାଇଁ ପ୍ରତ୍ୟେକ ଆବାସିକ ସ୍କୁଲରେ ଜଣେ ଲେଖାଏଁ ମହିଳା ୱାର୍ଡେନ ନିଯୁକ୍ତି ପାଇବେ । ଛାତ୍ରୀମାନଙ୍କ ସହ ଦିନ ଓ ରାତିରେ ୱାର୍ଡେନ ଉପସ୍ଥିତ ରହିବେ । ସ୍କୁଲ ଓ ହଷ୍ଟେଲକୁ ଆସୁଥିବା ପରିଦର୍ଶକଙ୍କ ବିଷୟରେ ରେଜିଷ୍ଟର୍‌ରେ ସମସ୍ତ ତଥ୍ୟ ଉଲ୍ଲେଖ ରହିବ । ଛାତ୍ରଛାତ୍ରୀମାନେ ସେମାନଙ୍କ ସମସ୍ୟା ଜଣାଇବା ପାଇଁ ପ୍ରତ୍ୟେକ ସ୍କୁଲ ପରିସରରେ ଏକ ମତାମତ ବାକ୍ସ ରହିବ । ନୂତନ ଗାଇଡ୍ ଲାଇନ୍‌ରେ କୁହାଯାଇଛି ଯେ, ଯେଉଁ ଶିକ୍ଷକ, କର୍ମଚାରୀ ଘରୋଇ ସଂସ୍ଥା କିମ୍ବା ବ୍ୟକ୍ତିବିଶେଷ ଛାତ୍ରଛାତ୍ରୀମାନଙ୍କ ସହିତ ସିଧାସଳଖ କିମ୍ବା ପରୋକ୍ଷରେ ଦାୟିତ୍ୱ ସମ୍ପାଦନ କରୁଛନ୍ତି, ସେମାନଙ୍କ ଅପରାଧ ଦିଗଗୁଡ଼ିକ ପ୍ରତି ଧ୍ୟାନ ଦେବା ସହ ଆଚରଣରେ ନିୟମିତ ସମୀକ୍ଷା କରିବେ । ସ୍କୁଲ ପରିସରରେ ଛାତ୍ରୀମାନଙ୍କୁ ସୁରକ୍ଷିତ ରଖିବା ସହ ଏକ ଶୈକ୍ଷିକ ବାତାବରଣ ସୃଷ୍ଟି କରିବା ଉପରେ ଗାଇଡ୍‌ଲାଇନରେ ଗୁରୁତ୍ୱ ଦିଆଯାଇଛି। ଯେଉଁ ଶିକ୍ଷାନୁଷ୍ଠାନ ଗାଇଡ୍‌ଲାଇନ ପାଳନ କରିବାରେ ଖିଲାପ କରିବେ, ସେମାନଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ।

# ରାଜ୍ୟ ଯୋଜନାରେ ୧୦ଟି ଆଦର୍ଶ ଆବାସିକ ବିଦ୍ୟାଳୟ ପ୍ରତିଷ୍ଠା କରାଯିବ

ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତିର ଛାତ୍ରଛାତ୍ରୀଙ୍କ ନିମନ୍ତେ ଏସ୍‌ଟି, ଏସ୍‌ସି ଉନ୍ନୟନ ବିଭାଗ ପକ୍ଷରୁ ରାଜ୍ୟ ଯୋଜନା ପରିସର ମଧ୍ୟରେ ଇ.ଏମ୍.ଆର୍.ଏସ୍ ଢ଼ାଞ୍ଚାରେ ୧୦ଟି ଆଦର୍ଶ ଆବାସିକ ବିଦ୍ୟାଳୟ ପ୍ରତିଷ୍ଠା କରାଯିବ ।

ଏସ୍‌ଟି ଓ ଏସ୍‌ସି ବର୍ଗର ଛାତ୍ରଛାତ୍ରୀମାନଙ୍କୁ ଗୁଣାତ୍ମକ ଶିକ୍ଷା ପ୍ରଦାନ ନିମନ୍ତେ ବିଭାଗ ପକ୍ଷରୁ ସି.ବି.ଏସ୍.ଇ ଢ଼ାଞ୍ଚାରେ ଏହି ଆଦର୍ଶ ଆବାସିକ ବିଦ୍ୟାଳୟ ସ୍ଥାପନ କରାଯିବ । ଏହି ବିଦ୍ୟାଳୟଗୁଡ଼ିକ ମୁଖ୍ୟତଃ ଆଦିବାସୀ ଉପଯୋଜନା ଅଞ୍ଚଳରେ ପ୍ରତିଷ୍ଠା କରାଯିବ । ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ ପକ୍ଷରୁ ସାତଟି ଜିଲ୍ଲା ଯଥାକ୍ରମେ କେନ୍ଦୁଝର, କୋରାପୁଟ, ରାୟଗଡ଼ା, ନବରଙ୍ଗପୁର, କନ୍ଧମାଳ, ଗଜପତି ଓ ମାଲକାନଗିରିରେ ଏହି ବିଦ୍ୟାଳୟ ପ୍ରତିଷ୍ଠା କରାଯିବା ପାଇଁ ପ୍ରସ୍ତାବ ରହିଛି । ଏହି ବିଦ୍ୟାଳୟଗୁଡ଼ିକରେ ଷଷ୍ଠ ଶ୍ରେଣୀରୁ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ ଛାତ୍ରଛାତ୍ରୀମାନେ ଅଧ୍ୟୟନ କରିବେ । ଆଦର୍ଶ ବିଦ୍ୟାଳୟଗୁଡ଼ିକ ଆବାସିକ ହେବ ଏବଂ ସେଥିରେ ୪୮୦ ଜଣ ଛାତ୍ରଛାତ୍ରୀ ରହିବେ । ଏହି ବିଦ୍ୟାଳୟଗୁଡିକରେ ସି.ବି.ଏସ୍‌ଇ ପାଠ୍ୟକ୍ରମ ରହିବ ବୋଲି ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ ସୂତ୍ରରୁ ପ୍ରକାଶ ।

ଡ଼କ୍ଟର ଜ୍ୟୋତିର୍ମୟୀ ସାମନ୍ତରାୟ, ସୂଚନା ଅଧିକାରୀ

# ଆନ୍ତର୍ଜାତୀୟ ବାଣିଜ୍ୟ ମେଳା –୨୦୧୪ ପାଇଁ ଦ୍ୱିତୀୟ ପ୍ରସ୍ତୁତି ବୈଠକ

ଚଳିତବର୍ଷ ନୂଆଦିଲ୍ଲୀଠାରେ ନଭେମ୍ବର ୧୪ରୁ ୨୭ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହେବାକୁ ଯାଉଥିବା 'ଭାରତ ଆନ୍ତର୍ଜାତୀୟ ବାଣିଜ୍ୟ ମେଳା – ୨୦୧୪ରେ ଓଡ଼ିଶାର ଯୋଗଦାନ ସମ୍ପର୍କରେ ଦ୍ୱିତୀୟ ପ୍ରସ୍ତୁତି ବୈଠକ ଅନୁଷ୍ଠିତ ହୋଇଯାଇଛି । ବାଣିଜ୍ୟ ମେଳାର ଚଳିତ ବର୍ଷର ବିଷୟବସ୍ତୁ 'ମହିଳା ଉଦ୍ୟୋଗୀକରଣ' ରଖାଯାଇଛି । ଏହାର ସଫଳ ରୂପାୟନ ନିମନ୍ତେ ମହିଳା ଓ ଶିଶୁ ବିକାଶ ବିଭାଗ, ପଞ୍ଚାୟତିରାଜ ବିଭାଗ ଓ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିଭାଗ (ଏମ୍.ଏସ୍.ଏମ୍.ଇ) ପକ୍ଷରୁ ପ୍ରସ୍ତୁତି କାର୍ଯ୍ୟରେ ପ୍ରଭୂତ ଅଗ୍ରଗତି ପରିଲକ୍ଷିତ ହୋଇଛି । ଏହି ପରିପ୍ରେକ୍ଷୀରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ସମ୍ମିଳନୀ କକ୍ଷରେ ଅନୁଷ୍ଠିତ ସମୀକ୍ଷା ବୈଠକରେ ଓଡ଼ିଶାର ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ, ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଅତନୁ ସବ୍ୟସାଚୀ ନାୟକ ଅଧ୍ୟକ୍ଷତା କରି ବିଭିନ୍ନ ସରକାରୀ ବିଭାଗ, ସରକାରୀ ଉଦ୍ୟୋଗ ତଥା ଅନ୍ୟାନ୍ୟ ଅଂଶ ଗ୍ରହଣକାରୀ ସଂସ୍ଥାଗୁଡ଼ିକର ବାଣିଜ୍ୟ ମେଳା ପ୍ରସ୍ତୁତି ଓ ଅଗ୍ରଗତି ସମ୍ବନ୍ଧରେ ବିସ୍ତୃତ ସମୀକ୍ଷା କରିଥିଲେ । ଓଡ଼ିଶାର ମହାନ ସଂସ୍କୃତି ପ୍ରାଚୀନ କଳା, ଐତିହ୍ୟ, ପରମ୍ପରା, ହସ୍ତଶିଳ୍ପ, ହସ୍ତତନ୍ତ ତଥା ବର୍ତ୍ତମାନର ବିକାଶ ଓ ସମୃଦ୍ଧିର ଧାରାକୁ ବିଶ୍ୱ ଦରବାରରେ ଆଦୃତ କରିବା ପାଇଁ ଆନ୍ତର୍ଜାତୀୟ ବାଣିଜ୍ୟ ମେଳା ହିଁ ଏକ ପ୍ରକୃଷ୍ଟ ମଞ୍ଚ । ତେଣୁ ଏହି ବାଣିଜ୍ୟ ମେଳାର ପ୍ରତ୍ୟେକ ଅଂଶ ଗ୍ରହଣକାରୀ ଦିଲ୍ଲୀରେ ମହିଳା ସଶକ୍ତିକରଣ ସହିତ ଉଦ୍ୟୋଗୀକରଣ ଚିନ୍ତାଧାରାକୁ ସଠିକ ଭାବେ ଉପସ୍ଥାପନ କରିବା, ନାଲ୍‌କୋ ପକ୍ଷରୁ ମହିଳା କ୍ରୀଡ଼ାବିତ୍‌ମାନଙ୍କ ସଫଳତାକୁ ପରିସ୍ଫୁଟିତ କରିବା ଏବଂ ମହିଳା ସଶକ୍ତିକରଣର ପ୍ରଥମ ମାର୍ଗଦର୍ଶକ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ, ପ୍ରବାଦ ପୁରୁଷ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ଅମୂଲ୍ୟ ଅବଦାନ ସମ୍ପର୍କରେ ସମସ୍ତଙ୍କୁ ଅବଗତ କରାଇବା ଉପରେ ଗୁରୁତ୍ୱାରୋପ କରିଥିଲେ ।

ଭୁବନେଶ୍ୱରସ୍ଥିତ ଜାତୀୟ ଫେସନ୍ ଟେକ୍ନୋଲୋଜି ପ୍ରତିଷ୍ଠାନ, ଓଡ଼ିଶା ପାଭିଲିୟନର ଡ଼ିଜାଇନିଂ ତଥା ଷ୍ଟଲଗୁଡ଼ିକର ରୂପସଜ୍ଜାର ଅନୁମୋଦନ ଦାୟିତ୍ୱ ନେଇଥିବାରୁ ସମସ୍ତ ଅଂଶ ଗ୍ରହଣକାରୀମାନଙ୍କୁ ୭ ଦିନ ମଧ୍ୟରେ ସେମାନଙ୍କ ପ୍ରସ୍ତାବ ଉପସ୍ଥାପନ କରାଯିବା ଦିଗରେ ଉପରୋକ୍ତ ସଂସ୍ଥାସହ ସମନ୍ୱୟ ରଖି ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ସଫଳତା ଉପରେ ଫୋଲ୍ଡର ପ୍ରସ୍ତୁତି ଉପଯୁକ୍ତ ମାନର ହୋଇପାରିବ ବୋଲି ମାନ୍ୟବର ମନ୍ତ୍ରୀ ଆଶା ପୋଷଣ କରିଥିଲେ ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ କମିଶନର ତଥା ଶାସନ ସଚିବ ଶ୍ରୀ ମଧୁସୂଦନ ପାଢ଼ୀ ଉକ୍ତ ସମୀକ୍ଷା ବୈଠକରେ ଓଡ଼ିଶା ପାଭିଲିୟନ୍‌ରେ ଆବଶ୍ୟକୀୟ ମରାମତି, ନିର୍ମାଣ, ଅଗ୍ନି ନିରୋଧ ବ୍ୟବସ୍ଥା ତଥା ନିରାପତ୍ତା ଉପରେ ଗୁରୁତ୍ୱାରୋପ କରିବା ସହ ରାଜ୍ୟର ଆର୍ଥିକ ବିକାଶର ଉଜ୍ଜ୍ୱଳ ଚିତ୍ରକୁ ଉପଯୁକ୍ତ ଭାବେ ପ୍ରଦର୍ଶନ ପାଇଁ ନିର୍ଦ୍ଦେଶ ଦେଇଥିଲେ ।

ବାଣିଜ୍ୟ ମେଳାରେ ଓଡ଼ିଶା ଦିବସ ଦିନ ରାଜ୍ୟର ବିଭିନ୍ନ ଅଞ୍ଚଳର ପାରମ୍ପରିକ ଆକର୍ଷଣୀୟ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ ସହ ବାଲୁକା କଳା, ପଟ୍ଟଚିତ୍ର, କତାଶିଳ୍ପ, କାଠଶିଳ୍ପ, ପଥର ଖୋଦେଇ, ସମ୍ବଲପୁରୀ ବସ୍ତ୍ରବୁଣା କାର୍ଯ୍ୟର ଜୀବନ୍ତ ନମୁନା ପ୍ରଦର୍ଶନର ବିଭିନ୍ନ ତଥ୍ୟ ସମ୍ବନ୍ଧରେ ସୂଚନା ଓ ଲୋକ ସମ୍ପର୍କ ନିର୍ଦ୍ଦେଶକ ଶ୍ରୀ ପ୍ରଦୀପ୍ତ କୁମାର ମହାପାତ୍ର ବିସ୍ତୃତ ଆଲୋଚନା କରିଥିଲେ । ଜାତୀୟ ଫେସନ୍ ଟେକ୍ନୋଲୋଜି ପ୍ରତିଷ୍ଠାନ (NIFT) ର ଡ଼ଃ. କେ.ସି.ଏସ୍ ରାୟ ଏବଂ ପ୍ରଫେସର ମୋନିକା ଅଗ୍ରୱାଲ ପାୱାର ପଏଣ୍ଟ ମାଧ୍ୟମରେ ଓଡ଼ିଶା ପାଭିଲିୟନର ଡ଼ିଜାଇନ୍ ସମ୍ପର୍କରେ ବିଶେଷ ତଥ୍ୟ ଉପସ୍ଥାପନ କରିଥିଲେ ।

ଅଶୋକ କୁମାର ଷଡ଼ଙ୍ଗୀ, ସୂଚନା ଅଧିକାରୀ

